# ଗ୍ରାମଦାନ

ଗୋକୁଳାନନ୍ଦ ମହାପାତ୍ର



ପ୍ରଥମ ପ୍ରକାଶ
ଡିସେମ୍ବର, ୧୯୮୧

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
କଲ୍ୟାଣୀ ପ୍ରିଣ୍ଟର୍ସ, କଟକ

ମୂଲ୍ୟ—ଟ ୨୫.୦୦
ସାଦା ବନ୍ଧେଇ—ଟ ୨୨.୦୦

# ଏକ

"ସାର୍, ସାର୍, ମୁଁ ଭିତରକୁ ଯାଇପାରେ କି ?"

ଅମରେଶଙ୍କର ଗବେଷଣା କକ୍ଷର ଦୁଆର ମୁହଁରେ ଠିଆ ହୋଇ ଭିତରକୁ ଯିବା ପାଇଁ ଅନୁମତି ଭିକ୍ଷା କରୁଥିଲା ଷଷ୍ଠ ବାର୍ଷିକ ବିଜ୍ଞାନ ଶ୍ରେଣୀର ଛାତ୍ରୀ କୁମାରୀ ସ୍ମିତା ପ୍ରସାଦ । ସ୍ମିତା ବିହାର ରାଜ୍ୟର ଡ଼ି. ପି. ଆଇ. ଡକ୍ଟର କାନ୍ତା ପ୍ରସାଦଙ୍କ ଜ୍ୟେଷ୍ଠା କନ୍ୟା । ପାଟନା ସାଏନ୍ସ କଲେଜର ରସାୟନ ବିଜ୍ଞାନର ଏମ୍ ଏସ୍‌ସି ଛାତ୍ରୀ । ସ୍ମିତା ସୁନ୍ଦରୀ, ଆଧୁନିକା, ବଡ଼ଲୋକର ଛାପ ତାର ଦେହେ ଦେହେ ଫୁଟି ଉଠୁଛି । କଥା କହିବାର ଢ଼ଙ୍ଗ ବେଶ୍ ଲୋଭନୀୟ, ଯାହା ସଙ୍ଗରେ ସେ ପଦେ ଦିପଦ କଥାବାର୍ତ୍ତା କରିବ, ସଙ୍ଗେ ସଙ୍ଗେ ଜାଣ ତାକୁ ନଜର କରିନେବ ।

ସେତେବେଳକୁ ସନ୍ଧ୍ୟା ଆସନ୍ନ ପ୍ରାୟ । ଅସ୍ତଗାମୀ ସୂର୍ଯ୍ୟଙ୍କର ସୁନେଲି କିରଣରେ ଉଦ୍ଭାସିତ ହୋଇ ଉଠୁଥାଏ ପାଟନା ସାଏନ୍ସ କଲେଜର

ସୌଧବଜ । କଲେଜର ଛାତ୍ରଛାତ୍ରୀମାନେ କେତେବେଳୁ ବିଦାୟ ନେଇ ଗଲେଣି ସେମାନଙ୍କ ଅଧ୍ୟୟନ ମନ୍ଦିରରୁ । ସ୍ମିତା ଘରକୁ ନ ଯାଇ ବୁଝିପାରି ନ ଥିବା ପାଠକୁ ଆଉ ଟିକିଏ ଭଲ ଭାବରେ ବୁଝିବା ପାଇଁ ଯୁବକ ଅଧ୍ୟାପକ ଅମରେଶ ଚନ୍ଦ୍ର ଦାସଙ୍କ ରୁମ୍‌କୁ ଆସିବା ପାଇଁ ଅନୁମତି ଭିକ୍ଷା କରୁଥିଲା ବାରଣ୍ଡାରେ ଠିଆ ହୋଇ ।

ପରଦା ଫାଙ୍କରେ ଝିଅଟିକୁ ଦେଖି ଅମରେଶ ଡାକିଲା ।

କିଏ ସ୍ମିତା ? ଭିତରକୁ ଆସ । ହଠାତ୍ ତୁମେ ଏ ଅବେଳଟାରେ ? କଲେଜ ତ କେତେବେଳୁ ଛୁଟି ହୋଇଗଲାଣି । ତୁମ ସାଙ୍ଗସାଥୀମାନେ ତ ଘରକୁ ଚାଲିଯିବେଣି ? ତୁମେ ଏ ପର୍ଯ୍ୟନ୍ତ କ'ଣ ଘରକୁ ଯାଇନାହଁ ?'

ନାଇଁ, ସାର୍, ଯାଇନି । ଆପଣଙ୍କ ଠାରୁ ଗୋଟିଏ ବିଷୟ ବୁଝିବା ପାଇଁ ରହିଗଲି । ଆପଣ ସକାଳେ ମରଫିନ୍‌ର ଯେଉଁ ଷ୍ଟେରିଓକେମିଷ୍ଟ୍ରି ବୁଝାଉଥିଲେ, ତାହାକୁ ମୁଁ ଭଲ ଭାବରେ ବୁଝିପାରିନି ସାର୍ ।

କାହିଁକି ? ତୁମେ କଣ ଅନ୍ୟମନସ୍କ ଥିଲ ?

'ନା, ସାର୍, ଅନ୍ୟମନସ୍କ ନଥିଲି । ବୁଝୁଁ ବୁଝୁଁ ଗୋଟିଏ ଷ୍ଟେପ କେମିତି ଧରି ପାରିଲିନି । ତେଣୁ ତା ପର ପରର ଷ୍ଟେପ ଗୁଡ଼ିକ ଅବୋଧ ରହିଗଲା ।

ତୁମେ ଯଦି ବୁଝି ପାରିଲନି, ଠିକ୍ କ୍ଲାସ ପରେ ମୋତେ ପଚାରିଲନି କାହିଁକି ? କଲେଜ ତ କେତେବେଳୁ ଛୁଟି ହୋଇଗଲାଣି । ମୁଁ ତ ଘରକୁ ବାହାରିଲିଣି ।' ବୁଝିବ କେତେବେଳେ ?

ନାଇଁ ସାର୍, ମୋତେ ଟିକିଏ ଦୟାକରି ବୁଝାଇ ଦେଇ ଯାଆନ୍ତୁ । ବେଶି ଡେରି ହେବନି ଆପଣଙ୍କର ।" କହୁଁ କହୁଁ ନୋଟ୍ ଖାତା ବାହାର କରି ଯେଉଁ ଯାଗାରେ ବୁଝିପାରି ନ ଥିଲା, ସେତକ ବୁଝାଇ ଦେବା ପାଇଁ ଅନୁରୋଧ ଜଣାଇଲା ଅତି ବିନମ୍ର କଣ୍ଠରେ ।

ବୁଝାଇ ଦେଉଁ ଦେଉଁ ଅମରେଶ କହିଲା "ଦେଖ ସ୍ମିତା, ତୁମେ ବୋଧହୁଏ ଅନର୍ସ ବେଳୁଁ ଷ୍ଟେରିଓ କେମିଷ୍ଟ୍ରିରେ କଞ୍ଚା ରହି ଯାଇଛ ? ନଚେତ୍ ତୁମେ ଏତେ ସୋଜା ବିଷୟଟାକୁ ଧରିପାରିଲନି କେମିତି ?

ସ୍ମିତା ଅମରେଶ ଠାରୁ ସବୁ ଠିକ କରି ବୁଝି ସାରି ଘରକୁ ବାହାରିଲା । ତାକୁ ଯିବା ଦେଖି ଅମରେଶ କହିଲା, "ଦେଖ ସ୍ମିତା, ତୁମେ ଯଦି କୌଣସି ବିଷୟ କ୍ଲାସରେ ବୁଝି ନ ପାରିବ, ତେବେ ମୋତେ କ୍ଲାସ ପରେ ସଙ୍ଗେ ସଙ୍ଗେ ପଚାରିବ । ଏଭଳି ଅଧାଡ଼ୁଆ ବେଳେ ଆଉ ବୁଝିବାକୁ ଆସିବନି । ଦେଖ ଡିପାର୍ଟମେଣ୍ଟରୁ ସମସ୍ତେ ଚାଲିଗଲେଣି । ପିଲା କି ଶିକ୍ଷକ କେହି ଜଣେ ହେଲେ ନାହାନ୍ତି । ଏମିତି ବେଳେ ତମେ ଏକା ମୋ ଠାକୁ ପାଠ ବୁଝିବାକୁ ଆସିବା ଉଚିତ ନୁହେଁ ! ତୁମେ ଯୁବତୀ, ସୁନ୍ଦରୀ ପୁଣି ବଡ଼ ଅଫିସରଙ୍କ ଝିଅ, ସମାଜରେ ତୁମର ଓ ତୁମ ବାପାଙ୍କର ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ଅଛି । କିଏ ଯଦି ତୁମକୁ ମୋ ରୁମରେ ଏଭଳି ଏକାଠିଆ ଥିବାର ଦେଖି ଅନ୍ୟ କିଛି ଭାବେ, ତେବେ ତାକୁ ଦୋଷ ଦେଇ ହେବନି । ଫଳରେ ତୁମର ହେବ ଦୁର୍ନାମ ।

"ହେଉ ସାର, ଏବେ ଏଣିକି ସେହି କ୍ଲାସ ପରେ ପରେ ପଚାରିବି ।" ଏତକ କହି ଦେଇ ତର ତର ହୋଇ ବାହାରିଲେ ସ୍ମିତା ।

ସ୍ମିତା ଚାଲିଗଲା ପରେ ଭାବିଲା ଅମରେଶ, "କି ଆଶ୍ଚର୍ଯ୍ୟ, ଏମାନଙ୍କ କେରିୟରରେ ଛାପ ମରା ହୋଇଛି ଗୋଟିଏ ପ୍ରକାର, ଅଥଚ ଏମାନଙ୍କର ମେଧାଶକ୍ତି ଅନ୍ୟ ଏକ ପ୍ରକାର । ଝିଅଟି କ'ଣ ସବୁ ପରୀକ୍ଷାରେ ଫାଷ୍ଟ କ୍ଲାସ ଫାଷ୍ଟ ହୋଇ ଆସିଛି, ପୁଣି ଜାତୀୟ ବୃତ୍ତି ବି ପାଉଛି ? ଏ ତ ସେଭଳି ଉଚ୍ଚକୋଟୀ ମେଧାଶକ୍ତି ଥିବା ପିଲା ନୁହେଁ । ତା ହେଲେ କ'ଣ ଶିକ୍ଷା ବିଭାଗରେ ବି ଦୁର୍ନୀତି ? ବାପା ଯେତେବେଳେ ଉଚ୍ଚ ପଦବୀରେ ଅଛନ୍ତି, ଝିଅର ପ୍ରଥମ ଶ୍ରେଣୀ କେରିୟର ନ ହେବ କେମିତି ? ଲୋକେ ତ ଉପରେ ପଡ଼ି ଭଲ କେରିୟର ତିଆରି କରିଦେବାକୁ ଆଗେଇ ଆସିବେ । ଏମାନଙ୍କ ପାଇଁ ପରୀକ୍ଷା ଏକ ପ୍ରହସନ ସିନା ! ଧନ୍ୟ ଏ ଦେଶ, ଧନ୍ୟ ଏ ଦେଶର ରୀତି !

ତହିଁ ପର ଦିନ ।

ଅମରେଶ ନଅଟା ବାଜିଲାବେଳକୁ ପ୍ରତିଦିନ ଗବେଷଣା କରିବା ପାଇଁ କଲେଜକୁ ଚାଲି ଆସେ । ସେ ଘରୁ ଆସି ନିଜ ଗବେଷଣାଗାରରେ ପଶିଛି କି ନାହିଁ, ଏକ କାର ଆସି ଲାଗିଲା ରସାୟନ ବିଭାଗର ପୋର୍ଟିକୋରେ । କାରରୁ ଓହ୍ଲାଇଲେ ବିହାର ଶିକ୍ଷାମନ୍ତ୍ରୀଙ୍କ କନ୍ୟା ପୁଷ୍ପା ସିହ୍ନା । ସେତେବେଳକୁ କଲେଜକୁ କାଁ ଭାଁ ଗୋଟିଏ ଦୁଇଟି ପିଲା ଆସିଥାନ୍ତି କି ନାହିଁ ସନ୍ଦେହ । ବିଭିନ୍ନ ବିଭାଗର ବହୁ ଘର ପ୍ରାୟ ଖୋଲା ହୋଇ ନ ଥାଏ । ଝିଅଟି ଆସି ଅମରେଶର

ଦୁଆର ମୁହଁରେ ଠକ୍ ଠକ୍ କଲା । ସେତେବେଳକୁ ଅମରେଶ ନିଜ ଗବେଷଣା ପାଇଁ ଗୋଟିଏ ଯନ୍ତ୍ରକୁ ଆଉ ଏକ ଯନ୍ତ୍ର ସହିତ ଲଗାଉଥିଲା । ଠକ୍ ଠକ୍ ଶବ୍ଦ ଶୁଣି କହିଲା, "କିଏ ଭିତରକୁ ଆସିପାର ।"

ଭିତରକୁ ପଶି ଆସିଲା ପୁଷ୍ପା । ପୁଷ୍ପାକୁ ଅନାଇ ଦେଇ କିଞ୍ଚିତ ଅନ୍ୟ-ମନସ୍କ ହୋଇ ପୁଣି ନିଜ କାଚ ଯନ୍ତ୍ରଟିକୁ ଲଗାଇଲା ବେଳକୁ ପୁରା ଯନ୍ତ୍ରଟି ଅମ-ରେଶ ହାତରୁ ଖସିପଡ଼ିଲା ତଳକୁ । ଅମରେଶ ପାଟି କରି ଉଠିଲା, 'ଧରି ପକାଅ ପୁଷ୍ପା, ଧରି ପକାଅ ।" ପୁଷ୍ପା ଯାଇ ହଠାତ୍ ଧରି ପକାଇଲା ସେହି କାଚ ଯନ୍ତ୍ର-ଟିକୁ, ଫଳରେ ଯନ୍ତ୍ରଟି ତଳେ ପଡି ଭାଙ୍ଗି ଯିବାରୁ ଅଳ୍ପକେ ରକ୍ଷା ପାଇଗଲା ।

ତୁମେ ଆଜି କେଡ଼େ ମୂଲ୍ୟବାନ ଯନ୍ତ୍ରଟିକୁ ରକ୍ଷା କରିଦେଲ ଜାଣି ପାରୁଛ ପୁଷ୍ପା ?"

"ହଁ ସାର୍, ଧରି ନ ପକାଇଥିଲେ ତଳେ ପଡି ପୁରାପୁରି ଭାଙ୍ଗି ଯାଇଥାନ୍ତା ।

ହେଉ, ଭଲ କଲ, ଅଶେଷ ଧନ୍ୟବାଦ୍ । ହଠାତ୍ ଏତେ ସକାଳୁ କୁଆଡ଼େ ଚାଲି ଆସିଲ ?

ସାର୍, ଟିକିଏ ବୁଝିବାକୁ ଚାଲି ଆସିଲି ।

କଣ ମୋ ଠାକୁ ?

ହଁ, ସାର୍ ।

କେଉଁ ବିଷୟ ?

"କୋଲେଷ୍ଟେରଲର ସଂଶ୍ଳେଷଣ ଓ ଷ୍ଟେରଏଡ କେମିଷ୍ଟ୍ରି ।"

ଏ ତ ବହୁତ ସମୟ ଲାଗିଯିବ । ମୋତେ ତ ବର୍ତ୍ତମାନ ବେଳ ନାହିଁ । ବର୍ତ୍ତମାନ କ୍ଲାସକୁ ଯିବି । ସେଥିପାଇଁ ଏକାଧିକ ଦିନେ ଦୁଇ ତିନ ଘଣ୍ଟାରୁ ତ କମ୍ ଲାଗିବନି ? ତୁମେ କ'ଣ କ୍ଲାସରେ ପଢ଼ା ହେଲା ବେଳେ ନଥିଲ ?

"ନାଇଁ ସାର, ନଥିଲି । ଥିଲେ ମୁଁ ଆପଣଙ୍କୁ ହଇରାଣ କରିବାକୁ ଆସିଥାନ୍ତି କାହିଁକି ?

ଦେଖ ପୁଷ୍ପା, ତୁମେ ସିତା ନୋଟ୍ ଦେଖିନିଅ । ତା ନୋଟ୍ ଦେଖୁଥିଲି ସେ ଦିନ । ସେ ବେଶ୍ ଭଲ ଭାବରେ ନୋଟ୍ କରିଛି ।

ସି, ତା କ'ଣ ମୋତେ ତା' ନୋଟ୍ ଦେଖାଇବ ସାର ? ଅପଣ କ'ଣ ଜାଣିନାହାନ୍ତି ? ସେ ପରା ମୋର ପ୍ରଧାନ ପ୍ରତିଦ୍ୱନ୍ଦୀ ?

"ଓଃ, ବୁଝିଲି ଏଥର । ଏମ୍. ଏସ୍.ସିରେ ତୁମ ଦୁଇଜଣଙ୍କ ଭିତରୁ କିଏ ଫାଷ୍ଟ କ୍ଲାସ ଫାଷ୍ଟ ହେବ, ତୁମ ଦୁହିଁଙ୍କ ଭିତରେ ଦରି ପ୍ରତିଯୋଗିତା ଚାଲିଛି ! ଏ ପ୍ରତିଯୋଗିତା ତା ହେଲେ ଶିକ୍ଷାମନ୍ତ୍ରୀ ଓ ଡି, ପି, ଆଇଙ୍କ ଭିତରେ ? ଶିକ୍ଷାମନ୍ତ୍ରୀ ତ ସବା ଉପରେ ? ତାଙ୍କୁ ଟପାଇବ କିଏ ?" ହସି ହସି କହିଲା ଅମରେଶ ।

"ହଁ, ସାର, ଆପଣଙ୍କର ସବୁବେଳେ ସେହିଭଳି ଥଟ୍ଟା । ସେ ଆପଣଙ୍କ ଠାରୁ ସବୁ ବୁଝିନେଇ ଭଲ ଭାବରେ ନୋଟ୍ କରି ପକାଇଛି । ଆପଣ ତା ନୋଟ୍ ସବୁ ଦେଖି ସଂଶୋଧନ କରି ଦେଇଛନ୍ତି । ସେ ଏଥର ଇଉନିଭରସିଟିରେ ଫାଷ୍ଟ ହେବ ।"

"ନା ନା, ମୁଁ ତ ତା' ନୋଟ ମୋଟେ ସଂଶୋଧନ କରି ଦେଇନି । ତୁମକୁ ସେ ଭୁଲ ଖବର ଦେଲା କିଏ ?

"ସଞ୍ଜୀବ କହୁଥିଲା ।"

ସେ ତୁମକୁ ନିରୁତ୍ସାହ କରିଦେବା ପାଇଁ ମିଛରେ ସେମିତି କହି ଦେଇଛି ପୁଷ୍ପା । ସଞ୍ଜୀବକୁ କ'ଣ ତୁମେ ଚିହ୍ନି ନ ? ସେ ଭାରି ଚଗଲା ପିଲା ।

"ତା ହେଲେ ମୋତେ ବୁଝାଇ ଦେବେ କେତେବେଳେ ସାର ?

"ସମୟ ଦେଖିବାକୁ ପଡ଼ିବ ।"

"ସାର,ଆପଣଙ୍କ ଘରକୁ ସନ୍ଧ୍ୟାବେଳେ ଗଲେ ? ଆପଣ ତ ସନ୍ଧ୍ୟାବେଳେ ନିଶ୍ଚୟ ଘରେ ରହୁଥିବେ ? ସେଠି ମୋତେ ଟିକିଏ ବୁଝାଇ ଦେବେ ନି ? ମୋ ପାଇଁ ଏତକ କଷ୍ଟ କରନ୍ତୁ ସାର ।"

ତୁମ ମଥା ଠିକ୍ ଅଛି ପୁଷ୍ପା ? ତୁମେ ସନ୍ଧ୍ୟାବେଳେ ମୋ ବସାକୁ ଆସିବ ? ତୁମେ ଜାଣିଛ ମୁଁ ବସାରେ ଏକା ରହେ । ତୁମେ ଜଣେ ଯୁବତୀ । ସନ୍ଧ୍ୟାବେଳେ ଜଣେ ଯୁବତୀ ଯଦି ଜଣେ ଯୁବକର ଘରକୁ ଆସେ, ପୁଣି ଯୁବକଟି ଅବିବାହିତ, ଘରେ ଏକା ରହୁଥାଏ, ଏହାକୁ ଦେଖି ଲୋକେ କ'ଣ କହିବେ ସେ ଆଡ଼କୁ ଟିକିଏ ନଜର ଅଛି ତ ?

ଆପଣ ଗୁରୁ, ମୁଁ ଛାତ୍ରୀ, ଏଥିରେ କାହାର କିଛି ତ ଭାବିବାର ନାହିଁ ସାର ।

ତୁମେ ପିଲା ହୋଇଯାଅନା ପୁଷ୍ପା । ଟିକିଏ ଚିନ୍ତା କର । ତୁମେ ତ ଛୋଟ ଝିଅଟିଏ ହୋଇ ନାହଁ, ଏ ଭଲ ଉତ୍ତର ତୁମ ମୁହଁରୁ ଶୋଭା ପାଇବ ? ମୁଁ ଜଣେ ଅବିବାହିତ ଯୁବକ, ତୁମେ ଜଣେ ଅବିବାହିତା ଯୁବତୀ, ପୁଣି ସୁନ୍ଦରୀ । ଗୋଟିଏ ଘରେ ପାଠ ପଢ଼ିବାର ଓ ପାଠ ପଢ଼ାଉଥିବାର ଦେଖିଲେ ଆମ ଦେଶର ଲୋକ ଏହାକୁ ପବିତ୍ର ଗୁରୁ-ଛାତ୍ରୀ ସଂପର୍କ ବୋଲି ଭାବିବେନି ପୁଷ୍ପା । ତୁମ ଓ ମୋ ନାଁରେ ତହୁଁ ପରିଦିନ କୁତ୍ସାରଟନା ଏହି ସହର ସାରା ବ୍ୟାପିଯିବ ।”

“ତା ହେଲେ ମୁଁ କେମିତି ବୁଝିବି ସାର ?

ମୁଁ ସେଇଆ ଭାବୁଛି ପୁଷ୍ପା । ତେବେ ଗୋଟିଏ ବାଟ କର । ମୁଁ ଦିନେ ତୁମ ଘରକୁ ଯାଇ ସେହି ବିଷୟଟି ବୁଝାଇ ଦେଇ ଆସିବି । କେଉଁ ଦିନ ମୋତେ ସୁବିଧା ହେବ, ଆଜି କଲେଜରୁ ଗଲାବେଳେ ମୋ ଠାରୁ ବୁଝିଯିବ ।”

“ଅଶେଷ ଧନ୍ୟବାଦ ସାର । ମୁଁ ଏଥିପାଇଁ ଆପଣଙ୍କ ଠାରେ ଚିର ଋଣୀ ହୋଇ ରହିବି ।” ଏତକ କହି ଚାଲିଗଲା ପୁଷ୍ପା ।

ଏକ ଦକ୍ଷ ଓ ପ୍ରିୟ ଅଧ୍ୟାପକ ଭାବରେ ଅମରେଶର ଖ୍ୟାତି ସାରା ରସାୟନ ବିଭାଗରେ ସବୁଠାରୁ ବେଶି । ପିଲାମାନଙ୍କୁ ସେ ଭଲ ପଢ଼ାଏ ଓ ସେମାନଙ୍କୁ ଭଲ ବୁଝାଇପାରେ ବୋଲି ସବୁ କଷ୍ଟ କଷ୍ଟ ବିଷୟକୁ ପଢାଇବା ପାଇଁ ତାକୁ ଦିଆ ଯାଇଥାଏ । ବହୁ ପୁଅ ଝିଅ ତା ଠାରୁ ପାଠ ବୁଝିବାକୁ ଆସନ୍ତି ବହୁ ସମୟରେ ।

ଅମରେଶ ପାଟଣା ବିଶ୍ୱବିଦ୍ୟାଳୟର କୃତି ଛାତ୍ରମାନଙ୍କ ଭିତରୁ ଜଣେ । ମେଟ୍ରିକ୍ୟୁଲେସନ ପରୀକ୍ଷାଠାରୁ ଆରମ୍ଭ କରି ଏମ୍, ଏସ୍‌,ସି ପରୀକ୍ଷା ପର୍ଯ୍ୟନ୍ତ ସବୁବେଳେ ପରୀକ୍ଷାରେ ପ୍ରଥମ ହୋଇ ଆସିଛି । ପୁରାପୁରି ବୃତ୍ତିପାଇ ପଢ଼ି ଆସିଛି ସେ ।

ବାପା ତାର ରାଞ୍ଚି କଲେଜରେ ପ୍ରିନ୍‌ସପାଲ । ତା ପଢ଼ା ପଛରେ ବାପାଙ୍କର ଗୋଟିଏ ବୋଲି ପଇସା ଖର୍ଚ୍ଚ ହୋଇନି । ଯାହା ବୃତ୍ତି ପାଏ

ସେଭଳକରେ ଚଳେଯାଏ । ଅତ୍ୟଧିକ ମିତବ୍ୟୟୀ । ବାପାଙ୍କ ପାଖରୁ କଦବା କେମିତି ଟଙ୍କା ଆଣେ । ପୋଷାକପତ୍ରରେ ସେମିତି କିଛି ଷ୍ଟାଇଲ ନାହିଁ । ପୁରାପୁରି ସାଧାସିଧା । ସିନେମା ଥିଏଟର କିଛି ନାହିଁ । ପାନ ସିଗାରେଟ ଆଦର ସେ ଧାର ଧାରେନା ।

ଏମ୍‌, ଏସ୍‌ସି ପାସ କରବା ସଙ୍ଗେ ସଙ୍ଗେ ମେଧାବୀ ଛାତ୍ର ବୋଲି ସଙ୍ଗେ ସଙ୍ଗେ ପାଟନା କଲେଜରେ ଲେକଚରର ଚାକିରୀ ପାଇଗଲା । ପୁଅ ଲେକଚରର ହୋଇଯିବା ଶୁଣି ବାପାଙ୍କର ମନ କୁଣ୍ଡେ ମୋଟ ।

ବାପା ଦିନେ ବିଶ୍ୱବିଦ୍ୟାଳୟ କାମରେ ପାଟନା ଆସିଥିଲେ । ଗଲାବେଳେ ପୁଅକୁ ଦେଖା କରି ଉପଦେଶ ଦେଇଗଲେ, "ବାପ ଅମରେଶ ! ତୁ ଗବେଷଣା କରୁଛୁ ବୋଲି ଶୁଣିଲି । ଗବେଷଣା ଅବଶ୍ୟ ଭଲ କଥା । ତେବେ ତୋ ଭଳି ମେଧାବୀ ପିଲା ବର୍ତ୍ତମାନ ଗବେଷଣାରେ ସମୟ ନଷ୍ଟ ନ କରି ଆଇ. ଏ. ଏସ. ପରୀକ୍ଷା ପାଇଁ ପ୍ରସ୍ତୁତ ହେବା କଥା । ଏହି ପରୀକ୍ଷା ଦେବା ପାଇଁ ଏକ ନିର୍ଦ୍ଦିଷ୍ଟ ବୟସ ସୀମା ରହିଛି । ତେଣୁ ସେଦିଗରେ ତୁ ସର୍ବପ୍ରଥମ ଚେଷ୍ଟା କର ବାପ । ଯଦି କୃତକାର୍ଯ୍ୟ ହେଲୁ ଭଲକଥା । ଯଦି ନ ହେଉ, ତେବେ ଗବେଷଣା ଦିଗରେ ଆଗେଇ ଯିବୁ । ତୋ ଭଳି ମେଧାବୀ ଓ ପରିଶ୍ରମୀ ପିଲା ଯେ ଏହି ପରୀକ୍ଷାରେ କୃତକାର୍ଯ୍ୟ ନ ହେବ, ତାହା ମୁଁ ଭାବି ପାରୁନି ବାପ । ମୋର ପୂରା ବିଶ୍ୱାସ ତୁ ଏ ଦିଗରେ ଲାଗି ପଡ଼ିଲେ ଏହି ପରୀକ୍ଷାରେ ନିଶ୍ଚୟ କୃତକାର୍ଯ୍ୟ ହେବୁ ।"

ବାପାଙ୍କ ଉପଦେଶକୁ ଶିରୋଧାର୍ଯ୍ୟ କରି ଆଗେଇ ଯାଏ ଅମରେଶ । ଦିନ ରାତି ପରିଶ୍ରମ କରି ପଢ଼ାପଢ଼ି କରେ ଆଇ.ଏ.ଏସ ପରୀକ୍ଷା ପାଇଁ । ପ୍ରଥମ ଥର ପରୀକ୍ଷାରେ ସେ ଆଶାତୀତ ଭାବରେ କୃତକାର୍ଯ୍ୟ ହେଲା । ସର୍ବ ଭାରତୀୟ ପରୀକ୍ଷା ର ସେ ପ୍ରଥମ ସ୍ଥାନ ଅଧିକାର କରି ବିହାରରେ ଚହଳ ଖେଳାଇ ଦେଲା । ସାରା ବିହାରରେ ତା'ର ଖ୍ୟାତି ବଢିଗଲା ଆଶାତୀତ । ଉଭୟ ଆଇ. ଏ. ଏସ୍‌ ଓ ଆଇ. ଏଫ୍‌. ଏସ୍‌ରେ ଯୋଗଦାନ କରିବା ପାଇଁ ନିମନ୍ତ୍ରଣ ପାଇଲା ଭାରତ ସରକାରଙ୍କ ଠାରୁ ।

ବାପାଙ୍କ ଉପଦେଶରେ ସେ ଗ୍ରହଣ କଲା ଆଇ. ଏ. ଏସ୍‌. ଛାଡ଼ିଦେଲା ଆଇ. ଏଫ୍‌. ଏସ । ବାପାଙ୍କ ମତ ଆଇ. ଏଫ୍‌. ଏସ୍‌ ଚାକିରୀ ଅମରେଶ

ପାଇଁ ସୁବିଧା ଜନକ ନୁହେଁ । ଏହି ଚାକରୀରେ ସାରା ଜୀବନ ବିଦେଶରେ କଟାଇ-ବାକୁ ପଡ଼ିବ । ସେ ତାଙ୍କର ଗୋଟିଏ ବୋଲି ପୁଅ । ନିଜେ ବୁଢ଼ା ହୋଇ ଅବ-ସର ନେଲେ କାହା ପାଖରେ ରହିବେ ? ପୁଅ ଯଦି ବିଦେଶରେ ଥାଏ, ବୁଢା କାଳକୁ ସେମାନଙ୍କ ଚଳାଚଳି ର ବଡ଼ ଅସୁବିଧା ଉପୁଜିବ । ଅଉ ଗୋଟିଏ ପୁଅ ଥାଆନ୍ତା, ଏ ପୁଅ ବିଦେଶରେ ଚାକରୀ କଲେ କିଛି ଅସୁବିଧା ହୁଅନ୍ତା ନାହିଁ ।

ତା ଛଡ଼ା ଆଇ ଏଫ୍ ଏସ୍ ଚାକରୀରେ ସମ୍ମାନ କାହିଁ ? କିଏ ତୁମକୁ ଜାଣିବ ନା କିଏ ପଚାରିବ ? ଆଇ: ଏ: ଏସ: ହେଲା ଗୋଟାଏ ଚାକରୀ ଭିତରେ ଚାକରୀ । ସେ ଚାକରୀରେ ଯେଉଁ ସମ୍ମାନ, ଯେଉଁ କ୍ଷମତା, ଯେଉଁ ଆଧିପତ୍ୟ, ତାହି କ'ଣ ଅନ୍ୟ କେଉଁ ଚାକରୀରେ ଅଛି ?

ବିପିନବାବୁ ଏହି ସବୁ କଥା ବିଚାର କରି ପୁଅକୁ ଆଇ: ଏ: ଏସ: ହେବା ପାଇଁ ଉପଦେଶ ଦେଲେ । ତାଙ୍କ ମତରେ ଏହି ଚାକରୀରେ ମାନ,ସମ୍ମାନ ସବୁ କିଛି ଅଛି ! କ୍ଷମତା ଅଛି । ହାକିମାତି ବି ଅଛି । ରାଜାରାଜୁଡ଼ା ଚାଲିଗଲେ ପରେ ଏମାନେ ହେଲେ ଆମ ଦେଶର ରଜା । ବିଗତ ଯୁଗରେ ରାଜାମାନଙ୍କର ଯେଉଁ ସମ୍ମାନ ଥିଲା ବର୍ତ୍ତମାନ ଯୁଗରେ ଆଇ. ଏ. ଏସ.ମାନଙ୍କର ତାଠୁଁ ଅଧିକ ସମ୍ମାନ ଅଛି । ଜାଣ ପୁରୁଣା ରଜା ଗଲେ, ନୂଆ ରଜା ଅଇଲେ । ମନ୍ତ୍ରୀମାନେ ବେଳେ-ବେଳେ ଏହି ଆଇ: ଏ: ଏସ: ଗୁଡ଼ାଙ୍କୁ ରାଜା ଭଳି ସମ୍ମାନ ଦେଖାନ୍ତି । ଶାସନ ଡୋର ପୂରାପୂରି ସେହିମାନଙ୍କ ହାତରେ । ମନ୍ତ୍ରୀମାନେ ଜାଣ ଖାଲି ବାଡ଼କୁ ବତା ଭଳି ।

ଅଧ୍ୟାପକ ହୋଇ ଆଇ. ଏ. ଏସ. ପାଇଗଲେ ଅଧ୍ୟାପକ ହିସାବରେ ମାନ ଖାତିର ଢେର ବଢ଼ିଯାଏ । ଆଇ ଏ ଏସ୍ ପାଇଲା ଦିନରୁ ତା' ପାଖକୁ ଝିଅ-ମାନଙ୍କ ଆଗମନ ଆଗ ଅପେକ୍ଷା ଅନେକ ବଢ଼ିଗଲେ । ସ୍ମିତା ଓ ପୁଷ୍ପାର ଆଗ-ମନ ତା ଠାକୁ ହେଲା ଆଗ ଅପେକ୍ଷା ଢ଼େର ବେଶି । ପୁଷ୍ପାର ବାପା ବୋଉଙ୍କ ଇଚ୍ଛା ଅମରେଶକୁ ଜୋଇଁ କରିବେ । ସ୍ମିତା ବାପା ବୋଉଙ୍କ ଇଚ୍ଛା ଅମରେଶ ତାଙ୍କ ଝିଅ ପାଇଁ ସବୁଠାରୁ ଉପଯୁକ୍ତ ପାତ୍ର । ଅମରେଶ ଦେଖିବାକୁ ସୌମ୍ୟକାନ୍ତ ରୂପବାନ ବଳିଷ୍ଠ ଚେହେରା । ବ୍ୟବହାର ଅତ୍ୟନ୍ତ ମଧୁର । ଟାଣ କରି କାହାକୁ ପଦେ କହେନି । କାହା ଉପରେ କେବେ ରାଗ କରିବାର କେହି ଦେଖିନାହାନ୍ତି । ଚେହେରା

ଅଭ୍ୟାସ ବୋଲି କିଛି ନାହିଁ । ଏଭଳି ଉପଯୁକ୍ତ ପାତ୍ରକୁ ହାତରୁ ଛାଡ଼େ କିଏ ? ସ୍ମିତା ହାତରେ ତା' ମା ଅମରେଶଙ୍କୁ ଘରକୁ ଡ଼କାଇ ପଠାନ୍ତି ଝିଅକୁ ପଢ଼ାରେ ସାହାଯ୍ୟ କରିବା ବାହାନାରେ । ବେଳେବେଳେ ଝିଅକୁ ଅମରେଶ ପାଖରେ ଛାଡ଼ି ଦେଇ ପଡ଼ୋଶୀ ଘରକୁ ଚାଲିଯାନ୍ତି । ଇଚ୍ଛା, ଉଭୟଙ୍କ ଭିତରେ ସଂପର୍କ ଟିକିଏ ଘନିଷ୍ଠ ହେଉ ।

ପୂର୍ଣ୍ଣିମା ମା ଗାଡ଼ି ପଠାଇ ଅମରେଶଙ୍କୁ ନିଜ କୋଠିକୁ ନେଇଯାନ୍ତି । କଥା-ବାର୍ତ୍ତା ଖିଆପିଆ ଖୁବ୍ ଜୋରସୋରରେ ଚାଲେ । ଅମରେଶ ଉପରେ ମନ୍ତ୍ରୀଙ୍କର ଖୁବ୍ ଭଲ ଧାରଣା । ଅମରେଶ ଗୋଟିଏ ସୁନାମୁଣ୍ଡା । କଲେଜର ଅଭାବ ଅସୁବିଧା କଥା ପଦେ କହିଲେ ସଙ୍ଗେ ସଙ୍ଗେ ସେହି ଅଭାବ ଦୂର ହୋଇଯାଏ । ନ ହେବ ବା କେମିତି ? ମନ୍ତ୍ରୀଙ୍କ ଝିଅ ଯେଉଁ କଲେଜର ଛାତ୍ରୀ, ସେ କଲେଜରେ କିଛି ଅଭାବ ଅସୁବିଧା କ'ଣ କେବେ ରହିପାରେ ?

ଝିଅ ଦୁଇଟିଙ୍କ ପରିବାର ପରସ୍ପର ଅଜଣାରେ ଅମରେଶଙ୍କୁ କେମିତି ନିଜର କରିବାକୁ ଚେଷ୍ଟା କରୁଆନ୍ତି, ଏହାକୁ କେହି ଜାଣନ୍ତି ନି ? ଡ଼, ପି ଆଇ, ଥରକୁ ଥର ଗାଡ଼ି କଲେଜକୁ ଛୁଟାଇ ପକାଇ ଅମରେଶ ବାପାଙ୍କୁ ହାତରେ ରଖିବାକୁ ଚେଷ୍ଟା କରନ୍ତି । ମନ୍ତ୍ରୀ ତ ଡ଼, ପି, ଆଇ,ଙ୍କ ଉପରେ । ସେ ହା କହିଦେଲାକ୍ଷଣି କେତେ ପ୍ରିନ୍‌ସପାଲ ଦୌଡ଼ି ଆସିବେ ।

ଅମରେଶଙ୍କୁ ପାଇବା ପାଇଁ ଦୁଇ ପରିବାରର ଆପ୍ରାଣ ଚେଷ୍ଟା ଅମ-ରେଶଙ୍କୁ ଅଜଣା ରହିଲା ନାହିଁ । ଘରକୁ ଗଲେ ବୋଉ ଏ ଦୁଇ ଝିଅଙ୍କ କଥା ପଚାରେ । ସେମାନଙ୍କ ଭିତରୁ କାହାକୁ ଅମରେଶର ଅଧିକ ପସନ୍ଦ, ଜାଣିବାକୁ ଚେଷ୍ଟା କରନ୍ତି ରାଧାମଣି ଦେବୀ । ପୁଅର ବାହାଘର ପାଇଁ ଯେତେବେଳେ ଉଚ୍ଚପଦସ୍ଥ ବ୍ୟକ୍ତିଙ୍କ ଘରୁ ପ୍ରସ୍ତାବ ଆସିଲାଣି, ପୁଅର ମତ ନେଇ ଗୋଟିକୁ ସିଦ୍ଧାନ୍ତ ନ କରିବେ କାହିଁକି ? ଅମରେଶଙ୍କୁ ପଚାରିଲେ ସେ ନୀରବ ରହେ, ସତେ ଯେମିତି ଦୁଇ ପରିବାରର ପ୍ରତିଯୋଗିତା ବିଷୟରେ କିଛି ଜାଣେନି ସେ ।

ପୁଅ ଆଇ. ଏ. ଏସ ହେଲେ ବାପ ମା'ଙ୍କର ମନ କୁଣ୍ଢେ ମୋଟ ହୋଇ-ଯାଏ । ମନେ ମନେ ଭାବନ୍ତି ପୁଅ ଏ ଖଣ୍ଡ ମଣ୍ଡଳରେ ରଜା ହେଲା । ରାଧାମଣି ଦେବୀ କିନ୍ତୁ ଏହାର ଠିକ ଓଲଟା । ସେ ଶୁଣିଛନ୍ତି, ଆଇ. ଏ. ଏସ. ଲୋକମାନେ

ନୂଆ ନୂଆ ଖଟଣି ବେଶି । ସବୁବେଳେ ଟୁର୍ । ଦିନନାହିଁ ରାତିନାହିଁ ଏଠିକି ଯାଅ, ସେଠିକି ଯାଅ । ବଡ଼ ସାହେବଙ୍କ ହୁକୁମ ତାମିଲ କର । ନୋହିଲେ ଚାକିରି ଗଲା । ବଡ଼ ଖୋସାମତିଆ ଚାକିରି, ନିଜତ୍ୱ ବୋଲି କିଛି ନାହିଁ । ସବୁବେଳେ ହଁ ସାର୍, ହଁ ସାର୍ ହୋଇ ଜୀବନ ଯିବ । ମନ୍ତ୍ରୀ, ଏମ୍.ଏଲ୍.ଏ.ଙ୍କ ପଛରେ ଗୋଡ଼ାଇ ଗୋଡ଼ାଇ ନିଜ ଯୋତା ଛିଣ୍ଡିବ । ରାଧାମଣି ଦେବୀ ମନେ ମନେ ଆଇ. ଏ. ଏସ୍ ଚାକିରିକୁ ଭାରି ଘୃଣା କରନ୍ତି ।

ତାଙ୍କ ମତରେ ଲେକଚରର ଚାକିରି ସବୁଠାରୁ ଭଲ । ଏଥିରେ ଧୂଳି ମଳି କିଛି ନାହିଁ । ପିଲା ଗୁଡ଼ାଙ୍କୁ ବାପ ମା ମାନେ ଅଯଥା ପାଗଳ କରି ଦେଇ ଏହି ଆଇ. ଏ. ଏସ୍. ଆଡ଼କୁ ମୁହାଁଇ ଦେଉଛନ୍ତି । ସେ କହନ୍ତି ମେଧାବୀ ପିଲାମାନେ ଲେକଚରର ହେବା ଉଚିତ୍ । ଗୁଣ୍ଡା ଛତରା ପିଲାଏ ଆଇ. ଏ. ଏସ୍ ହେବାକୁ ଯୋଗ୍ୟ । ଆଇ. ଏ ଏସ ଚାକିରିରେ କେଉଁଠି ମଥା ଖଟାଇ କିଛି କାମ କରିବାର ନାହିଁ । ଯେଉଁଠି ମଥା ଖଟାଇବାର ଦରକାର ପଡ଼େ, ସେଠି ଅଧସ୍ତନ କର୍ମଚାରୀଙ୍କ ମଥାରେ କାମ ନିଆଯାଏ । ଚାକିରି ହେଉଛି ଖାଲି ହିଙ୍କୁ ଆରେଷ୍ଟ କର, ତାକୁ ବାନ୍ଧି ପକାଅ, କେଉଁଠି ଗୁଣ୍ଡାମି କାରବାର ହେଲା ତାକୁ ରୋକ, ଚୋର, ଡକାୟତ ଗୁଣ୍ଡାମାନଙ୍କୁ ଆୟତ୍ତରେ ରଖ । କେଉଁଠି ମାଡ଼ପିଟ୍ କରି ବା ଗୁଳି ଫାୟାର କରି ଛାତ୍ର ଧର୍ମଘଟକୁ ଦବାଅ । ଏସବୁ କଅଣ ଭଦ୍ର ଘରର ଶାନ୍ତ ଶିଷ୍ଟ ପିଲାମାନଙ୍କ କାମ ? ତାଙ୍କ ମତ ହେଉଛି ସରକାର ଏମିତି ଆଇନ କରିଦେବା ଉଚିତ ଯେମିତି କି ଭଦ୍ର ଶାନ୍ତଶିଷ୍ଟ ମେଧାବୀ ପିଲାମାନେ ଆଇ. ଏ. ଏସ ପରୀକ୍ଷା ଦେଇ ପାରିବେ ନାହିଁ, କି ଆଇ. ଏ. ଏସ ହୋଇ ପାରିବେନି ।

କିନ୍ତୁ ରାଧାମଣି ଦେବୀଙ୍କ ମତକୁ କେହି ପଚାରନ୍ତି ନାହିଁ, ତାଙ୍କ କଥାକୁ ଯିଏ ଶୁଣିବ, ସେ ହସିଦେବ । କହିବ ଏ ଗୋଟାଏ ପୁଣି କଥା, ନିହାତି ଭୁଲ କଥା । ରାଧାମଣି ଦେବୀ କାହାରି ଉପରେ ନିଜ ମତକୁ ଜାହିର କରିବାକୁ ଚାହାଁନ୍ତିନି ।

ପୁଅର ଭବିଷ୍ୟତ ମା ଗୋଟିଏ ଦୃଷ୍ଟି କୋଣରୁ ଦେଖିଲା ବେଳକୁ ବାପା ଦେଖନ୍ତି ଆଉ ଏକ ଦୃଷ୍ଟି କୋଣରୁ । ଦୁଇଟି ଦୃଷ୍ଟିକୋଣ ପରସ୍ପରର ପୁରାପୁରି ବିପରୀତ । ବିପିନ ବାବୁଙ୍କ ଦୃଷ୍ଟିକୋଣହିଁ ଠିକ୍ ବୋଲି ପ୍ରତିଭାତ ହୁଏ । ଆମରେରିକା ଆଇ. ଏ, ଏସ ଚାକିରୀ ଗ୍ରହଣ କରି ଟ୍ରେନିଂକୁ ଯାଏ । ଟ୍ରେନିଂରୁ

ଫେର ତା'ର ପୋଷ୍ଟିଂ ହୁଏ ପାଟନା ସହରରେ, ପାଟନାଜିଲ୍ଲାର ଆଡ଼ିସନାଲ୍ କଲେକ୍ଟର ଭାବରେ ।

•

ଚାକିରିରେ ଜଏନ କରିବାର ଅଳ୍ପ କେତେ ଦିନ ଭିତରେ ଅମରେଶର ଡ଼ିଉଟି ପଡ଼େ ପାଟନା ସହରର ରାମଦାସ କଲେଜରେ ହେଉଥିବା ଏକ ଛାତ୍ର ଆନ୍ଦୋଳନକୁ ଆୟତ୍ତ କରିବା ପାଇଁ । କଲେଜର ଗୋଟାଏ ଝିଅକୁ କେନ୍ଦ୍ର କରି ଏହି ଧର୍ମଘଟ ଚାଲିଛି । ଜଣେ ଯୁବକ ଅଧ୍ୟାପକ ନୂଆକରି କଲେଜରେ ଜଏନ କରିଥାନ୍ତି । ଜଣେ ଝିଅ ତାଙ୍କ ପାଖକୁ ପାଠ ବୁଝିବା ପାଇଁ ଆସିଥିଲେ । ଝିଅଟିର ଅତ୍ୟାଧୁନିକ ଅର୍ଦ୍ଧ ଉଲଗ୍ନ ବେଶ ଦେଖି ଯୁବକ ଅଧ୍ୟାପକ ଜଣକ ନିଜକୁ ସମ୍ଭାଳି ନ ପାରି ଶିଷ୍ଟାଚାର ବହିର୍ଭୂତ କ'ଣ ଟିକିଏ ଅସଦାଚରଣ କରି ପକାଇଥିଲେ । କିନ୍ତୁ ପ୍ରକୃତ କଥା କେହି ବୁଝିଲେ ନାହିଁ । ହେଲା ଧର୍ମଘଟ । ଛାତ୍ର ମାନଙ୍କ ସିଦ୍ଧାନ୍ତ ହେଲା ଅଧ୍ୟାପକଙ୍କର ଶିଷ୍ଟାଚାର ବହିର୍ଭୂତ କାର୍ଯ୍ୟଯୋଗୁଁ ସେ ଝିଅଟିର ଗୋଡ଼ ତଳେ ପଡ଼ି କ୍ଷମା ମାଗନ୍ତୁ । ନୋହିଲେ ଧର୍ମଘଟ ଚାଲୁ ରହିବ ।

ବିହାର ରାଜ୍ୟରେ ଛାତ୍ର, ଧର୍ମଘଟମାନେ ଭଙ୍ଗାରୁଜା କାରବାର । ବସ ପୋଡ଼ାଠାରୁ ଆରମ୍ଭ କରି ସାଇକେଲ ରିକ୍‌ସା ଭାଙ୍ଗିବା ପର୍ଯ୍ୟନ୍ତ । ସେହି ଆନ୍ଦୋଳନକୁ ଦବାଇବା ଦାୟିତ୍ୱ ଦିଆଯାଇଥିଲା ଅମରେଶଙ୍କୁ । ଅମରେଶ ଦିନାକେତେ ଅଧ୍ୟାପକ ଥିଲା । ପାଟନା ନଗରୀରେ ଛାତ୍ରମାନଙ୍କ ମନୋବୃତ୍ତି ତାକୁ ବେଶ୍ ଭଲଭାବରେ ଜଣା । ତେଣୁ ତା'କୁ ଏ ଦାୟିତ୍ୱ ।

ସେ ଦିନେ କଲେଜ ନିକଟସ୍ଥ ଥାନାରେ ବସି ପୋଲିସ ଅଫିସରମାନଙ୍କ ସହିତ ଧର୍ମଘଟ ସଂପର୍କରେ ପରାମର୍ଶ ଚଳାଇଛି, ହଠାତ୍ ଗୋଟିଏ ଝିଅ ଗୋଟିଏ ଟୋକାର କାନ ଧରି ଟାଣି ଟାଣି ଥାନାକୁ ଆଣିଲା । ଗୋଟିଏ ହାତରେ ଟୋକାଟିର କାନ, ଅନ୍ୟ ହାତରେ ନିଜ ଗୋଡର ଚଟି ପଟେ । ଥାନାର ବାହାର ରୁମ୍‌ରେ ଡିଉଟି କରୁଥିବା ଇନ୍‌ସପେକ୍ଟରଙ୍କ ରୁମକୁ ସେ ଟୋକାଟାକୁ ଟାଣି ଟାଣି ନେଇ ଯାଇ ଠିଆ କରାଇ କହିଲା ।

"ଦେଖନ୍ତୁ ସାର୍, ଏହି ଛତରଖିଆ ସେହି ଆମ୍ବଗଛ ମୂଳେ ଠିଆ ହୋଇ ମୋତେ ଦେଖି ସିଟି ମାରୁଥିଲା । ଆଉ ଗୀତ ଗାଉଥିଲା, "ହାମ ତୁମ, ଏକ

କମରେ ମେ ବନ୍ଧ ହେଁ ।" ଏ ଟୋକାଟା ଏତେ ଛତର, ମୋତେ ଦେଖି କମେଣ୍ଟ ମାରୁଛି' ଆଉ ଅଶ୍ଳୀଳ ଇଙ୍ଗିତ ମଧ୍ୟ କରୁଛି ।

ଡ଼ିଉଟିରେ ଥିବା ପୋଲିସ ଅଫିସର ଜଣକ ନାଲି ନାଲି ଆଖି କରି ଟୋକାଟାକୁ ପଚାରିଲେ । "ଆବେ, ତୁ ହୁଇସିଲ ମାରୁଥିଲୁ ଏହାଙ୍କୁ ଦେଖି । ଅଶ୍ଳୀଳ ଇଙ୍ଗିତ ମଧ୍ୟ ଦେଉଥିଲୁ । ଆଉ ଗୀତ ମଧ୍ୟ ଗାଉଥିଲୁ । ଶଳାର ପ୍ରେମ ଘଣ୍ଟି ଘସିଯାଉଛି କରେ । ଶଳା ତୋ ଘର କେଉଁଠି ରେ ?"

"ଆସ୍ତେ, ହାବଲ୍ଦାର, ଏହାକୁ ହାଜତରେ ଭରତି କରିଦିଅ । ଏହାର ପ୍ରେମଘଣ୍ଟି କେତେ ଉଚ୍ଛୁଳ ପଡ଼ୁଛି ଦେଖିବା ।

ସେତେବେଳକୁ ଥାନା ଗେଟ ପାଖରେ ବହୁତ ଗୁଡ଼ାଏ ଲୋକ ଏକଠି ହୋଇଗଲେଣି ଏହି ଘଟଣା ଦେଖି । ଟୋକାଟାର କାନ ଧରି ଝିଅଟିଏ ଟାଣି ଟାଣି ଆଣୁଥିବାର ଦୃଶ୍ୟ ଦେଖି ସମସ୍ତେ ଚାଟଙ୍ଗା । ଥାନା ଗେଟ୍ ପାଖରେ ଗୋଳମାଳ ଶବ୍ଦଶୁଣି ଅମରେଶ ଚାଲି ଆସିଲା ଗେଟ ପାଖ ସାମନା କୋଠରୀକୁ । ଝିଅଟି ସେଠି ଠିଆ ହୋଇ ଟୋକାଟା ବିରୁଦ୍ଧରେ ତା ଅଭିଯୋଗ ଜଣାଉଥିଲା ପୋଲିସ ଅଫିସରଙ୍କୁ ।

ଝିଅଟି ଆଡ଼କୁ ଅନାଇ ତାର ଅର୍ଦ୍ଧ ଉଲଗ୍ନ ଆଧୁନିକ ଷ୍ଟାଇଲର ବେଶ ଦେଖି ଅମରେଶ ଟିକିଏ ଇତଃସ୍ତତଃ ହେଲାଭଳି ଅନୁଭବ କଲା ।

ତେବେ ଟୋକାଟାର କାନ ଧରି ଥାନାକୁ ଆଣିବାର ସାହସ ଦେଖି ମନେ ମନେ ଝିଅଟିକୁ ତାରିଫ ନ କରି ରହି ପାରିଲାନି । ଝିଅଟି ପାଖକୁ ଚାଲି-ଯାଇ କହିଲା ।

ଦେଖନ୍ତୁ ଦେଖନ୍ତୁ ହୁଁ ; ହୁଁ ।

"ମୋ ନାଁ ଶୁଭ୍ରା ଝିଅଟି କହିଲା ।
ହଁ, ହଁ, ଦେଖନ୍ତୁ ଶୁଭ୍ରାଦେବୀ" ।
ମୁଁ ଆଜ୍ଞା ଦେବୀ ଫେବୀ ନୁହେଁ, ମାଲ୍‌ହୋତ୍ରା ।

"ହଁ, ହଁ, ଦେଖନ୍ତୁ ମିସ୍ ଶୁଭ୍ରା ମାଲହୋତ୍ରା । ଆପଣଙ୍କ ସାହସ ଦେଖି ମୁଁ ଆପଣଙ୍କୁ ଧନ୍ୟବାଦ ନ ଜଣାଇ ରହିପାରୁନି । ଝିଅମାନେ ଯଦି ଆପଣଙ୍କ

ଭଳି ସାହସୀ ହୁଅନ୍ତି, ତେବେ ଏହି ସହରର ବର୍ତ୍ତମାନର ଯେଉଁ ପ୍ରଧାନ ପୋଲିସ ସମସ୍ୟା ହୋଇଛି, ଟୋକାମାନେ ଝିଅମାନଙ୍କୁ ଅଶ୍ଳୀଳ ଇଙ୍ଗିତ ଦେଉଛନ୍ତି, ତାହା ପ୍ରାୟ ବନ୍ଦ ହୋଇ ଯାଆନ୍ତା ।

"ବାଃ ବଢ଼ିଆ କଥା ? ଝିଅମାନେ ଟୋକାମାନଙ୍କୁ ଆୟତ୍ତ କରନ୍ତେ, ଆଉ ଆପଣମାନେ ଏଠି ବସି କ'ଣ କରନ୍ତେ ? ଖଞ୍ଜଣି ବଜାନ୍ତେ ?

ଝିଅଟିର କଡ଼ା ମିଜାଜ ଦେଖି ନିକଏ ଦବିଗଲା ଅମରେଶ । ତାକୁ ଟିକିଏ ଖୁସି କରିବା ପାଇଁ ହାଜତ୍‌ ରେ ଥିବା ଟୋକାଟା ପାଖକୁ ଧାଇଁଯାଇ ତାକୁ ଧମକାଇ ଦେଇ ପଚାରିଲା" ତୁ ମ ଏହାଙ୍କୁ ଅଶ୍ଳୀଳ ଇଙ୍ଗିତ ଦେଉଥିଲୁ ?

ଟୋକାଟା କିଛି ଉତ୍ତର ନ ଦେଇ ତଳକୁ ମୁହଁ ପୋତି ଠିଆ ହୋଇ ରହିଲା ।

"ସେ ଭାରି ଗୁଣ୍ଡା ପିଲା ସାର୍ । ଦେଖନ୍ତୁ ନାହାନ୍ତି କେମିତି ତଳକୁ ମୁହଁପୋତି ଠିଆ ହୋଇଛି । ତା ନେହେରା ସେତେବେଳେ ଆପଣ ଦେଖିଥିଲେ ନା ଆପଣଙ୍କ ଦେହ ଗରମ ହୋଇ ଯାଇଥାନ୍ତା । ସେ ମୋତେ ଦେଖି ଯେଉଁ ହୁଇସିଲ ମାରୁ-ଥିଲା, ଯେଉଁ ଫିଲ୍ମ ଗୀତ ଗାଉଥିଲା, ଭାବୁଥିଲା ସେ ଯେମିତି ଫିଲ୍ମରେ ଏକ୍ଟିଙ୍ଗ କରୁଛି । ସେ ହିରୋ ଆଉ ମୁଁ ହିରୋଇନ୍ ।

'ହୁଁ, କମ୍ ସାହସ ନୁହେଁ ଟୋକାଟାର ?"

ଆଉ ଜଣେ ପୋଲିସ ଅଫିସର ତା' କାନ ପାଖରେ କହିଦେଇ ଗଲେ, ସାର, ଇଏ ହେଉଛି ସେଇ ଝିଅ, ଯା ପାଇଁ ଆଜି ରାମଦାସ କଲେଜରେ ଧର୍ମଘଟ ଚାଲିଛି ।

ଅମରେଶ ଚମକି ପଡ଼ିଲା ଏଇକଥା ଶୁଣି । ଝିଅଟି ସହିତ କଥା ହେଉଁ ହେଉଁ ଏକ ନିଭୃତ ସ୍ଥାନକୁ ଡାକି ନେଇ କହିଲା ? "ଦେଖନ୍ତୁ ମିସ୍ ମାଲହୋତ୍ରା, ଆପଣ ନିଶ୍ଚୟ ସଂଭ୍ରାନ୍ତ ବଂଶର ଝିଅ । ଆପଣ ଯେଉଁଭଳି ପୋଷାକ ପିନ୍ଧି ବାହାରକୁ ଆସୁଛନ୍ତି ତାହା କ'ଣ ଉଚିତ ? ଦେଖନ୍ତୁ, ଅଣ୍ଡରଓୟାର ଭଳି ଟାଇଟ ପେଣ୍ଟଟିଏ, ତାପରେ ଏଡ଼ିକି ଟାଇଟିଆ ଜାକେଟଟିଏ, ମୁଣ୍ଡରେ ଏଡ଼େ ବଡ଼ ମାଛ ଧରା ଟୋପି । ଦେଖନ୍ତୁ, ଆପଣଙ୍କ ଶରୀରର ସବୁ ଅଙ୍ଗ ପ୍ରତ୍ୟଙ୍ଗ ବେଶ୍ ପରିଷ୍କାର ବାହାରକୁ ଦିଶୁଛି ? ଆପଣ ଏକେ ଯୁବତୀ, ପୁଣି ସୁନ୍ଦରୀ, ଆପଣ ଏଭଳି

ପୋଷାକ ପିନ୍ଧି ବାହାରକୁ ବୁଲି ଆସିଲେ ଟୋକାମାନେ ସିଟି ମାରବେ ନାହିଁ, ତ ଆଉ କ'ଣ ମନ୍ତ୍ର ପଢ଼ି, ମନ୍ଦିର ଘଣ୍ଟି ବଜାଇବେ ? ଆପଣ ଏ ପାଶ୍ଚାତ୍ୟ ଗାତରେ ପୋଷାକ ନ ପିନ୍ଧି ଆମ ଦେଶୀୟ ପୋଷାକ ପିନ୍ଧିଥିଲେ ତ ଏ ସମସ୍ୟା ଉପୁଜନ୍ତା ନାହିଁ ।

"ଦେଖନ୍ତୁ ଅଜ୍ଞା, ପୋଷାକ ପିନ୍ଧିବା ମୋ ବ୍ୟକ୍ତିଗତ ମାମଲା । ମୋ ପୋଷାକ ପିନ୍ଧା ଉପରେ ଆକ୍ଷେପ କରିବାକୁ ଆପଣ କିଏ ?

"ମୁଁ ଆକ୍ଷେପ କରୁନି ଶୁଭ୍ରା ଦେବୀ । ମୁଁ ମିନତି କରି କହୁଛି । ଆପଣ ପୋଷାକପତ୍ରରେ ଟିକିଏ ଶାଳୀନତା ଆଣନ୍ତୁ ।" ହଁ ମୁଁ ମଧ୍ୟ ଆଉ ଗୋଟିଏ ଶୁଣିବାକୁ ପାଉଛି, ଆପଣଙ୍କୁ କେନ୍ଦ୍ର କରି ଏହି ପାଖ କଲେଜରେ କାଲି ଧର୍ମଘଟ ଚାଲିଛି, ଏହା କ'ଣ ସତ ?

"ହଁ, ସତ ।"

କଲେଜର ସେହି ଯୁବକ ଅଧ୍ୟାପକ ଆପଣଙ୍କ ପ୍ରତି କ'ଣ ଅସଦାଚରଣ କଲେ !

"ହଁ, ।"

ଆପଣ କ'ଣ ସେ ଦିନ ସେହି ଅଧ୍ୟାପକଙ୍କୁ ଭେଟିବାକୁ ଯାଇଥିଲେ ?"

" ହଁ, ଯାଇଥିଲି ।"

"କାହିଁକି ?"

"ପାଠ ବୁଝିବାକୁ ।"

ସେ ଦିନ କ'ଣ ଆଜିକାର ପୋଷାକ ଭଳି ପୋଷାକ ପିନ୍ଧିଥିଲେ ?

"ହଁ, ପିନ୍ଧିଥିଲି । ମୁଁ ତ ସବୁବେଳେ ଏହିଭଳି ପୋଷାକ ପିନ୍ଧେ ।

ଆପଣ ଯେତେବେଳେ ତାଙ୍କ ପାଖକୁ ଯାଇଥିଲେ, ସେତେବେଳେ ଏକା ଯାଇଥିଲେ ନା ଆଉ କେହି ସାଙ୍ଗରେ ଥିଲେ ?

ନାଁ, ମୁଁ ଏକା ଯାଇଥିଲି ।

ରୁମରେ ସେ ଏକା ଥିଲେ ?

"ହଁ, ସେ ଏକା ଥିଲେ ।"

ଦେଖନ୍ତୁ ଶୁଭ୍ରା ଦେବୀ, ଆପଣ ଯଦି ଏହିଭଳି ପୋଷାକ ପିନ୍ଧି ଜଣେ ଯୁବକ ଅଧ୍ୟାପକଙ୍କ ପାଖକୁ କେହି ନଥିଲା ବେଳେ ଏକା ଯାଆନ୍ତି, ତେବେ ଆପଣଙ୍କ ଏ ପୋଷାକରେ ଆଧୁନିକତା ନାଆଁରେ ଯେଉଁ ଅଶ୍ଳୀଳତା ଅଛି, ସେଥିରେ ସେ ଅସଦାଚରଣ କଲେ ବୋଲି ତାଙ୍କୁ ଦୋଷ ଦେଇ ହେବ ନାହିଁ । ମଣିଷ ଯେତେ ସଂଯମୀ ହେଲେ ବି ସଂଯମର ଏକ ସୀମା ଅଛି । ଆପଣ ଏଭଳି ଅଧା ଲଙ୍ଗଳା ପୋଷାକରେ ଗଲେ କେଉଁ ଯୁବକ ଯେ ସଂଯମ ରକ୍ଷା କରି ଆପଣଙ୍କ ସହିତ କଥାବାର୍ତ୍ତା କରି ପାରିବ ମୁଁ ଭାବି ପାରୁନି ।

ଇନ୍‌ସପେକ୍ଟର, ଅଶ୍ଳୀଳ ପୋଷାକ ପିନ୍ଧିଥିବା ହେତୁ ଏହାଙ୍କୁ ବର୍ତ୍ତମାନ ଆରେଷ୍ଟ କରି ମହିଳା ହାଜତକୁ ନେଇଯାଅ ।”

ଆଉ ଜଣେ ପୋଲିସ ଅଫିସର ଆସି ଅମରେଶ କାନ ପାଖରେ କହି-ଦେଇଗଲେ, ନାହିଁ ସାର୍ ଏହାଙ୍କୁ ଆରେଷ୍ଟ କରନ୍ତୁ ନି । ଏହାଙ୍କ ବାପା ପାଟନା ସହରର ଏକ ବିରାଟ ସ୍ମଗ୍‌ଲର । ସବୁ ବଡ଼ ବଡ଼ ଅଫିସର, ମନ୍ତ୍ରୀ ତାଙ୍କ ହାତରେ । ବିଦେଶୀ ଜିନିଷ ଆଣି ବଡ଼ ବଡ଼ଆଙ୍କୁ ଯୋଗାଇ ହାତରେ ରଖିଛନ୍ତି । ଆପଣ ଏହାଙ୍କୁ ଆରେଷ୍ଟ କରିବାକୁ ଆଦେଶ ଦେଲେ, ଆପଣ ବିଇଗ୍ରଣରେ ପଡ଼ିଯିବେ ସାର୍ ।

“ଏହାଙ୍କୁ ହାଜତରେ ପୁରାଇ ଏହାଙ୍କ ବାପାଙ୍କ ପାଖକୁ ଖବର ଦିଅ । ସେ ବର୍ତ୍ତମାନ ଏହି ଥାନାକୁ ଆସି ମୋତେ ଦେଖା କରନ୍ତୁ ।

ଶୁଭ୍ରା ମହିଳା ହାଜତକୁ ନେଉଥିବା ଇନ୍‌ସପେକ୍ଟରଙ୍କୁ ପଚାରିଲା” ଏହି ଟୋକା ଅଫିସର ଜଣକ କିଏ ଇନ୍‌ସପେକ୍ଟର ?

ଏ ହେଉଛନ୍ତି ଏଠାକାର ଅତିରିକ୍ତ ଜିଲ୍ଲା ମାଜିଷ୍ଟ୍ରେଟ ଅମରେଶ ଚନ୍ଦ୍ର ଦାସ, ଆଇ. ଏ. ଏସ୍ ।

“ଓଃ, ଆଇ ଏ ଏସ ? ନୂଆ ହୋଇ ଆସିଛନ୍ତି ବୋଧ ହୁଏ ଚାକିରୀକୁ ?”

“ହିଁ ଏଇ ଅଳ୍ପ ଦିନ ତଳେ ଜଏନ କରିଛନ୍ତି ।”

କମ୍ ସାହସ ତ ନୁହେଁ, ‘ମୋତେ ଆରେଷ୍ଟ କରିବାକୁ ? ମୋତେ ଚିହ୍ନିନାହାନ୍ତି ବୋଧହୁଏ ?

× × ×

ପିଲମାନଙ୍କ ବରାଟ ସଭା ବସିଛି । ସଭାର ଗୋଟିଏ ପାଖରେ ଶୁଭ୍ରା ଦେବୀ ତାଙ୍କର ନବତମ ପୋଷାକ ପିନ୍ଧି ଅତି ଦର୍ପରେ ଠିଆ ହୋଇଥାନ୍ତି । ଯୁବକ ଅଧ୍ୟାପକ ଜଣକ ତାଙ୍କ ଠାରୁ ଦୂରେଇ ଆଉ ଏକ ସ୍ଥାନରେ ଠିଆ ହୋଇଥାନ୍ତି । ଅମରେଶ ପିଲମାନଙ୍କ ଭିତରେ ମିଳାମିଶା କରାଇ ଧର୍ମଘଟକୁ ଭାଙ୍ଗି ଦେବାକୁ ଚାହେଁ ।

ସେ ପିଲମାନଙ୍କ ଠାରୁ ସବୁ କଥା ଶୁଣିଲା । ଅଧ୍ୟାପକ ଜଣକ କ'ଣ ଅସଦାଚରଣ କଲେ ତା ବି ଶୁଣିଲା । ଶୁଭ୍ରା ଦେବୀ ଦର୍ପରେ ଧଳା ଦେହ ଅଧା ଲଙ୍ଗଳା ପୋଷାକରେ ଠିଆ ହୋଇଥାନ୍ତି ସମସ୍ତଙ୍କ ସମ୍ମୁଖରେ ।

ଅମରେଶ ପିଲମାନଙ୍କୁ ଚାହିଁ କହିଲା, "ଆପଣମାନେ ଦେଖନ୍ତୁ, ଆମ ଦେଶ ହେଲା ଭାରତବର୍ଷ । ଆମ ଦେଶର ଏକ ବରାଟ ପରମ୍ପରା ଅଛି । ଆମର ସଂସ୍କୃତି ଅତି ପ୍ରାଚୀନ । ଆମ ସଂସ୍କୃତି ଓ ପରମ୍ପରା ଅନୁସାରେ ପୋଷାକ ପିନ୍ଧି-ବାରେ ଏକ ଶ୍ଳୀଳତା ଅଛି । ଭାରତୀୟ ପରମ୍ପରା କହେ ସାରା ଦେହକୁ ଆଚ୍ଛା-ଦିତ କରି ପୋଷାକ ପିନ୍ଧିବା ଦରକାର କେଉଁ ଅଂଶ କେଉଁପରି ବାହାରକୁ ଦିଶି ଅନ୍ୟମାନଙ୍କ ମନରେ ବିକାର ଜନ୍ମାଇବାରେ ସାହାଯ୍ୟ ନ କରେ, ସେଥିପ୍ରତି ଦୃଷ୍ଟି ଦେବା ହେଲା ଆମ ସଂସ୍କୃତି । ମୁଁ ଯାହା କହୁଛି ଠିକ୍ କହୁଛି ନା ଭୁଲ କହୁଛି, ଆପଣମାନେ କହନ୍ତୁ ।

ପିଲମାନଙ୍କ ଭିତରୁ ପାଟି ଉଠିଲା, "ଠିକ୍, ଆପଣ ଯାହା କହୁଛନ୍ତି ଠିକ୍ ।

ବର୍ତ୍ତମାନ ଆପଣମାନେ ଶୁଭ୍ରା ଦେବୀଙ୍କ ଆଡ଼କୁ ଚାହାନ୍ତୁ । ସେ ଯେଉଁ ପୋଷାକ ପିନ୍ଧି ଆସିଛନ୍ତି, ତାହା କ'ଣ ଭାରତୀୟ ମହାନ ସଂସ୍କୃତି ତଥା ପରମ୍ପରାର ପ୍ରତୀକ ?

ପିଲମାନେ କିଛି ନ କହି ଚୁପ୍ ରହିଲେ ।

ଅମରେଶ ଶୁଭ୍ରା ଆଡ଼କୁ ଚାହିଁ କହିଲା, "ଦେଖନ୍ତୁ ଶୁଭ୍ରାଦେବୀ, ଆପଣ ଏହି ପୋଷାକ ପିନ୍ଧି ପ୍ରତିଦିନ କ'ଣ କଲେଜକୁ ଆସନ୍ତି ?

"ହଁ, ଆସେ ।

ଆପଣଙ୍କ ପ୍ରିନ୍‌ସିପାଲ କି ପ୍ରଫେସର ଏହି ପୋଷାକ ପାଇଁ କ'ଣ କିଛି କହନ୍ତି ନାହିଁ ?

ପ୍ରିନ୍‌ସିପାଲ ମୋତେ କେବେ ଦେଖିନାହାନ୍ତି । ଆମ ପଦାର୍ଥ ବିଜ୍ଞାନ ବିଭାଗର ମୁଖ୍ୟ ଅଧ୍ୟାପକ ଡ଼କ୍ଟର ବେନେର୍ଜି ମୋତେ ଏ ପୋଷାକରେ ଦେଖି ବାପାଙ୍କୁ ଡାକିନେଇ କହିଲେ, "ଦେଖ ଝିଅ, ଏମିତି ପୋଷାକରେ ତୋର କଲେଜକୁ ଆସିବା କଥା ନୁହେଁ । ଏମିତି ପୋଷାକ ପିନ୍ଧିଲେ ତୁମ ସାଙ୍ଗମାନଙ୍କ ଆଖିକୁ ଭଲ ଦିଶିପାରେ, କିନ୍ତୁ ଆମେ ଅଧ୍ୟାପକମାନଙ୍କୁ ଏହା ରୁଚିକର ହେଉନି । ଝିଅମାନେ ଯଦି କଲେଜକୁ ଏଭଳି ପୋଷାକ ପିନ୍ଧି ଆସନ୍ତି, ତେବେ ଆମପକ୍ଷରେ ଛାତ୍ରମାନଙ୍କୁ ଆବୃତ୍ତ କରିବା କଷ୍ଟକର ହୋଇ ପଡ଼ିବ । ତୁମ୍ଭମାନଙ୍କୁ ଏଭଳି ପୋଷାକରେ ଦେଖିଲେ ଆମକୁ ବଡ଼ ଅଶ୍ୱସ୍ତି ଲାଗୁଛି ମା । ତୁମ ବାପାଙ୍କୁ ମୁଁ ଭଲ ଭାବରେ ଜାଣେ । ଏଭଳି ପୋଷାକରେ ତୋତେ କଲେଜକୁ ନ ପଠାଇବା ପାଇଁ ମୁଁ ତାଙ୍କୁ ଉପଦେଶ ଦେବି ।"

ଡ଼କ୍ଟର ବେନେର୍ଜି ଆପଣଙ୍କ ବାପାଙ୍କୁ ଏକଥା କହିଥିଲେ ?

'ହଁ, କହିଥିଲେ ।

ଆପଣଙ୍କ ବାପା କ'ଣ କହିଲେ ?

କହିଲେ" ସାର୍, ଆପଣମାନଙ୍କ ଯୁଗ ଚାଲି ଗଲାଣି । ବର୍ତ୍ତମାନ ଏହା ହେଲା ନୂତନ ଯୁଗ । ପାଶ୍ଚାତ୍ୟ ଦେଶର ପ୍ରଭାବ ପଡ଼ିବା ଫଳରେ ଆମ ସଂସ୍କୃତି ଓ ପରମ୍ପରା ଧୀରେ ଧୀରେ ପରିମାର୍ଜିତ ହେଉଛି । ତାକୁ ବାଧା ଦେଲେ ଚଳିବନି । ଏ ପୋଷାକ ତ ହେଲା ଆଧୁନିକ ଯୁଗର ପ୍ରତୀକ । ଏହାକୁ ଆପଣ-ମାନେ ବନ୍ଦକଲେ ମୋ ଝିଅ ପାଇଁ ଆମେରିକାରୁ ଯେଉଁ ସାତ ଆଠ ପ୍ରକାର ପୋଷାକ ଆଣିଛି ସେ ସବୁ କ'ଣ ହେବ ?

"ତେଣୁ ଆପଣ ଓ ଆପଣଙ୍କ ବାପା ଡକ୍ଟର ବେନର୍ଜିଙ୍କ ଉପଦେଶ ମାନିଲେନି । କ'ଣ ନା ସେ ପୁରୁଣା କାଳିଆ ଲୋକ । ଆଧୁନିକ ଯୁଗର ପ୍ରଭାବ ତାଙ୍କ ଉପରେ ପଡ଼ିନି ।

"ଦେଖନ୍ତୁ ଶ୍ରୀ ଭ୍ରାଦେବୀ, ଆପଣ ଏହି ପୋଷାକ ପିନ୍ଧି କଲେଜକୁ ଆସିଲେ ଆପଣଙ୍କ ସାଙ୍ଗ ପିଲାମାନେ ଖୁସି ହୁଅନ୍ତି, ନୁହେଁ ?

ହିଁ ଖୁସି ହୁଅନ୍ତି ?"

"ଆପଣ କେମିତି ଜାଣନ୍ତି, ସେମାନେ ଖୁସି ହୁଅନ୍ତି ବୋଲି ।

"ସେମାନେ ମୋତେ ଦେଖିଲେ ସିଟି ମାରନ୍ତି, ମଉଜଆ କମେଣ୍ଟ ମାରନ୍ତି, କେତେ ପ୍ରକାର ଗୀତ ଗାଆନ୍ତି, ମୋତେ ଭାରି ଭଲ ଲାଗେ ସେ ସବୁ ।"

ସେଦିନ କାହିଁକି ସେ ଟୋକାଟାର କାନ ଧରି ଥାନାକୁ ଆଣିଥିଲେ ? ତା'ର ଦୋଷ କ'ଣ ଥିଲା ? ସେ ତ ଯୁବକ । ସେ ସିଟି ମାରିଥିଲା, ସେ କମେଣ୍ଟ ମାରିଥିଲା, ଗୀତ ବି ଗାଇଥିଲା । ଆପଣ ତା ବିରୁଦ୍ଧରେ କାହିଁକି ଅଭିଯୋଗ କରିଥିଲେ ଥାନାରେ ? ଆପଣ କାହିଁକି ଏଇ କଲେଜ ପିଲାମାନଙ୍କ ବିରୁଦ୍ଧରେ ଅଭିଯୋଗ କରୁନାହାନ୍ତି ?

ଆରେ, ଏମାନେ ପରା ମୋ ସାଙ୍ଗ, ସେମାନଙ୍କ ସିଟି ମାରିବା କି କମେଣ୍ଟ ମାରିବା ମୋ ଷ୍ଟାଇଲ୍ ପ୍ରତି ତାରିଫ୍ ।

ସେମିତି ସେ ବି ଆପଣଙ୍କ ଅଧ୍ୟାପକ ଥିଲେ । ଦେଖନ୍ତୁ, ଏ ଭଳି ଅଧା ଲଙ୍ଗଳା ପୋଷାକ ପିନ୍ଧି ଏକାଠିଆ ଅନ୍ୟ କେହି ନ ଥିଲା ବେଳେ ଆପଣ ଯଦି ଜଣେ ଯୁବକ ଅଧ୍ୟାପକଙ୍କ ପାଖକୁ ଆସନ୍ତି, ସେ ଯୁବକଟି ଯଦି ସିନା ଖୁବ୍ ସଂଯମୀ ହୋଇଥାନ୍ତି, ତେବେ ନିଜକୁ ସମ୍ଭାଳି ନେଇ ପାରିବେ । ସମସ୍ତେ ତ ସମାନ ଭାବରେ ସଂଯମୀ ନୁହନ୍ତି । ଏମିତିକି ପୁରାକାଳର ମୁନିଋଷୀମାନେ ବେଳେ ବେଳେ ଏହିଭଳି ପୋଷାକ ପିନ୍ଧିଥିଲେ ସଂଯମ ହରାଇ ଥିବାର ବହୁ ପ୍ରମାଣ ଆମ ଶାସ୍ତ୍ର ପୁରାଣରେ ରହିଛି । ସେହି ମୁନି ଋଷୀମାନଙ୍କୁ ଆମେ ଏବେ ବି ଦେବତା ବୋଲି କହି ପୂଜା କରୁଛୁ । ଆପଣମାନେ ସମସ୍ତେ ବ୍ୟାସଦେବଙ୍କ ନାଁ ଶୁଣିଥିବେ ?

'ଶୁଣିଛନ୍ତି ନା ନାହିଁ ? ଅମରେଶ ପଚାରିଲା ।'

ପିଲାଏ ଉତ୍ତରଦେଲେ, ହଁ ଶୁଣିଛୁ ।

"ତାଙ୍କ ବାପା କିଏ ଜାଣନ୍ତି ?" ପଚାରିଲା ଅମରେଶ ।

ପିଲାଏ ଚୁପ୍ ରହିଲେ ।

"ତାଙ୍କ ବାପା ହେଉଛନ୍ତି ପରାଶର ମୁନି । ସେ ଜଣେ ବଡ଼ ସଂଯମୀ ଋଷି । ତାଙ୍କଭଳି ସଂଯମୀ ଋଷୀ ଖୁବ୍ କମ୍ ଅଛନ୍ତି । ପରାଶର ଦିନେ ଗଙ୍ଗାନଦୀ ପାର

ହେଉଥିଲେ ନୌକାରେ । ନୌକାରେ ସେ ଥିଲେ ଏକା ଥାଇ ନୌକା ଚଳାଉଥିଲା ଧୀବର କନ୍ୟା ସତ୍ୟବତୀ । ସିଏ ଥିଲେ ଅସାମାନ୍ୟା ରୂପବତୀ । ଏଣେ ଦେହରେ ପୋଷାକପତ୍ରର ଏକାନ୍ତ ଅଭାବ । ଝିଅଟିର ସାରାଦେହ ଯେତେ ଆବୃତ ହେବା କଥା ସେତେ ହୋଇ ପାରି ନ ଥିଲା ।

• ଏଭଳି ସଂଯମୀ ଋଷି ଝିଅଟିର ସ୍ୱଳ୍ପ ବସନ ପରିହିତ ଅର୍ଦ୍ଧମୁକ୍ତ ରୂପରେ ଆକୃଷ୍ଟ ହୋଇ ନିଜର ସଂଯମକୁ ରକ୍ଷା କରିପାରିଲେ ନା । ଝିଅଟି ଅସ୍ପୃଶ୍ୟ ହେଲେହେଁ ପରାଶର ଋଷୀ ନିଜକୁ ସମ୍ଭାଳି ନ ପାରି ନଦୀ ଭିତରେ ସେହି ନୌକା ଉପରେ ଝିଅଟିକୁ ଧର୍ଷଣ କଲେ । ସେହି ଧର୍ଷଣର ଫଳ ସ୍ୱରୂପ ଜନ୍ମ ହେଲେ ସତ୍ୟବତୀଙ୍କ ଗର୍ଭରୁ ବେଦ ଓ ଗୀତା ପ୍ରଭୃତି ବହୁ ପୁରାଣର ରଚୟିତା ବ୍ୟାସଦେବ, ଯାହାଙ୍କୁ ଆଜି ଆମେ ଦେବତା ରୂପରେ ପୂଜା କରୁଛୁ ।

ସେମିତି ତ କରୁଛୁ କୁକର୍ମ ଏଠି ହୋଇନି ଶୁଭ୍ରାଦେବୀ । ହେ ଅଧ୍ୟାପକ ମହାଶୟ କରୁ ଅସଦାଚରଣ କରିଥାନ୍ତି, ତେବେ ତାହା ଅତି ନ୍ୟୂନ ଧରଣର । ମୁଁ ତାଙ୍କ ତରଫରୁ ଆପଣଙ୍କ ଠାରୁ ମାଫି ମାଗି ନେଉଛି ।

"ନା, ନା, ଆପଣ ମାଫି ମାଗିଲେ ଚଳିବନି । ଅଧ୍ୟାପକ ମହାଶୟ ନିଜେ ମାଫି ମାଗନ୍ତୁ ।" ପିଲାମାନେ ପାଟି କରି ଉଠିଲେ ।

ଅମରେଶର ଇଙ୍ଗିତରେ ଅଧ୍ୟାପକ ମହାଶୟ ଆସି ମାଫି ମାଗିଲେ । ସଙ୍ଗେ ସଙ୍ଗେ ଧର୍ମଘଟ ପ୍ରତ୍ୟାହୃତ ହୋଇଗଲା । ପାଖ ରୁମରେ ପ୍ରିନ୍ସପାଲ ଥାଇ ଏହି ଆଲୋଚନା ସବୁ ଶୁଣୁଥିଲେ । ସେ ବାହାରି ଆସି ଅମରେଶ କାନ୍ଧରେ ଥାପୁଡ଼ାଇ କହିଲେ, "ଠିକ୍ ଭାବରେ ବାପ ସମସ୍ୟାଟିକୁ ସମାଧାନ କରି ଦେଇଛ । ଭଗବାନ ତୁମର ମଙ୍ଗଳ କରନ୍ତୁ ।

ସିଏ ଝିଅଟି ଆଡ଼କୁ ଅନାଇ କହିଲେ, "ତୋତେ ମୋର ଏକାନ୍ତ ଅନୁରୋଧ ମା, ତୁ ଏହି ପୋଷାକ ପିନ୍ଧି ଆଉ ଯେମିତି କଲେଜକୁ ନ ଆସୁ । ଏହି ପୋଷାକ ହିଁ ସବୁ ଗଣ୍ଡଗୋଳ ମୂଳରେ । ଇଏତ ସାମାନ୍ୟ ଗଣ୍ଡଗୋଳ । କିଏ କହି ପାରିବ, ଏହି ପୋଷାକ ପାଇଁ ଏହାଠାରୁ ଆହୁରି ବଡ଼ ଗଣ୍ଡଗୋଳ ନ ହୋଇ ପାରେ ବୋଲି ? ମୋର ଶେଷ ଅନୁରୋଧ, ତୁ ଏ ବୁଢ଼ାଟାର କଥାକୁ ପକାଇ ଦେବୁନି ମା ।

ଗ୍ରାମଦାସ କଲେଜର ଛାତ୍ର ଗଣ୍ଡଗୋଳ ବେଶ୍ ଭଲ ଭାବରେ ସମାଧାନ ହୋଇଗଲା । ଏକ ଦକ୍ଷ ପ୍ରଶାସକ ଭାବରେ ଅମରେଶର ସୁଖ୍ୟାତି ଆଇ. ଏ. ଏସ୍. ଅଫିସରମାନଙ୍କ ଭିତରେ ଆଶାତୀତ ଭାବରେ ବଢ଼ିଗଲା । ସରକାରଙ୍କ ଠାରୁ ଏକ ସୁପାରିସ ପତ୍ର ମଧ୍ୟ ଚାଲି ଆସିଲା ଅମରେଶ ଠାକୁ ଏହି କାର୍ଯ୍ୟ ନିମିତ୍ତ ।

× × × ×

ଘରୋଇମନ୍ତ୍ରୀଙ୍କ ଆଲୋଚନା କକ୍ଷ । ଗତ କେତେଦିନ ଧରି ପାଟନା ସହରରେ ଅସାମାଜିକ ଲୋକଙ୍କ ଦୌରାତ୍ମ୍ୟ ଆଶାତୀତ ଭାବରେ ବଢ଼ି ଯାଇଥିବାରୁ ଚାରିଆଡ଼େ ସରକାରଙ୍କ ବିରୁଦ୍ଧରେ କୁତ୍ସା ରଟନା ଚାଲିଥାଏ । ଏକ ପଙ୍ଗୁ ଓ ଅସମର୍ଥ ସରକାର ଦ୍ୱାରା ସହରର ଧନ ଜୀବନ ନିରାପଦ ନୁହେଁ ବୋଲି ଲୋକେ ଖୋଲାଖୋଲି କହି ବୁଲୁଥାନ୍ତି । ପାଟନା ସହରରେ ନାରୀ ଧର୍ଷଣ, କଲେଜ ଝିଅଙ୍କୁ ଅଶ୍ଳୀଳ ଇଙ୍ଗିତ, ଅନ୍ଧକାର ରେ ପଥିକମାନଙ୍କ ଠାରୁ ଲୁଣ୍ଠନ, ଛୁରାମାଡ଼, ହୋଟେଲମାନଙ୍କରେ ଜୁଆଖେଳ, ବେଶ୍ୟାବୃତ୍ତି ଆଦି ଅସାମାଜିକ କାର୍ଯ୍ୟକଳାପ ବିଶେଷ ଭାବରେ ବୃଦ୍ଧି ପାଇଥାଏ । ଏ ସବୁ ଅସାମାଜିକ କାର୍ଯ୍ୟକୁ ଯିଏ ଦେଖିବ, ସିଏ ଭାବିବ ଏଠି ଯେମିତି କୌଣସି ସରକାର ନାହିଁ । ପୁରାପୁରି ଅରାଜକତା । ଏ ଗୁଡ଼ିକୁ କେମିତି ଆୟତ୍ତ କରି ସହରର ସୁସ୍ଥ ବାତାବରଣ ଫେରାଇ ଆଣି ହେବ, ତାରି ପାଇଁ ଏହି ଆଲୋଚନା ଡକା ଯାଇଥାଏ ।

ଘରୋଇମନ୍ତ୍ରୀ ବଡ଼ ବିରକ୍ତ ହୋଇ କହିଲେ, "ଆପଣମାନେ ଯଦି ସହରର ଏହି ଅସାମାଜିକ କାର୍ଯ୍ୟକଳାପକୁ ବନ୍ଦ କରି ନ ପାରୁଛନ୍ତି, ରାଜ୍ୟରେ ଖାଲି ମୋ ବଦନାମ ହେଉନି, ଆପଣମାନଙ୍କ ସମ୍ମାନର ମଧ୍ୟ ଯଥେଷ୍ଟ ହାନି ହେଉଛି । ପୋଲିସ ବିଭାଗ ବର୍ତ୍ତମାନ ସବୁଠାରୁ ଅଧିକ ସମାଲୋଚନାର କେନ୍ଦ୍ର ହୋଇଛି । ମୋର ଏକାନ୍ତ ଅନୁରୋଧ, ଏହାକୁ ରୋକିବା ପାଇଁ ଆପଣମାନେ ଯେଉଁ କଡ଼ା ବ୍ୟବସ୍ଥା ପ୍ରବର୍ତ୍ତନ କରିବେ, ମୁଁ ତାହାକୁ ଅନୁମତି ଦେବାକୁ ପ୍ରସ୍ତୁତ ଅଛି । ମୁଁ ଚାହେଁ ଏହି କାର୍ଯ୍ୟକଳାପ ଯେମିତି ତୁରନ୍ତ ବନ୍ଦ ହେଉ ଓ ଏହି କାର୍ଯ୍ୟକଳାପରେ ସଂପୃକ୍ତ ଲୋକମାନେ ଯେପରି କଠୋର ଶାସ୍ତି ପାଆନ୍ତୁ ।

ବହୁ ଆଲୋଚନା ପରେ ଏକ ଦକ୍ଷ ପ୍ରଶାସକ ଭାବରେ ଖ୍ୟାତି ଲାଭିଥିବା ପାଟନାର ଆଡିସ୍‌ନାଲ ଡ଼ିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ ଅମରେଶ ଓ ନୂଆ ହୋଇ ଜଏନ କରିଥିବା ପୋଲିସ ସୁପରିନ୍‌ଟେନଡେଣ୍ଟ ଗୋବିନ୍ଦ ବୋହାଡ଼ିଗଙ୍କୁ ଏହାକୁ ଆୟତ୍ତ

କରିବା ପାଇଁ ପୂରା ଦାୟିତ୍ୱ ଦିଆଗଲା । ସେମାନେ ଯେଉଁ ପଦ୍ଧତି ଉଚିତ ବୋଲି ମନେ କରିବେ, ତାହା କରି ପାରିବେ । ସରକାରଙ୍କର ସେମାନଙ୍କ ଉପରେ କିଛି କଟକଣା ରହିବ ନାହିଁ ।

•

ଏହା ପରେ ଦିନ ପୋଲିସ ସୁପରିନଟେନଡେଣ୍ଟ ରୋହାତ୍ରଗି ସାହେବଙ୍କ ଆଲୋଚନା କକ୍ଷରେ ଏହା ଉପରେ ଗୁପ୍ତ ଆଲୋଚନା ଚାଲିଲା । ସହରର ପୋଲିସ ଇନସପେକ୍ଟର, ସି. ଆଇ. ଡ଼ି. ଅଫିସରମାନେ ଆଲୋଚନାରେ ଯୋଗ ଦେଇଥାନ୍ତି । ମିଷ୍ଟର ରୋହାତ୍ରଗିଙ୍କ ପାଖକୁ ଲାଗି ବସିଥାଏ ଅମରେଶ । ସାଦା ପୋଷାକପିନ୍ଧା ପୋଲିସ ଅଫିସରମାନଙ୍କୁ ସହରର ବିଭିନ୍ନ ସ୍ଥାନରେ ମୁତୟନ କରି ଏହି ଅସାମାଜିକ ଲୋକଙ୍କୁ ଧରିବା ପାଇଁ ଆଲୋଚନା ଚାଲିଲା । ଏହାଦ୍ୱାରା ଦୋଷୀମାନେ ଠିକ୍ ଭାବରେ ଧରା ପଡ଼ିବେ ନାହିଁ ବୋଲି ଅନେକେ ମନ୍ତବ୍ୟକଲେ । ଶେଷରେ ଠିକ୍ ହେଲା ସୁନ୍ଦରୀ ସୁନ୍ଦରୀ ଝିଅମାନଙ୍କୁ ମୁତୟନ କରି ସାଦା ପୋଲିସ ଅଫିସରମାନଙ୍କ ଦ୍ୱାରା ଏହି ଅସାମାଜିକ ଲୋକଙ୍କୁ ଧରିବାକୁ ହେବ । ସୁନ୍ଦରୀ ଝିଅ ନ ହେଲେ ସେମାନଙ୍କୁ ଧରିବା କାଠିକର ପାଠ ହୋଇପଡ଼ିବ ।

ଦିନରେ ଠିକ୍ କେଉଁ ସମୟରେ ଓ କେଉଁ କେଉଁ ସ୍ଥାନରେ ଏହି ଅଶ୍ଳୀଳ ଇଙ୍ଗିତ ଘଟଣା ବେଶି ଘଟେ, ନାନା ଆଲୋଚନା ଓ ସାକ୍ଷ୍ୟ ପ୍ରମାଣ ପରେ ତାହା ସ୍ଥିର ହେଲା । ସେହି ସବୁ ସ୍ଥାନରେ ଠିକ୍ ସେହି ସେହି ସମୟରେ ସୁନ୍ଦରୀ ସୁନ୍ଦରୀ ଝିଅମାନଙ୍କୁ ବୁଲିବା ପାଇଁ ଛାଡ଼ିଦେଇ ଅଦୂରରେ ସାଦା ପୋଷାକ ପିନ୍ଧା ପୋଲିସ ଅଫିସରମାନେ ଜଗି ରହିବା ଠିକ୍ ହେଲା । ଝିଅମାନଙ୍କ ପାଟି ଶୁଣିଲାକ୍ଷଣି ସେମାନେ ଦୌଡ଼ିଯାଇ ସେମାନଙ୍କୁ ଧରି ପକାଇବେ । ତଥାପି ବି ଏହି ବ୍ୟବସ୍ଥା କୃତକାର୍ଯ୍ୟ ହେବ କି କଅଣ କେତେକେ ସନ୍ଦେହ ପ୍ରକାଶ କରିଥିଲେ । କେଉଁ ଥାନାରୁ ଏ ଅଭିଯାନ ଆରମ୍ଭ ହେବ ଓ ଏକ ସଙ୍ଗରେ ସବୁ ସ୍ଥାନରେ ଆରମ୍ଭ ହେବ କି କଅଣ ସ୍ଥିରୀକୃତ ହୋଇ ସେ ଦିନର ମିଟିଂ ଶେଷ ହେଲା ।

ଯେଉଁ ଥାନାରୁ ଏହା ଆରମ୍ଭ ହେବା କଥା, ସେହି ଥାନାରେ ଯାଇ ସେ ଦିନ ଠିକ୍ ସମୟରେ ପହଞ୍ଚିଲେ ଅମରେଶ । ସେ ପହଞ୍ଚିଲା ବେଳକୁ ପୋଲିସ ସାହେବ ରୋହାତ୍ରଗି ଚାଲି ଆସିଲେଣି । ଥାନାର ଗୋଟିଏ କକ୍ଷରେ ଝିଅ ଗୁଡ଼ିଏ ଭଲ ଭଲ ପୋଷାକ ପିନ୍ଧି ବସିବାର ଓ ସେମାନଙ୍କୁ ଜଣେ ଇନସ୍‌ପେକ୍ଟର ସେମାନଙ୍କ ଯୋଜନା କଥା ବୁଝାଉଥିବାର ଦେଖି ଆଶ୍ଚର୍ଯ୍ୟ ହେଲା ଅମରେଶ ।

ତା ମନରେ ଆଶଙ୍କା ହେଲ ଏହି ଭଦ୍ର ଲୋକଙ୍କ ଝିଅଗୁଡ଼ାଙ୍କୁ ସେହି ଅସାମାଜିକ ଲୋକଙ୍କ ଆଗକୁ ଠେଲିଦେବା କ'ଣ ଠିକ୍ ହେବ ? ଝିଅ ଗୁଡ଼ାକ ବେଶ ସୁଶ୍ରୀ, ଦାମିକା ଦାମିକା ପୋଷାକ ଓ ମୂଲ୍ୟବାନ ଗହଣା ପତ୍ର ସବୁ ଲଗାଇଥାନ୍ତି । ଏତେ ସୁଶ୍ରୀ ଓ ସୁଦର୍ଶିନୀ ଝିଅଗୁଡ଼ିକୁ ସେହି ଗୁଣ୍ଡାମାନଙ୍କ ସମ୍ମୁଖକୁ ପଠାଇବାକୁ ମନ ହେଲନି ଅମରେଶର । କାଳେ କିଛି ଯଦି ହୁଏ, ଝିଅ ଗୁଡ଼ିକ ସବୁଦିନ ପାଇଁ ବଦନାମ ହୋଇଯିବେ ଯେ !

ଏତେ ଗୁଡ଼ିଏ ସୁନ୍ଦର ଝିଅଙ୍କୁ କେଉଁଠୁ ଆଣିଲି ବୋଲି ପଚାରିଲା ଅମରେଶ ସାଙ୍ଗ ହେହାତଗିକୁ ।

ଅମରେଶର ଏହି ପ୍ରଶ୍ନରେ ହସିଲା ହେହାତଗି, "ଆରେ, ଏଗୁଡ଼ାଙ୍କୁ ତୁ ଝିଅ ବୋଲି ଭାବୁଛୁ ନା କଅଣ ?

"ହଁ, ଏମାନେ ତ ଭଦ୍ରଲୋକ ଘରର ଝିଅ ଭଳି ଦିଶୁଛନ୍ତି । ଦାମିକା ପୋଷାକ ପତ୍ର, ମୂଲ୍ୟବାନ ଗହଣାଗାଣ୍ଠି ଲଗାଇଛନ୍ତି । ଏତେ ସୁନ୍ଦର ଭଦ୍ର ପରିବାରର ଝିଅଗୁଡ଼ାଙ୍କୁ ସେହି ଗୁଣ୍ଡାମାନଙ୍କ ସମ୍ମୁଖକୁ ପେଲିଦେବା ତୋର ମୋଟେ ଉଚିତ୍ ନୁହେଁ ହେହାତଗି । ମୋତେ ଭାରି ଖରାପ ଲାଗୁଛି ତୋ ଅବିବେକୀପଣିଆ ଦେଖି ।

ଏଥର ଆହୁରି ଜୋରରେ ହସିଲା ହେହାତଗି । "ତୁ ଏ ଝିଅଗୁଡ଼ାଙ୍କୁ ଯଦି ଏତେ ସୁନ୍ଦର ବୋଲି କହୁଛୁ, ଏଥିଭିତରୁ କୋଉଟାକୁ ବିଭା ହୋଇ ପକାନ୍ତୁ କାହିଁକି ରେ ? ଯାଙ୍କ ଭିତରୁ ବାଛ, କିଏ ତୋର ଅଧିକ ପସନ୍ଦ, କାହାକୁ ତୁ ବିଭା ହେବୁ ? ଆଜି ତୋ ବାହାଘର ଏଇଠି କରିଦେବା ।"

"ହେଉ, ତୋର ସବୁବେଳେ ସେଇକଥା । ମୁଁ ଏହି ଝିଅଗୁଡ଼ାଙ୍କ ନିରାପଦ କଥା ଭାବୁଛି । ତୋର ଖାଲି ଥଟ୍ଟା ।"

"ଆରେ, ତୁ କ'ଣ ଭାବୁଛୁ, ଏମାନେ ପ୍ରକୃତରେ ଭଦ୍ର ଲୋକଙ୍କ ଘରର ଝିଅ ?"

ଆଉ କ'ଣ ଏମାନେ ବଜାର ବେଶ୍ୟା ?"

"ନା, ତା ବି ନୁହେଁ ।"

'ତେବେ '

ଆରେ, ସେମାନେ ଝିଅ କାହିଁକି ହେବେ ? ସେମାନେ ସବୁ ଟୋକାଗୁଡ଼ାଏ । ଆମର ନୂଆ ହୋଇ ଯେଉଁ କନେଷ୍ଟବଲମାନେ ଜଏନ କରିଛନ୍ତି ସେମାନଙ୍କ ଭିତରୁ ଅଳ୍ପ ବୟସର ଓ ଝିଅଭଳିଆ ଚେହେରା ଦେଖି ବାଛିଯାଇ ସେମାନଙ୍କୁ ଝିଅ ପୋଷାକ ପିନ୍ଧାଇ ଏଠାକୁ ଅଣା ଯାଇଛି । ସେମାନଙ୍କୁ ଯେ ପୋଷାକ ପିନ୍ଧାଇ ସଜାଇଛି, ତା'ର ଅଛି ବାହାଦୂରୀ । ତାହା ନ କରିଥିଲେ କେଉଁ ଭଦ୍ରଲୋକ ଘରର ଝିଅ ଏହି କାମ ପାଇଁ ବାହାରି ଆସିଥାନ୍ତା କହିଲୁ ?

"ସାର୍, ମୁଁ ପ୍ରସ୍ତୁତ ଅଛି ଆପଣମାନଙ୍କର ଏହି କାର୍ଯ୍ୟରେ ସହଯୋଗ କରିବା ପାଇଁ ।" କହୁଁ କହୁଁ ଥାନା ଭିତରକୁ ପଶି ଆସିଲା ଶୁଭ୍ରା । ପୂର୍ବଭଳି ତା'ର ସେହି ଅର୍ଦ୍ଧଉଲଗ୍ନ ଅଶ୍ଳୀଳ ଆମେରିକାନ ପୋଷାକ ନାହିଁ । ସାରା ଦେହଟି ଠିକ୍ ଭାବରେ ଆଚ୍ଛାଦିତ ହୋଇଥାଏ ଭଦ୍ରଲୋକ ଘରର ଝିଅ ଭଳି । ପୋଷାକ-ପତ୍ରରୁ ବେଶ ଆକର୍ଷଣୀୟ ଦିଶୁଥାଏ ଶୁଭ୍ରା, ଅସାମାଜିକ ଟୋକାମାନଙ୍କୁ ଆକୃଷ୍ଟ କଲାଭଳି ।

ଶୁଭ୍ରାକୁ ଦେଖି ଚମକି ପଡ଼ିଲା ଅମରେଶ, "ଆପଣ କ'ଣ ଏଠି ଶୁଭ୍ରା-ଦେବୀ ? ଆପଣ କ'ଣ ଯିବେ ସେହି ଅସାମାଜିକ ଟୋକାଗୁଡ଼ାଙ୍କ ସମ୍ମୁଖକୁ ଯିବେ ? ନିଜ ପ୍ରତି ଯେଉଁ ବିପଦ—?

ହସିଲା ଶୁଭ୍ରା ଏକ ଆକର୍ଷଣୀୟ ଭଙ୍ଗୀରେ । "ଆପଣଙ୍କର କ'ଣ ମନେ ନାହିଁ ସାର୍, ସେ ଦିନ ରାମଦାସ କଲେଜ ପାଖ ଥାନାକୁ ଗୋଟିଏ ଟୋକାର କାନଧରି କେମିତି ଟାଣି ଟାଣି ଆଣିଥିଲି ? ସହରର ଯେଉଁ ସ୍ଥାନରେ ସବୁଠାରୁ ଅଧିକ ଗୋଳମାଳ, ମୋତେ ସେଠି ଛାଡ଼ିଦିଅନ୍ତୁ । ଦେଖିବେ ମୁଁ କେମିତି ସେହି ଲଫଙ୍ଗାଗୁଡ଼ାଙ୍କୁ ଧରି ନ ଆଣିବି ?

ଆମେ ଆପଣଙ୍କ ସାହସ ଦେଖି ଖୁସି ହେଉଛୁଁ ଶୁଭ୍ରାଦେବୀ । ଆମର ବିଶ୍ୱାସ ଆପଣ ସେ କାମକୁ ବେଶ ଦକ୍ଷତାର ସହିତ କରି ପାରିବେ । ତେବେ ଆପଣ ଜଣେ ଭଦ୍ର ଘରର ଝିଅ । ସେମାନଙ୍କୁ ଧରୁଁ ଧରୁଁ ଯଦି ଆପଣଙ୍କ ପ୍ରତି କିଛି ଖରାପ ବ୍ୟବହାର ସେମାନେ କରନ୍ତି ତେବେ ଆପଣଙ୍କର ସମ୍ମାନରେ ବାଧା ଆସିବ ନିଶ୍ଚୟ । ଆମ ହାତରେ ଅନ୍ୟ ଝିଅମାନେ ଅଛନ୍ତି, ଯେଉଁମାନଙ୍କ ପ୍ରତି ଅସଦାଚରଣ କଲେ କିଛି କ୍ଷତି ନାହିଁ ? ଜାଣି ଶୁଣି ଆପଣଙ୍କୁ ସେଠାକୁ ପେଲି

ଦେବାକୁ ଆମ ବିବେକ କହୁନି ଶୁଭ୍ରାଦେବୀ । ଏହି ବିପଦ ଜନକ କାର୍ଯ୍ୟ ପାଇଁ ଆପଣଙ୍କର ସ୍ୱେଚ୍ଛାସେବକତା ଲାଗି ଅଶେଷ ଧନ୍ୟବାଦ ।

ଏତକ କହି ଶୁଭ୍ରାକୁ ବିଦା କରିଦେଇ ରେହାନଚିକୁ ଧରି ଅମରେଶ ଚାଲିଗଲା ସେହି ଝିଅମାନେ ଅପେକ୍ଷା କରିଥିବା କୋଠରୀକୁ । ସେମାନଙ୍କୁ ଆହୁରି ଭଲଭାବରେ ଲକ୍ଷ୍ୟ କଲା ଅମରେଶ । ମନେମନେ ଭାବିଲା, ଆଃ ଏମାନେ ତ ପ୍ରକୃତ ଝିଅ ଭଳି ଦିଶୁଛନ୍ତି । ଏମାନଙ୍କୁ ଦେଖିଲେ କେହି ତ ଭାବି ପାରିବନି, ଏମାନେ ଝିଅ ନୁହନ୍ତି ବୋଲି । ସତରେ ଏମାନଙ୍କୁ ତ ବିଭା କରିଦେଲେ ଲୋକେ ଝିଅ ବୋଲି ଭାବି ବିଭା ହୋଇଯିବେ । ବଡ଼ ଆଶ୍ଚର୍ଯ୍ୟ, ପୁଅମାନେ କ'ଣ ଏତେ ସୁନ୍ଦର ଝିଅ ଭଳି ସାଜି ହୋଇ ପାରନ୍ତି ?

ମନେ ମନେ ରେହାନଚିର କାମକୁ ତାରିଫ୍ କରି କହିଲା ଅମରେଶ "ତୋର ବୁଦ୍ଧି ବେଶ ପ୍ରଖର ଦେଖୁଛି ରେହାନଚି । ଅସାମାଜିକ ଟୋକା-ମାନେ ଅଶ୍ଳୀଳ ଇଙ୍ଗିତ ଦେଲାକ୍ଷଣି ଏମାନେ ସେମାନଙ୍କ ପାଖକୁ ଚାଲିଯିବେ । ସେମାନେ ଏମାନଙ୍କ ପ୍ରତି କିଛି ଖରାପ ବ୍ୟବହାର ଆରମ୍ଭ କଲାକ୍ଷଣି ଏମାନେ ସେମାନଙ୍କୁ ଧରି ପକାଇବେ ଯେମିତିକି ସେମାନେ ଅଉ ଖସି ଯାଇ ପାରିବେନି । ଅଦୂରରେ ଆମ ପୋଲିସ ଅଫିସରମାନେ ଲୁଚି କରି ରହିଥିବେ । ଇସାରା ପାଇଲା କ୍ଷଣି ଟୋକାଗୁଡ଼ାକୁ ଅରେଷ୍ଟ କରି ହାତକଡ଼ି ପିନ୍ଧାଇ ବିର୍ଦ୍ଦିସ୍ତାରେ ଚଲାଇ ଚଲାଇ ଥାନାକୁ ଆଣିବେ । ଏହା ଫଳରେ ଲୋକଙ୍କର ପୋଲିସ ଉପରେ ବିଶ୍ୱାସ ବଢ଼ିବ, ଅସାମାଜିକ ଲୋକଙ୍କ ଭିତରେ ଆତଙ୍କ ଖେଳିଯିବ ।

ଅଶ୍ଳୀଳ ଇଙ୍ଗିତ ଯୋଗୁଁ ସେ ଦିନ ସହରର ବିଭିନ୍ନ ସ୍ଥାନରେ ଧରା ହେଲେ ପଇଁତିରିଶ ଜଣ ଟୋକା । ସେମାନେ ସମସ୍ତେ ଶିକ୍ଷିତ, ଧନୀ ଓ ବଡ଼ ବଡ଼ ଅଫିସରଙ୍କ ପିଲା । ଥାନାକୁ ଆସିବାକ୍ଷଣି ସେମାନଙ୍କୁ ହାଜତରେ ପୁରାଇ ଦେବାକୁ ଆଦେଶ ଦେଇ ଅମରେଶ ଚାଲିଗଲା ନିଜ ବସାକୁ ।

ଅମରେଶ ଯାଇ ବସାରେ ପହଞ୍ଚିଛି କି ନାହିଁ, ଆସିଲା ଘନ ଘନ ଟେଲିଫୋନ - ତା ବସାକୁ । ସବୁ ବଡ଼ ବଡ଼ ଅଫିସର, ବ୍ୟବସାୟୀଙ୍କ କାକୁତି ମିନତି । କିଏ କେତେପ୍ରକାର ଚାପ ପକାଇ ପିଲାଗୁଡ଼ାକୁ ମୁକୁଳାଇଦେବାକୁ ଅନୁରୋଧ କଲେ ।

ଏହା ଦେଖି ଅମରେଶ ସେ ଦିନ ଘରେ ରହିଗଲା । ଏ ବନ୍ଧୁ ଘର, ସେ ବନ୍ଧୁ ଘର ହୋଇ ଘୁରି ବୁଲିଲା ରାତିସାରା ପାର୍ଟନା ସହରରେ । ରାତି ଦୁଇଟା ବେଳେ ଘରକୁ ଫେରି ଫୋନକୁ ବାହାର କରି ଦେଇ ଶୁଣି ଗୋଟାଏ ଘରେ ଶୋଇ ପଡ଼ିଲା । ବଡ଼ ବଡ଼ ଅଫିସର ଓ ଧନୀ ଘରର ପିଲାମାନେ ଏହି ଭଳି କାର୍ଯ୍ୟକରି ଆରେଷ୍ଟ ହୋଇ ଥାନା ହାଜତରେ ଅଛନ୍ତି ବୋଲି ସକାଳ ଖବର-କାଗଜରେ ବାହାରି ପଡ଼ିଲା । ପରଦିନ ସେମାନେ ସମସ୍ତେ ଜାମିନରେ ଖଲାସ ହୋଇଗଲେ ସତ, କିନ୍ତୁ ସେହି ଦିନଠାରୁ ସହରରେ ଝିଅମାନଙ୍କୁ ଅଶ୍ଳୀଳ ଇଙ୍ଗିତ ଦେବା ଘଟଣା ଆଉ କେଉଁଠି ଶୁଣା ଗଲା ନାହିଁ ।

× × ×

ଅମରେଶ, ଆଜି ରାତିରେ ହୋଟେଲ ଅପସରା ଘେରାଉ ହେବ । ମୁଁ ଖବର ପାଇଛି ସେହି ହୋଟେଲକୁ ପ୍ରତିଦିନ ବହୁତ କଲଗାର୍ଲ ଆସୁଛନ୍ତି । ଗୋଟାଏ ରାତି ଘେରାଉ କରିଦେଲେ ପ୍ରକୃତ କଥା ଜଣାପଡ଼ିଯିବ । ଆଜି ଯୋଜନା ହୋଇଛି, ରାତି ଗୋଟାଏ ବେଳେ ଘେରାଉ ହେବ, ତୁ ଆମ ସାଙ୍ଗରେ ଯିବୁ ତ ? ରୋହିତ୍‌ଗି ପଚାରିଲା ଅମରେଶକୁ ।

“ଭାଇ, ସେ ସବୁ ଅଶ୍ଳୀଳ ଦୃଶ୍ୟ ଦେଖିବାକୁ ମୋତେ ଆଉ ଡାକନା । ତେବେ ଯଦି ଜଣେ ମାଜିଷ୍ଟ୍ରେଟ ସେଠି ରହିବା ଦରକାର, ତେବେ ଆଉ କାହାକୁ ରାତି ଅଧରେ ହଇରାଣ ନ କରି ମୁଁ ନିଜେ ପଛେ ଚାଲିଯିବି । ରାତିରେ ମାଜିଷ୍ଟ୍ରେଟ-ମାନେ ଦିନସାରା ଖଟି ଖଟି ଘରେ ଶୋଇଥିବେ, ସେଠୁଁ କାହାକୁ ଉଠାଇ ହଇରାଣ କରି ଲାଭ କଅଣ ? ହେଉ, ମୁଁ ପଛେ ସେ କାମ ଚଳାଇ ଦେବି ।’

ଠିକ୍ ରାତି ଗୋଟାକ ବେଳେ ହୋଟେଲ ଅପ୍‌ସରା ଘେରାଉ ହେଲା । ହୋଟେଲ ଚାରି ପାଖରେ ପୋଲିସ ବାହିନୀ ଘେରିଯାଇ ସବୁ ରାସ୍ତା ଜଗିଗଲେ । ଦୁଇତିନି ଜଣ ଇନସପେକ୍ଟରଙ୍କୁ ଧରି ହୋଟେଲ ଭିତରକୁ ପଶିଲା ନିଜେ ରୋହିତ୍‌ଗି । ଅମରେଶ ବାହାରେ ଠିଆ ହୋଇ ରହିଲା । ପ୍ରତ୍ୟେକ ରୁମକୁ ଧଡ଼୍-ଧାଡ଼୍ କରି ଖୋଲିଲେ ପୋଲିସ ଅଫିସରମାନେ । ଯେଉଁ ରୁମରୁ ସନ୍ଦେହଜନକ ଲୋକ ଥିବାର ଦେଖିଲେ ସେମାନଙ୍କୁ ଆରେଷ୍ଟ କରି ତଳକୁ ନେଇ ଆସିଲେ । ଧରା ପଡ଼ିଥିବା ଲୋକଗୁଡ଼ାଙ୍କୁ ସ୍ତ୍ରୀ ପୁରୁଷ କରି ହଳ ହଳ ଭାବରେ ହାତକଡ଼ା ଦେଇ ତଳକୁ ଆଣୁଥାନ୍ତି ପୋଲିସ ଅଫିସରମାନେ ।

ହଠାତ୍ ଅମରେଶରଁ ଜଣେ ପରିଚିତ ବନ୍ଧୁ ହାତକଡ଼ା ପିନ୍ଧି ଆସୁଥିବାର ଦେଖି ଅମରେଶ ଅନ୍ଧାରରେ ଲୁଚିଗଲା । ବନ୍ଧୁ ଜଣକ ତାଙ୍କୁ ଦେଖିଲେ କାଳେ ଲଜ୍ଜିତ ହୋଇ ପଡ଼ିବେ, ଏହି ଭୟରେ ଲୁଚି ଯିବାକୁ ବାଧ୍ୟ ହେଲା ସେ । ସେମାନେ ସବୁ ପୋଲିସ ଭେନ୍‌ରେ ବସିଲା ପରେ ରେହାଲ୍‌ଗି ଖୋଜିଲା ଅମରେଶକୁ । ଅମରେଶ ଅନ୍ଧାରରୁ ବାହାରି ଆସି ରେହା-ଲ୍‌ଗିକୁ କହିଲା, "କ'ଣ ଶେଷ ହେଲା ରେହାଲ୍‌ଗି ? ଏଥର ଆମେ ଯିବା ?"

"ନାହିଁରେ ଭାଇ, ଶେଷ ହେଲା କେଉଁଠି ? ଦୁଇଟି ରୁମ ସନ୍ଦେହ ଜନକ ଭାବରେ ରହିଗଲା ଯେ !"

"କେମିତି ?"

"ପ୍ରତ୍ୟେକ ରୁମରେ ଦୁଇଜଣ ଭଦ୍ରଲୋକ ସେମାନଙ୍କ ସ୍ତ୍ରୀଙ୍କୁ ନେଇ ରହି-ଥିବାର କହିଲେ ।"

"ସେମାନେ ପ୍ରକୃତରେ ତାଙ୍କ ସ୍ତ୍ରୀ ବୋଲି କେମିତି ଜାଣିଲୁ ?"

"ଆରେ ଭାଇ, ସେଇତ ମୋ ସନ୍ଦେହ । ସେମାନେ ହୁଏତ ମିଛ କହି-ଦେଇ ଆମକୁ ଠକିବାକୁ ଚେଷ୍ଟା କରିଥାଇପାରନ୍ତି ।"

"ହୋଇପାରେ, ତେବେ ସେମାନଙ୍କ ରୁମ ହଜଣିଆ ନା ଜଣିକିଆ ?"

"ନା, ଭାଇ ହଜଣିଆ ।"

"ତା ହେଲେ, ସେମାନେ ସ୍ୱାମୀ-ସ୍ତ୍ରୀ ହୋଇଥାଇପାରନ୍ତି ।

'ହୋଇପାରେ । କାରଣ ଆମେ ଯେତେକଙ୍କୁ ଧରିଛୁଁ, ସେମାନେ ସମସ୍ତେ ଗୋଟିକିଆ ରୁମରେ କଲଗାର୍ଲମାନଙ୍କୁ ଧରି ରହିଥିଲେ । ଏମାନେ ହୁଏତ ସ୍ୱାମୀ-ସ୍ତ୍ରୀ ହୋଇଥାଇ ପାରନ୍ତି ।"

"ସେମାନେ ଯଦି ତୋଠୁଁ ଅଧିକ ଚାଲାଖ ହୋଇ ମୂଳରୁ ଦୁଇଜଣିଆ ରୁମ ନେଇ ଏଇ କାଣ୍ଡ ଚଳାଇଥିବେ ?"

ହୋଇପାରେ, ତେବେ ବର୍ତ୍ତମାନ ଉପାୟ ?

ଚିନ୍ତା କରନା, ମ୍ୟାନେଜରଙ୍କ ଖାତା ଦେଖିଦେଲେ କ'ଣ ଜଣା ପଡ଼ିବନି ? ସେମାନେ ଯଦି ସ୍ୱାମୀ-ସ୍ତ୍ରୀ ହୋଇଥିବେ, ମୂଳରୁ ଖାତାରେ ଦୁଇ ଜଣଙ୍କ ନାମ ଲେଖାଥିବ ଓ ସେମାନେ ଦସ୍ତଖତ ମଧ୍ୟ କରିଥିବେ ।

"ଠିକ୍ କଥା କହୁଛ ଅମରେଶ । ଚାଲ, ମ୍ୟାନେଜରଙ୍କ ଖାତା ଦେଖିଦେବା ।"

ଅମରେଶ ଓ ରେହାନ୍ତି ଯାଇ ହୋଟେଲ ଖାତା ଦେଖିଲେ । ପ୍ରକୃତରେ ରୁମ ନମ୍ବର ଅଠର ଓ ଅଣତିରିଶରେ ସ୍ୱାମୀ ସ୍ତ୍ରୀଦୁହେଁ ଦସ୍ତଖତ କରିଛନ୍ତି । ସେମାନେ କଲଗାର୍ଲ ହୋଇଥିଲେ ଦୁଜଣଙ୍କ ଦସ୍ତଖତ ଖାତାରେ କଦାପି ନ ଥାନ୍ତା ।

"ଆରେ, ମେନେଜରଙ୍କୁ ଆରେଷ୍ଟ କରିଛ ନା ନାହିଁ ?

"ସେ କେତେବେଳୁଁ ଆରେଷ୍ଟ ହୋଇ ପୋଲିସ ଭେନ୍‌ର ବସି ସାରିଲେଣି ।"

ଆରେଷ୍ଟ ହୋଇଥିବା ଲୋକଗୁଡ଼ିକୁ ପୋଲିସ ଭେନରେ ଥାନାକୁ ପଠାଇ ଦେଇ ରେହାନ୍ତି ଓ ଅମରେଶ ସେମାନଙ୍କ ଗାଡ଼ି ପାଖକୁ ଚାଲି ଆସିଲେ । ଆସୁଁ ଆସୁଁ ରେହାନ୍ତି ପଚାରିଲା, "ତୁ ସେତେବେଳେ ଅନ୍ଧାରରେ ଠିଆ ହୋଇ କଣ କରୁଥିଲୁ ଅମରେଶ ?

ଆରେ ଭାଇ, ଆଉ କରନ୍ତି କଅଣ ? ମୋର ଜଣେ ପରିଚିତ ବନ୍ଧୁ ଆରେଷ୍ଟ ହୋଇ ଯାଉଥିଲେ ପୋଲିସ ଭେନକୁ । ମୋତେ ଦେଖିଲେ କାଳେ ଅପ୍ରସ୍ତୁତ ହୋଇ ପଡ଼ିବେ, ସେଥି ଭୟରେ ଅନ୍ଧାରରେ ମୁଁ ଲୁଚି ଯାଉଥିଲି ।

'ଭଲ, ଅପରାଧ କଲାବାଲାକୁ ଲାଜ ସରମ ନାହିଁ, ଦେଖିଲାବାଲାକୁ ଲାଜ । ଯୁଗ ଓଲଟା ହେଲା । ସିଏ କିଏ କରେ ?"

"ତୁ ଚିହ୍ନିନୁ ତାଙ୍କୁ ? ସେ ପରା ହେଉଛନ୍ତି ହୋମ ଡେପୁଟି ସେକ୍ରେଟେରୀ, ମିଷ୍ଟର ସିନ୍‌ହା । ଗତ ମନ୍ତ୍ରୀମଣ୍ଡଳରେ ତାଙ୍କ ଶ୍ୱଶୁର ଅବକାରୀ ମନ୍ତ୍ରୀ ନ ଥିଲେ ?

ଆରେ, ମୋତେ ଟିକିଏ ଚହ୍ନାଇ ଦେଲୁନି ସେ ଭଦ୍ର ଲୋକଙ୍କୁ । ବଡ଼ ସଉକୀନିଆ ଲୋକ ତ ! ଏଇଠି ଘର, ପୁଣି ଏଠେ ରସିକାମୀ ?"

ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି ବୋହାଉଗି, ସେ ଭଦ୍ରଲୋକ ବିବାହିତ, ତାଙ୍କ ସ୍ତ୍ରୀ ପୁଣି ବେଶ୍ ସୁନ୍ଦରୀ ଓ ଆଧୁନିକା । ସେ ଭଦ୍ର ଲୋକ ତାଙ୍କ ନିଜ ସୁନ୍ଦରୀ ସ୍ତ୍ରୀକୁ ଛାଡ଼ି ଏଠିକି କାହିଁକି ଆସିଛନ୍ତି ବୁଝି ପାରୁନି । ତାଙ୍କ ସହିତ ହାତକଡ଼ା ଦିଆଯାଇ ଯେଉଁ ସେଉଁ ସ୍ତ୍ରୀଟି ଯାଉଥିଲା, ସେ ତ ବିଶେଷ ସୁନ୍ଦରୀ ନୁହେଁ, ତାଙ୍କ ନିଜ ସ୍ତ୍ରୀର ପାସଙ୍ଗରେ ପଡ଼ିବନି ।

ତୁ ପିଲା ଲୋକ ଅମରେଶ, ବାହାତ ହୋଇନୁ ଜାଣିବୁ କେମିତି ? ତୋର ସେ ସବୁର କାରଣ ନ ଜାଣିବା ଭଲ ।"

ତୁ ବଡ଼ ହୋଇଛୁ ବୋଲି କ'ଣ ସବୁ ଜାଣିଛୁ ? ତୁ ଆଉ ଏତେ ବାତ୍ ଫୁରସି ଦେଖାନା "

ଆରେ, ଏହି ଦୁନିଆରେ ବହୁ ଲୋକ ଅଛନ୍ତି, ନିଜ ସୁନ୍ଦରୀ ସ୍ତ୍ରୀ ଥାଉଁ ଥାଉଁ ଅନ୍ୟ ସ୍ତ୍ରୀ ପ୍ରତି ମନ ବଳାନ୍ତି, ସେ ସ୍ତ୍ରୀଟି ନିଜ ସ୍ତ୍ରୀଠାରୁ ଅଧିକ ସୁନ୍ଦରୀ ହୋଇ ଥାଉ ବା ନ ହୋଇଥାଉ । କିଏ ଜାଣେ, ଏହା ତାଙ୍କ ପାଇଁ ହୁଏତ ଏକପ୍ରକାର ଲାଞ୍ଚ ବି ହୋଇ ପାରିଥାଏ । ଆଜିକାଲି ଲୋକେ ତ କାମ ହାସଲ ପାଇଁ ଅଙ୍କା ସାଙ୍ଗକୁ ଏଭଳି ଲାଞ୍ଚ ବି ତ ଦେଉଛନ୍ତି ।

ଯାହା କହ ବୋହାଉଗି, ମୋତେ ଏସବୁ କେମିତି କେମିତି ଜଣାପଡୁଛି । ବିବାହିତ ଲୋକ ନିଜ ସ୍ତ୍ରୀଙ୍କୁ ଛାଡ଼ି ଅନ୍ୟ ସ୍ତ୍ରୀ ପ୍ରତି—"

ତୁ ପିଲାଲୋକ ଅମରେଶ ଏ ସବୁ ସମ୍ପର୍କରେ ଚିନ୍ତା ନ କରିବା ଉଚିତ୍ । ବଡ଼ ହୋଇନୁ କି ବରଯାତ୍ରୀ ବି ଯାଇନୁ ।"

ଥାଉ, ତୁ ବିଭା ହୋଇଛୁ ବୋଲି ସ୍ୱର୍ଗରୁ ବୁଲି ଆସିଛୁ ବୋଲି ଭାବନା ।"

"ଦେଖ୍, ଅମରେଶ, ତୋତେ ପ୍ରତିଦିନ ସନ୍ଧ୍ୟାବେଳେ ସକାଳେ ଖାଲି ରସଗୋଲା କି ସନ୍ଦେଶ ଖାଇବାକୁ ଦିଆଗଲା, ଦିନେ ନୁହେଁ ଦୁଇଦିନ ନୁହେଁ, ମାସ ମାସ ଧରି । କିଛି ଦିନ ପରେ ଦେଖିବୁ ତୋତେ ରସଗୋଲା କି ସନ୍ଦେଶ ଆଉ ଭଲ ଲାଗିବନି ଖାଇବାକୁ । ତୋ ମନ ହେବ, ବାଗ ବାଗ ତେଲଛଣା ବରା,

କ ପିଆଜ ମିଳନ୍ତା କ ଭଲ ଲାଗନ୍ତା । ହଇରେ, ରସଗୋଲା ସନ୍ଦେଶଠାରୁ ବଡ଼ ପିଆଜ କ'ଣ ଭଲ ଜିନଷ ? ତେବେ ମନ ହୁଏ କାହିଁକି ? ଏଥିର ଉତ୍ତର ପାଇଲୁ ତୋ ପ୍ରଶ୍ନର ?

ଥାଉ, ଥାଉ, ତୋର ସେ ସବୁ ଉପମା, ଅଲଙ୍କାର । ମୋର ସେ ସବୁ ଜାଣିବା ଦରକାର ନାହିଁ । ତୁ ଏବେ ଥାନାକୁ ଯାଆ । ମୁଁ ଘରକୁ ଯାଉଛି । ରାତି ଆସି ଡଜନଟା ହେଲାଣି । କାଲି ସକାଳେ ପୁଣି ଅଫିସ ଅଛି ।

ରୋହାତ୍‌ଗି ଥାନାରେ ପହଞ୍ଚି ହଲ ହଲ ହୋଇ ହାତ କଡି ଲାଗିଥିବା ପୁରୁଷ ଓ ସ୍ତ୍ରୀଙ୍କୁ ଅଲଗା କରି ପୁରୁଷଙ୍କୁ ପୁରୁଷ ହାଜତକୁ ଓ ସ୍ତ୍ରୀମାନଙ୍କୁ ସ୍ତ୍ରୀ ହାଜତକୁ ପଠାଇଦେଲା । ସଙ୍ଗେ ସଙ୍ଗେ ଫୋନ ଧରିଲା ଡେପୁଟି ସେକ୍ରେଟେରୀ ସିହ୍ନାଙ୍କ ଘରକୁ, ଉଦ୍ଦେଶ୍ୟ, ଖବର ଦେଇଦେଲେ ତାଙ୍କୁ ଜାମିନରେ ନେବା ବ୍ୟବସ୍ଥା ସକାଳ ହେବା ପୂର୍ବରୁ ଯେମିତି ହୋଇଯାଏ । ନଚେତ୍ ସବୁ କଥା ପଦାରେ ପଡ଼ିଯିବ ।

ଫୋନରେ ତାଙ୍କ ସ୍ତ୍ରୀ କହିଲେ, ଡେପୁଟି ସେକ୍ରେଟେରୀ ଟୁର୍‌ରେ ଯାଇ-ଛନ୍ତି ମୁଜାଫରପୁର । ଆସନ୍ତା କାଲି ଆସିବେ ।

ଏହାଶୁଣି ରୋହାତ୍‌ଗି ବାଧହେଲା ସବୁ କଥା ତାଙ୍କ ସ୍ତ୍ରୀଙ୍କୁ ଫୋନରେ ଫିଟାଇ କହିବାକୁ । ସକାଳ ହେବା ପୂର୍ବରୁ ତାଙ୍କ ଯାମିନର ବ୍ୟବସ୍ଥା ନ କଲେ ସବୁ କଥା ପଦାରେ ପଡ଼ିଯିବ !

ନିଜ ସ୍ୱାମୀ ଆରେଷ୍ଟ ହେବା କଥା ଶୁଣି ମିସେସ୍ ସିହ୍ନାଙ୍କ ମୁଣ୍ଡ ଖରାପ ହୋଇଗଲା । ସେ ଦୌଡ଼ିଲେ ପୋଲିସ ହାଜତକୁ । ବଡ଼ କାକୁତି ମିନତି କଲେ ରୋହାତ୍‌ଗିଠାରେ, ଖଲାସ କରିଦେବା ପାଇଁ । ଅନ୍ୟ ଲୋକମାନେ ହାଜତରେ ଥିଲାବେଳେ ଏହାଙ୍କୁ କେମିତି ସେ ଖଲାସ କରିଦେବ ରାଜି ହେଲାନି ରୋହାତ୍‌ଗି । ଏହି ରାତି ଭିତରେ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ଧରାଧରି କରି ଯାମିନ ବ୍ୟବସ୍ଥା କରି ପାରିଲେ ସବୁଠାରୁ ଭଲହେବ ବୋଲି କହି ବିଦାୟ ଦେଲା ରୋହାତ୍‌ଗି ।

ବଡ଼ ମନ କଷ୍ଟରେ ଫେରି ଆସିଲେ ମିସେସ୍ ସିହ୍ନା । ରାତି ଭିତରେ ଉଚ୍ଚ କର୍ତ୍ତୃପକ୍ଷଙ୍କୁ କହି ଯାମିନ ବ୍ୟବସ୍ଥା କରିବା କ'ଣ କେବେ ସମ୍ଭବ ? ସକାଳ ହେଲାକ୍ଷଣି ସବୁ କଥା ପଦାରେ ପଡ଼ିଯିବ । ଲୋକଙ୍କୁ ସେ ଆଉ ମୁହଁ ଦେଖାଇବେ

କେମିତି ? ଅସହାୟ ଚାଗଳମାଙ୍କ ଭଳି ସେ ବର୍ତ୍ତମାନ କଣ କରିବେ ଭାବି ଠିକ୍ କରି ପାରିଲେନି । ଘରକୁ ଫେରିଲା ବାଟରେ ଏକ ଚଳନ୍ତା ଟ୍ରେନ୍ ଆଗରେ ଡେଇଁ ପଡ଼ି ଆତ୍ମହତ୍ୟା କରି ସ୍ୱାମୀଙ୍କ ପାପର ପ୍ରାୟଶ୍ଚିତ କଲେ ।

ଏହି ଘଟଣାର ଠିକ୍ ଦୁଇଦିନ ପରେ । ପାଟନାର ସୁବିଖ୍ୟାତ ଆଭିଜାତ୍ୟ ଭରା ହୋଟେଲ ଉର୍ବଶୀରେ ହେଲା ପୋଲିସର ଚଢ଼ାଉ । ଏହି ହୋଟେଲ ଜୁଆ ଖେଳ ଓ କାବାରେଟ ନାଚ ପାଇଁ ପାଟନାରେ ବିଖ୍ୟାତ । ବହୁ ଧନୀ ଘରର ପିଲାମାନେ ଏଠାକୁ ନାଚ ଦେଖିବାକୁ ଆସନ୍ତି । ଏହି ହୋଟେଲର ଭମି ତଳ ମହଲାରେ ଜୁଆ ଖେଳ ହୁଏ । ବହୁ ବଡ଼ ବଡ଼ ଲୋକ ଏପରିକି ଅଫିସର-ମାନେ ଏହି ଜୁଆ ଖେଳରେ ଯୋଗ ଦେବାକୁ ଆସନ୍ତି ।

ରେଡ୍ରଉ ହେବା ସଙ୍ଗେ ସଙ୍ଗେ ପୋଲିସ ଅଫିସରମାନେ ହୋଟେଲର ତଳ ମହଲାରେ ପଶିଗଲେ । ସଂଙ୍ଗ ସଙ୍ଗେ ଜୁଆ ଖେଳର ସ ଜ ସରଞ୍ଜାମ ସହିତ ଆଖେଳରେ ଲିପ୍ତଥିବା ଲୋକମାନଙ୍କୁ ଧରିପକାଇଲେ । ଉପର ମହଲାରେ କାବାରେଟ୍ ନାଚ ଚାଲିଥାଏ । ବହୁ ଭଦ୍ରଲୋକ ଓ ମହିଳା ଏହି ନାଚ ଦେଖୁଥାନ୍ତି । ଅମରେଶ ଏଥିପୂର୍ବରୁ କେବେ କାବାରେଟ ନାଚ ଦେଖିବାର ସୁଯୋଗ ପାଇ ନ ଥିଲା । ସେ ଓ ରୋହାଡ୍ଗି ନାଚ ଦେଖିବା ଆଶାରେ ହୋଟେଲ ଭିତରକୁ ପଶିଯାଇ ଗୋଟିଏ ଟେବୁଲ ପାଖରେ ବସି ଚା ମଗାଇଲେ । ସେମାନଙ୍କ ଦୃଷ୍ଟି ନିବଦ୍ଧଥାଏ କାବାରେଟ୍ ନାଚ ଉପରେ ।

ସେମାନଙ୍କ ଠାରୁ ଅଳ୍ପ ଦୂରରେ ଆଉ ଏକ ଟେବୁଲରେ କେତେ ଗୁଡ଼ିଏ ଝିଅଙ୍କୁ ଧରି ଚା ଖାଉଥିଲା ଶୁଭ୍ରା । ଅମରେଶ ଓ ପୋଲିସ ସୁପରିନ-ଟେଣ୍ଡେଣ୍ଟଙ୍କୁ ଦେଖି ଶୁଭ୍ରା ଚାଲି ଆସିଲା; ସେମାନଙ୍କ ପାଖକୁ, ନମସ୍କାର ଜଣାଇ ପଚାରିଲା, ' କଣ ଆଜି, ଆପଣମାନେ ଏଠି ?

"କାହିଁକି ? ଆମେ କ'ଣ ଏଠାକୁ ଆସିବାକୁ ଯୋଗ୍ୟ ନୋହୁଁ ନା କଅଣ ?"

"ନାଁ ସାର୍, ମୁଁ ତ ତା କହୁନି । ତେବେ ଏଠାରେ ଆପଣମାନଙ୍କୁ କେବେ ଦେଖିନି ବୋଲି ପଚାରିଲି ।

"ତାହେଲେ, ଆପଣ ଏଠାକୁ ଘନ୍ତମନ୍ତ ଆସନ୍ତ ଶୁଭ୍ରା ଦେବୀ ?"

ସବୁଦନେ ନୁହେଁ, ଦନେ ଦନେ ମୋ ସଙ୍ଗୀମାନଙ୍କୁ ଧର ଚ୍ଲଆସେ ।

ସଙ୍ଗୀ ନା ସଙ୍ଗିନୀ ?

ହଁ ସାର୍ ଭୁଲ ହୋଇଗଲା, ସଙ୍ଗିନୀ ।

ଏତକ କହୁଁ କହୁଁ ହଠାତ୍ କାବାରେଟ ନାଚ ବନ୍ଦ ହେଇଗଲା । ଲୋକଙ୍କ ଭିତରେ ଇତସ୍ତତତା ବଢ଼ିଗଲା । ପୋଲିସ ପୋଲିସ ବୋଲି ଏକ ଅସ୍ପଷ୍ଟ ଶବ୍ଦ ଗୁଞ୍ଜର ଉଠିଲା ହୋଟେଲ ଭିତରେ । ଭୂମିତଳ ମହଲରୁ ଆରେଷ୍ଟ କର ଜୁଆଡ଼ୀମାନଙ୍କୁ ଧର ଆଣିଲେ ପୋଲିସ ଅଫିସରମାନେ । ସେମାନଙ୍କୁ ଆସିବାର ଦେଖି ଶୁଭ୍ରା ଠାରୁ ବଦାୟ ନେଇ ଚ୍ଲଗଲେ ଅମରେଶ ଓ ଶ୍ରେତାଗି ।

ଶୁଭ୍ରା ଜାଣିନେଲା, ଏହ ଚଡ଼ାଉର ମୂଳରେ ଅଛୁ ଅମରେଶ । ଶୁଭ୍ରା ଓ ତା'ର ସଙ୍ଗିନୀମାନେ ହୋଟେଲରୁ ବାହାରଗଲା ବେଳକୁ ବାଟରେ ଠିଆ ହୋଇ ଅମରେଶ ଲକ୍ଷ୍ୟ କରୁଥିଲା ଏହ ଜୁଆଡ଼ୀମାନଙ୍କୁ । ଏଠି ବ ସେହ ବଡ଼ ବଡ଼ ଲୋକଙ୍କର ପୁଅ ଝିଅମାନେ । କେତେ ଅଫିସର ବ ଅଛନ୍ତ । ହୋଟେଲରୁ ବାହାର ଯାଉଁ ଯାଉଁ ଜୁଆଡ଼ୀମାନଙ୍କୁ ଦେଖିବା ପାଇଁ ଶୁଭ୍ରା ମଧ ଅମରେଶ ପାଖରେ କଛୁ ସମୟ ପାଇଁ ଠିଆ ହୋଇଗଲା । ସେମାନଙ୍କୁ ଦେଖୁଁ ଦେଖୁଁ ପାଟିକର ଉଠିଲା, "ସାର୍, ସାର୍, ସେହ ଯେଉଁ ଭଦ୍ରଲୋକ ଯାଉନାହାନ୍ତ ସେ ପର ମୁଖ୍ୟମନ୍ତ୍ରୀଙ୍କ ପୁତୁରା, ସେ ଆର ଜଣକ ହେଉଛନ୍ତ ପୋଲିସ ଆଇ. ଜି.ଙ୍କ ସତ । ସେ ଯେଉଁ ସ୍ତ୍ରୀ ଲୋକଟି ଯାଉନାହାନ୍ତ, ସେ ଏହ ସହରର ଜଣେ ବଡ଼ ବ୍ୟବସାୟୀ ।

"ତୁମେ ଜୁଆ ଖେଳନ ଶୁଭ୍ରା ?" ଧୀର କଣ୍ଠରେ ଶୁଭ୍ରା ଆଡ଼କୁ ନ ଅନାଇ ପଚ୍ଚରଲା ଅମରେଶ ।

"ନାଁ ସାର୍ ।"

କାହିଁକ ? ସ୍ତ୍ରୀ ଲୋକମାନେ ତ ଜୁଆ ଖେଳୁଛନ୍ତ । ତୁମେ ଖେଳପାର ଥାନ୍ତ ?

ନାଁ, ସାର୍ ମୋତେ ଜୁଆ ଖେଳବାକୁ ଘୃଣା ଲଗେ ।

ତୁମକୁ ଏ ହୋଟେଲକୁ ଆସିବାକୁ ଘୃଣା ଲଗେନ ?

"ସାର୍, ଏଠାରେ ଜୁଆଖେଳ ହେଉଛି ଜାଣିଥିଲେ ମୁଁ ଏଠାକୁ କଦାପି ଆସି ନଥାନ୍ତି ।

ନାଚଟା,ତୁମର ବୋଧହୁଏ ପସନ୍ଦ ?

ସାର ନାଁ, ସେମିତି ନୁହେଁ ।

ତେବେ ଏତେ ପଇସା ଖରଚ କରି ଏଠାକୁ ଆସ କାହିଁକି ?

ସାର୍, ପଇସା ତ ଅଛି । ଖରଚ କରିବାକୁ ପଡ଼ିବ, ଏ ଗୋଟାଏ ପ୍ରକାର ମନୋରଞ୍ଜନ ।

ହେଉ, ତୁମେ ଥାଅ ଶୁଭ୍ରା ମୁଁ ଆସୁଛି । ଏତକ କହିଦେଇ ଅମରେଶ ବାହାରିଗଲି ।

"ନାଇଁ ସାର, ଆମେ ବି ଯାଉଛୁଁ ।"

ସହରରେ ଏହିଭଳି ତିନୋଟି ଗୃହେଟି ଚଡ଼ାଉ ହୋଇଯିବା ପରେ ସହର ପୁରାପୁରି ଥଣ୍ଡା ପଡ଼ିଗଲା । କାଁ ଭାଁ କେଉଁଠି ହିପ୍ପୀ ଟୋକାମାନେ ସନ୍ଧ୍ୟାବେଳ ଅନ୍ଧାରିଆ ସ୍ଥାନ ଦେଖି ନିରୀହ ପଥିକଙ୍କ ଠାରୁ ଜିନିଷପତ୍ର, ସ୍ତ୍ରୀ ଲୋକଙ୍କ ବେକରୁ ସୁନାହାର, କାନରୁ ଗହଣା ଆଦି ଛଡ଼ାଇ ନେବାର ଘଟଣା ଶୁଣି ସେ ସବୁ ସ୍ଥାନରେ କଡ଼ା ପୋଲିସ ମୁତୟନ କରାଗଲା । ହିପ୍ପୀ, ଲମ୍ବାବାଳିଆ ଟୋକାଏ ଏହି ସବୁ କାଣ୍ଡ ମୂଳରେ ଥିବାରୁ ଯେଉଁଠି ହିପ୍ପୀ ଟୋକାମାନଙ୍କୁ ଦେଖିଲେ ଆରେଷ୍ଟ କରି ପଚାରି ଉଚରା କରିବା ପାଇଁ ଥାନାକୁ ଡ଼ାକି ନିଆଗଲା । ହିପ୍ପୀ ଟୋକାମାନେ ଆରେଷ୍ଟ ହେଉଛନ୍ତି ବୋଲି ଏକ ଖବର ରାଷ୍ଟ୍ର ହୋଇଗଲା ସାରା ସହରରେ । ଏହା ଦେଖି ଯିଏ ଯେଉଁଠି ହିପ୍ପୀ ଟୋକା ଥିଲେ, ଆରେଷ୍ଟ ହେବା ଭୟରେ ବାଳ ସବୁ କାଟି ପକାଇଲେ । ସେଲୁନମାନଙ୍କରେ ଏତେ ଭିଡ ହେଲା ଯେ ଜଣ ଜଣଙ୍କର ବାଳ କାଟିବା ପାଇଁ ବାରିକମାନେ ଦଶ ପନ୍ଦର ଟଙ୍କାରୁ କମ୍ ହେଲେ କାଟିବେନି ବୋଲି ଅଡ଼ି ବସିଲେ ।

ଅମରେଶ ଓ ଶୋଭାଙ୍ଗିଙ୍କ କାମ ସହରର ଅସାମାଜିକ ଲୋକଙ୍କ ଭିତରେ ଆତଙ୍କ ଖେଳାଇ ଦେଲା । ଏହି ସବୁ କାଣ୍ଡ ମୂଳରେ ବଡ ବଡ଼ିଆଙ୍କ

ଫିଲ୍ମମାନେ ଓ କେତେକ ଅଫିସରେ ଥିବାରୁ ସରକାରଙ୍କ ଉପରେ ଚାପ ପଡ଼ିଲା ଅସମ୍ଭବ ଧରଣର । ସେମାନଙ୍କର ଭିତିହୀନ ଦାବୀ ହେଲା ଯେ ସେ ଦୁଇ ଜଣଙ୍କୁ ଏଠୁ କେମିତି ହଟାଅ । ନୋହିଲେ ରକ୍ଷା ନାହିଁ । ଅମରେଶ ଜାଣିଥିଲା, ଏହି କାମ ପାଇଁ ସେ ପ୍ରଶଂସା ପାଇବ କଅଣ, ବହୁ ଲୋକଙ୍କର ସେ ଅକ୍ଷୋଶଳ ହେବ । ତାହାହିଁ ଶେଷରେ ହେଲା । ଦିନେ ହଠାତ୍ ଦେଖାଗଲା ହେଡ଼ାଭଗି ଓ ଅମରେଶ ପାଟନାରୁ ଅନ୍ୟତ୍ର ବଦଳି ହୋଇଯାଇଛନ୍ତି ।

× × ×

ଆଉ ଦିନକର ଘଟଣା । ଅମରେଶ ଟୁରରେ ଯାଇଥାଏ ଗୟା ଜିଲାର ଏକ ଟାଉନ ସହରକୁ । ସେଇଠାରୁ ୧୫।୨୦ ମାଇଲ୍ ଦୂର ହେବ। ସେ ସଇ ସନ୍ଧ୍ୟାବେଳେ ଡାକବଙ୍ଗଳାର ପହଞ୍ଚି ଗୋଟିଏ ରୁମ୍‌ରେ ଟିକିଏ ବିଶ୍ରାମ ନେଉଥାଏ । ଖାନସମା ଆଣି ରାତ୍ରି ଭୋଜନ ଦେଇଗଲା । ସେ ରାତ୍ରି ଭୋଜନ ସାରି ବାରଣ୍ଡାରେ ଟହଲ ମାରୁଛି, ଦେଖିଲା ଗୋଟିଏ ଗାଡ଼ି ଆସି ପୋର୍ଟିକୋରେ ରହିଲା । ଆଉ କେହି ଅଫିସର ଆସିଲେ କି କଅଣ ଜାଣିବା ଉଦ୍ଦେଶ୍ୟରେ ଦୂରେଇଯାଇ ଗୋଟିଏ ଖୁଣ୍ଟକୁ ଆଉଜେଇ ଠିଆହେଲା ।

ଦେଖିଲା ରାଜ୍ୟର ଜଣେ ଉଚ୍ଚ ପଦସ୍ଥ ଅଫିସର ଗାଡ଼ିରୁ ଓହ୍ଲାଇଲେ । ତାଙ୍କ ସହିତ ଜଣେ ସୁଶ୍ରୀ ଯୁବତୀ । ଦେହେବରୁ ସେ ତାଙ୍କ ସହଧର୍ମିଣୀ ବା ଆତ୍ମୀୟା ବୋଲି ଜଣାପଡୁ ନ ଥାନ୍ତି । ସେମାନେ ଅମରେଶ ଠାରୁ ଦୁଇଟି କୋଠରୀ ଛାଡ଼ି ଗୋଟିଏ ରୁମ୍‌ରେ ରହିଲେ । ଏତେ ବଡ଼ ଜଣେ ସିନିୟର ଅଫିସର, ଅନ୍ୟଜଣେ ସ୍ତ୍ରୀ ଲୋକକୁ ନେଇ ରାତିରେ ଆସି ପହଞ୍ଚିଛନ୍ତି ଦେଖି ଅମରେଶର ମୁଣ୍ଡ ଗୋଳମାଳ ହୋଇଗଲା ।

କିଛି ସମୟ ପରେ ଡାକବଙ୍ଗଳାର ଚପରାଶୀ ଗୋଟିଏ ଟ୍ରେରେ ମଦ ବୋତଲ ଓ ଗିଲାସ ଧରି ସେହି କୋଠରୀ ଆଡ଼କୁ ଧାଇଁଲା । କଥା କ'ଣ ବୁଝିବା ପାଇଁ ଅମରେଶ ଚପରାଶୀକୁ ଡାକିଲା । ଚପରାଶୀ ଭାବିଲା ଅମରେଶର ମଧ୍ୟ ମଦ ଦରକାର । ସେ କହିଲା, "ଆଜ୍ଞା ମୁଁ ଆସୁଛି, ସାହେବଙ୍କୁ ଦେଇ । ଆପଣଙ୍କୁ ଆଣିଦେବି ।"

କିଛି ସମୟ ପରେ ଆସି ଠିଆ ହେଲା, "ସାର୍, ଆପଣଙ୍କର କ'ଣ ହୁଇସ୍କି ଦରକାର ?"

ଚପରାଶୀ କଥ ଶୁଣି ଚମକ ପଡ଼ିଲ ଅମରେଶ । କହିଲ, "ଆ', ହୁଇସ୍କି ? ମୋର ସେ ସବୁ ଚଳେ ନାହିଁ ଆଜ୍ଞା ।"

"ଆଃ, ଆପଣ ଖାଆନ୍ତି ନାହିଁ ? ଏହି ଡ଼ାକବଙ୍ଗଳାରେ ମଦ ନ ଖାଉଥିବା ବଡ଼ ଅଫିସର ଦେଖିନାହିଁ । ଆପଣଙ୍କୁ ଆଜି ପ୍ରଥମ ଦେଖୁଛି ଆଜ୍ଞା ।"

ଛାଡ଼ ସେ କଥା, ସିଏ ଯେ ଅଫିସରଙ୍କ ସାଙ୍ଗରେ ଆସିଛନ୍ତି, ସିଏ କିଏ କିରେ ? ତାଙ୍କ ସ୍ତ୍ରୀ ?"

ହସିଲ ଚପରାଶୀଟି । ନାହିଁ, ଆଜ୍ଞା ସେ ତାଙ୍କର କେହି ନୁହଁନ୍ତି । ଏମିତି ବେଳେ ବେଳେ ବୁଲି ଆସନ୍ତି ସାହେବଙ୍କ ସାଙ୍ଗରେ ।

ସେ ଦିନ ରାତିରେ ଅମରେଶଙ୍କୁ ନିଦ ହେଲ ନାହିଁ । କିଛି ଦିନ ତଳେ ଆଉ ଏକ ଡ଼ାକବଙ୍ଗଳାରେ ଜଣେ ଛୋଟ ଅଫିସରଙ୍କ କୋଠରୀକୁ ମଧ୍ୟ ରାତିର ଘନ ଅନ୍ଧକାର ଭିତରେ ଆସିଥିଲେ ଜଣେ ଯୁବତୀ । ସେହିଭଳି ମଦ ମାଂସର ଭୁର ଭୁର ଭୋଜନ ଚାଲିଥିଲା ସେହି କୋଠରୀରେ । ଯେଉଁମାନେ ସବୁ ଦେଶ ଶାସନ ଓ ଦେଶ ରକ୍ଷଣ ଦାୟିତ୍ୱରେ ଅଛନ୍ତି ସେମାନେ ରକ୍ଷଣ କରୁଁ କରୁଁ ଯଦି ଭକ୍ଷଣ କରନ୍ତି, ତେବେ ସବୁ ଗଲା, ଦେଶ କ'ଣ ଆଉ ରହିବ ? ତା'ର ବଡ଼ ଘୃଣା ଜାତ ହେଲ ଏହି ଚରିତ୍ର ପ୍ରତି । କ୍ଷମତା ହାତରେଥିବାରୁ କେତେ ଲୋକ ସୁବିଧା ହାସଲ ପାଇଁ କେତେପ୍ରକାର ଲାଞ୍ଚ ନ ଦେଉଛନ୍ତି । କେଉଁଠି ଅର୍ଥ ଘୁସ ଚାଲିଛି ତ କେଉଁଠି ଯୁବତୀ ଲାଞ୍ଚ ଚାଲିଛି । ଏଇଆ ଯଦି ଏ ଦେଶର ରୀତି ହୁଏ, ଦେଶ ଶାସକ ଯଦି ଏଭଳି ଭାବରେ ଅସାଧୁ ହୁଅନ୍ତି, ତେବେ ଏ ଦେଶ ଶାସିତ ହେବ କିଏଣ ? ଜାଲ, ଜୁଆ ଚୋରୀ, କଳା ପାତେଇ, କଳାବଜାରୀ ଚାଲିବ ନାହିଁ ତ ଆଉ କ'ଣ ଚାଲିବ ? ସେ ଯଦି ଏହି ଚାକିରୀରେ ରହେ, ତେବେ ସେ ବି ଦିନେ ଏହିଭଳି ଜୀବନର ଶିକାର ହେବ । ବରଂ ତା'ର ଏହି ଚାକିରୀରୁ ବିଦାୟ ନେଇଯିବା ଉଚିତ ।

ବଡ଼ ବଡ଼ ଅଫିସରମାନଙ୍କ ଦୈନନ୍ଦିନ କାର୍ଯ୍ୟକଳାପ ଅମରେଶ ଆଖିରେ ଦିନକୁ ଦିନ ଅଧିକରୁ ଅଧିକ ପଡ଼ିଲ । ଯେଉଁ ଜୀବନକୁ ସେ ଅତ୍ୟଧିକ ଘୃଣା କରେ, ସେହି ଜୀବନକୁ ଏହି ଅଫିସରମାନେ ଆନନ୍ଦରେ ଉପଭୋଗ କରୁଥିବାରୁ ତାର ଏହି ଚାକିରୀ ପ୍ରତି ଅତ୍ୟଧିକ ଘୃଣା ଜନ୍ମିଲା । ସେ କଲେଜରେ ଥିବାବେଳେ ଯେଉଁ ଅଭିଜାତ୍ୟଭରା ଝିଅମାନେ ତାକୁ ଆଡ଼ଆଖିରେ ଚାହୁଁ ନଥିଲେ, ସେ ଆଇ.ଏ.ଏସ.

ପଳାଇଯିବା ପରେ ତା ପଛରେ କେମିତି ଗୋଡ଼ାଇଲେ, ସେ କଥା ମନେ ପଡିଗଲା କ୍ଷଣି ତା' ମନରେ ଘୃଣା ଜାତ ହେଲା । ଡ଼. ପି. ଆଇ. ଓ ଶିକ୍ଷାମନ୍ତ୍ରୀ ସେମାନଙ୍କ ଝିଅ ସହିତ ତାର ବିବାହରେ ନେଇ ସେମାନେ କେମିତି ତା ବାପାଙ୍କ ପଛରେ ଗୋଡ଼ାଇଛନ୍ତି ମନେ ପଡି ଗଲେ ତାକୁ ହସ ମାଡ଼ିଲା । ଆଇ. ଏ. ଏସ୍ ହୋଇ ଗଲେ କ'ଣ ଜୀବନର ସବୁ କିଛି ହୋଇଗଲା ? ଏତେ କଳଙ୍କ ପୂର୍ଣ୍ଣ ଜୀବନ ଯାପନ କରି ଉପରକୁ ସ୍ୱଚ୍ଛ ପବିତ୍ର ଜୀବନ ଯାପନ କରିବାର ଅଭିନୟ ମନେ ପଡ଼ିଗଲାରୁ ତାର କ୍ଷୋଭ ହେଲା । ସାରା ଦେଶରେ ଏହି ଠକ ବାଜି କ'ଣ ଏମିତି ସବୁଦିନେ ଚାଲିଥିବ ? ପ୍ରତ୍ୟେକ ଲୋକ ପ୍ରତ୍ୟେକକୁ କ'ଣ ଏମିତି ଠକାଇ ଠକାଇ ଚାଲିଥିବେ ? ଏହାର ଅବସାନ କ'ଣ କେବେ ହେବନି ? ଯେତେ ସେ ଏହା ଉପରେ ଭାବିଲା ଏହି ଚାକିରି ଛାଡ଼ିବା ସିଦ୍ଧାନ୍ତ ଦିନକୁ ଦିନ ତା ମନରେ ସେତେ ବଳବତ୍ତର ହେଲା । ବଡ଼ ବଡ଼ ଅଫିସରଙ୍କ କଳଙ୍କ କାଳିମା ପୂର୍ଣ୍ଣ ଗୁପ୍ତ ଜୀବନ ଯେତେ ତା' ଆଖିରେ ପଡ଼ିଲା, ଏହି ଚାକିରିଛାଡ଼ି ପଳାଇବାର ଇଚ୍ଛା ତା ମନରେ ସେତେ ଦୃଢ଼ୀଭୂତ ହେଲା । ସେ ଭାବିଲା ଯେ ଯଦି ଏହି ଚାକିରିରେ ବେଶି ଦିନ ରହେ ତେବେ ସେ ଅଣନିଶ୍ୱାସୀ ହୋଇ ମରିଯିବ ।

ଏହି ସମୟରେ ସେ ଦିନେ ବିଲାତର କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ଏକ ଚିଠି ପାଇଲା ଯେ ସେ ଗବେଷଣା ପାଇଁ ଯେଉଁ ଦରଖାସ୍ତ କରିଥିଲା, ସେହି ଦରଖାସ୍ତ ଅନୁଯାୟୀ ସେ କେମ୍ବ୍ରିଜରେ ପିଏଚ୍. ଡ଼. ଗବେଷଣା ପାଇଁ ଏ ସିଟ୍ ପାଇ ଯାଇଛି । ଭାରତ ସରକାର ଗବେଷଣା ପାଇଁ ତାକୁ ଏକ ବୃତ୍ତି ଦେଉଥିବାରୁ ତାର ସେହି ବିଶ୍ୱବିଦ୍ୟାଳୟରେ ଯୋଗ ଦେବାରେ କିଛି ବାଧା ନାହିଁ ।

କିଛି ଦିନ ତଳେ ସେ ଯେତେବେଳେ ପାଟନା କଲେଜରେ ଲେକଚରର ଥିଲା, ସେତେବେଳେ ସେ ଭାରତ ସରକାରଙ୍କଠାକୁ ବିଦେଶରେ ଗବେଷଣା ପାଇଁ ଏକ ଦରଖାସ୍ତ ପଠାଇଥିଲା । ତାର ଅତି ଉଜ୍ଜ୍ୱଳ କେରିୟର ଥିବାରୁ ସେ ବୃତ୍ତି ପାଇଲା ଓ ସେଥି ସହିତ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଏକ ସିଟ୍ ମଧ୍ୟ ।

ଯେଉଁଦିନ ସେ ଏହି ଗବେଷଣା ବୃତ୍ତି ପାଇଲା, ତା ମନର ଖୁସି କହିଲେ ନ ସରେ । ଏହି ଚାକିରିରୁ କେମିତି ଇସ୍ତଫା ଦେଇ ଗବେଷଣାରେ ଯୋଗ ଦେବ ତାର ସେହି ଚିନ୍ତା ହେଲା । ଯିବାପାଇଁ ପାସପୋର୍ଟ, ଭିସା ଆଦି ଠିକ୍ କରି ସାରି କେମ୍ବ୍ରିଜ ଯିବା ପାଇଁ ଟିକେଟ କରି ଚାକିରିରୁ ଇସ୍ତଫା ଦେଇଦେଲା ।

ବାପା ମାଙ୍କ ପାଖରୁ ବିଦାୟ ନେବା ପାଇଁ ଯାଇ ସିନେ ଗଞ୍ଜ କଲେଜରେ ପହଞ୍ଚିଗଲ ।

ବାପାଙ୍କୁ ଚାକିରିରୁ ଇସ୍ତଫା ଦେଇଦେବା କଥା କହନ୍ତେ ସେ ରାଗି ଖପା ହୋଇଗଲେ । ତାଙ୍କୁ ନ ପଚାରି ପୁଅ ଏହି ସିଦ୍ଧାନ୍ତ ନେଇଥିବାରୁ ସେ ଭାରି ମନ କଷ୍ଟ କଲେ । ଆଇ. ଏ. ଏସ୍. ଚାକିରି ଭାଗ୍ୟରେ ଥିଲେ ମିଳେ । ଏହିଳି ଚାକିରିକୁ ଛାଡ଼ିଦେବା କମ ଅବିବେକୀ କଥା ନୁହେଁ ।

ପୁଅ ଆଇ. ଏ. ଏସ୍. ଚାକିରି ଛାଡ଼ିଦେବାରେ ମା' ଭାରି ଖୁସି । ତେବେ ମା'ଙ୍କ ମନଦୁଃଖ, ପୁଅ ଚାକିରି ଛାଡ଼ି ନେଇ ଗବେଷଣା ପାଇଁ ବିଲାତ ଯାଉଛି । ସେଠି ଏକା କେମିତି ରହିବ, କେମିତି ଖାଇବ, ସେଇ ତାଙ୍କର ଚିନ୍ତା । ପୁଣି ସେ ଦେଶରେ ଆମ ଦେଶର ଖାଇବା ମିଳେନି । ସେମାନଙ୍କ ଦେଶ ଖାଇବା, ଅମରେଶକୁ କେମିତି ଲାଗିବ ସେଇ ଚିନ୍ତା ତାଙ୍କର ପ୍ରବଳ ହେଲା । ସେଠି ଦେହ ପା ଖରାପ ହେଲେ କିଏ ତା' ଯତ୍ନ ନେବ, ସେହିକଥା ଭାବି ଭାବି ସେ ମ୍ରିୟମାଣ ହୋଇପଡ଼ିଲେ । ସେ କ'ଣ ଆମ ଦେଶ ହୋଇଛି ଯେ ପୁଅ ଦେହ ଅସୁଖ ଶୁଣି ସଙ୍ଗେ ସଙ୍ଗେ ତା ପାଖକୁ ଚାଲିଯିବ କି ତାକୁ ଘରକୁ ନେଇ ଆସିବେ । ଏତେ ଦୂରରେ ରହିଲେ ସେ କେମିତି ଚଳିବ, ଏହାହେଲା ରାଧାମଣି ଦେବୀଙ୍କ ସବୁଠାରୁ ବଡ଼ ଚିନ୍ତା ।

ପୁଅର ଅବିବେକୀପଣିଆ ଶୁଣିବା ପରେ ନିଜେ ଧୈର୍ଯ୍ୟକୁ ଆଦରି ରହିଲେ ବିପିନ ବାବୁ । ଏତେ ହତଭାଗା ମିଳିଛି ? ଚାକିରି ଛାଡ଼ିବା ପୂର୍ବରୁ ଟିକିଏ ଯଦି ପଚାରିଥାନ୍ତା, ତେବେ ତାକୁ ଏତେ ବଡ଼ ଭୁଲ କରିବାକୁ ସେ ଦେଇ ନ ଥାନ୍ତେ । ତାଙ୍କ ମନରେ କ୍ଷୋଭ ଏତେ ବଡ଼ ଚାକିରିଟି ଛାଡ଼ିଦେଲା, ବାପା ବୋଲି ଟିକିଏ ବି ପଚାରିଲା ନାହିଁ । ବିପିନ ବାବୁ ମନରେ ଏତେ ଆଘାତ ପାଇଲେ ଯେ ପୁଅ ବିଦାୟ ହୋଇଗଲାବେଳେ ତାଙ୍କ ପାଟିରୁ ପଦେ କଥା ବି ବାହାରିଲା ନାହିଁ ।

ଅମରେଶ କେମ୍ବ୍ରିଜରେ ଯାଇ ଛଅ ମାସ ରହିଲା ପର୍ଯ୍ୟନ୍ତ ବିପିନ ବାବୁ ପୁଅଠାକୁ ଖଣ୍ଡିଏ ପତ୍ର ମଧ୍ୟ ଲେଖି ନାହାନ୍ତି । ତାଙ୍କ ମନ କଷ୍ଟ, ପୁଅଟା କଣ ନ କଲା ସତେ ? ଅମରେଶ କିନ୍ତୁ ବାପାଙ୍କ ଠାକୁ ମାଆଙ୍କ ଠାକୁ ଚିଠି ଦେବାରେ ହେଳା କଲାନି । ମା ଚିଠିର ଉତ୍ତର ଦିଅନ୍ତି । ଘର କଥା ଲେଖନ୍ତି । ସେ ବିଦେଶରେ କେମିତି ଚଳୁଛି, ତା ଦେହ ପା କେମିତି ରହୁଛି ପ୍ରତି ଚିଠିରେ ପଚାରନ୍ତି । ମା'ଙ୍କ ଚିଠିରୁ ବାପାଙ୍କ ଦେହପା କଥା ସେ ଶୁଣେ ।

ଅମରେଶର ଗବେଷଣା କାର୍ଯ୍ୟ ଖୁବ୍ ଭଲ ଭାବରେ ଚାଲିଥାଏ କେମ୍ବ୍ରିଜରେ । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଡକ୍ଟର ମେକଡ଼ୋନାଲ୍ଡ଼ଙ୍କ ଆଗ ଡାକ ହୋଇଥାଏ ଅମରେଶ । ମେଡନଡନାଲଡ୍ ଅମରେଶର କାର୍ଯ୍ୟରେ ଖୁବ୍ ପ୍ରୀତ । ଜୈବ ରସାୟନ ବିଜ୍ଞାନରେ ମେକଡ଼ୋନାଲ୍ଡ଼ଙ୍କ ପ୍ରସିଦ୍ଧି ସାରା ପୃଥିବୀରେ ଖ୍ୟାତ । ତେଣୁ ତାଙ୍କ ପ୍ରିୟ ଭାବରେ କାମ କରୁଥିବାରୁ ତାର ଭବିଷ୍ୟତ ଯେ ଖୁବ ଉଜ୍ଜ୍ୱଳ-ମୟ ଏଥିରେ ସନ୍ଦେହ ନାହିଁ । ଏକେତ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ପ୍ରିୟ, ତେଣେ ମେକଡ଼ୋନାଲ୍ଡଙ୍କ ପ୍ରିୟ କହିଲେ ଉପରକୁ ଉଠିବା ବାଟ ପୁରାପୁରି ଖୋଲା, ତାଙ୍କୁ ଅଟକେଇବା ସାଧ୍ୟ ଆଉ କାହାରି ନାହିଁ । ଅମରେଶର କାର୍ଯ୍ୟ ଦେଖି ମେକଡ଼ୋନାଲ୍ଡ଼ ବେଳେ ବେଳେ ଆଶ୍ଚର୍ଯ୍ୟ ହୁଅନ୍ତି । ଏତେ ମେଧାବୀ ପିଲା, ପୁଣି ଏତେ ପରିଶ୍ରମୀ, ଏ ଦୁଇଟି ଗୁଣଥିବା ପିଲା ଇଂଲଣ୍ଡରେ ତ ବିରଳ । ତେଣୁ ଅମରେଶର ଏ ଦୁଇଟି ଗୁଣ ଥିବାରୁ ସେ ଯେ ଭବିଷ୍ୟତ୍‌ରେ ଜଣେ ବଡ଼ ବୈଜ୍ଞାନିକ ହେବ, ଏ ଆଶା ତାଙ୍କୁ ଜଳ ଜଳ ଦିଶିଲା । ଅମରେଶ ପ୍ରତି ସେ ଏତେ ଖୁସି ଯେ ବେଳେ ବେଳେ କହି ପକାନ୍ତି, ସେ ଅମରେଶ ଭଳି ପ୍ରିୟ ତାଙ୍କ ଜୀବନରେ ଦେଖି ନାହାନ୍ତି । ସେ ଗବେଷକ ନୁହେଁ, ଗୋଟିଏ ସୁନା ମୁଣ୍ଡା ।

ତାଙ୍କର ଇଚ୍ଛା ଅମରେଶ ପି. ଏଚ୍. ଡି. ପାଇ ସାରିବା ପରେ ତାକୁ ନିଜ ବିଶ୍ୱବିଦ୍ୟାଳୟରେ ଏକ ଅଧ୍ୟାପକ ଭାବରେ ନିଯୁକ୍ତ ଦେଇ ରଖି-ନେବାକୁ । ତା'ର ଯେଉଁ ପ୍ରତିଭା ଅଛି, ତାହା ଯଦି ବିକଶିତ ହୁଏ, ତେବେ ସେ ତାଙ୍କ ବୟସକୁ ଆସିଲାବେଳକୁ ତାଙ୍କଠାରୁ ଯଥେଷ୍ଟ ଅଧିକ ପ୍ରସିଦ୍ଧି ଅର୍ଜନ କରି ସାରିଥିବ । ଭାରତକୁ ଫେରିଯାଇ ସେ ତାର ପ୍ରତିଭାକୁ ଖାଲି ଅପଚୟ କରିବ ସିନା, ବିକଶିତ କରିବାକୁ ସୁଯୋଗ ପାଇବ ନାହିଁ । ପ୍ରଫେସର ମେକଡ଼ୋନାଲ୍ଡ ଅମରେଶକୁ କେତେଥର ତାଙ୍କ ଅନ୍ତନିହିତ ଇଚ୍ଛାର ଆଭାଷ ଦେଇଛନ୍ତି, କିନ୍ତୁ ଅମରେଶ ଠାରୁ କିଛି ଉତ୍ତର ପାଇନାହାନ୍ତି । ମନେ ମନେ ଧରିନେଲେ, ସମ୍ଭବତଃ ଅମରେଶକୁ ଏ ଦେଶ ସୁହାଉ ନାହିଁ । ସେ ଅମରେଶକୁ ଖୁବ୍ ପ୍ରଶଂସା କରି ତା ବାପାଙ୍କ ପାଖକୁ ଚିଠି ଲେଖନ୍ତି, ଇଚ୍ଛା ବାପା ଯଦି ତାକୁ ପ୍ରବର୍ତ୍ତାଇ ପାରନ୍ତେ, ତେବେ ସେ ଏ ଦେଶରେ ରହି ଯାଆନ୍ତା ।

ଅମରେଶ ଆଇ. ଏ. ଏସ. ଛାଡ଼ିବା ଠାରୁ ପୁଅ ସମ୍ପର୍କରେ ସର୍ବଦା ଚୁପ୍‌ଚାପ୍ ବସିନବାବୁ । କେବେ କାହା ସହିତ ପୁଅ ବିଷୟରେ ଆଲୋଚନା

କରନ୍ତୁ ନ । ପ୍ରୋଫେସର ମେକଡୋନାଲଡ୍‌ଙ୍କଠାରୁ ପୁଅର ପ୍ରଶଂସା ଓ କାର୍ଯ୍ୟ-ଦକ୍ଷତା ଶୁଣି ମନେ ମନେ ଆନନ୍ଦିତ ହେଲେ । କେମ୍ବ୍ରିଜରେ ପୁଅର ସୁନାମ ଯେତେ ବଢ଼ୁଥାଏ, ବିପିନବାବୁ ପୁଅର ଧୂଙ୍କ କାର୍ଯ୍ୟକୁ ସେତେ ଆଶୋର ଦେଉ-ଥାନ୍ତି ଓ ପୁଅଠାକୁ ପୁଣି ଚିଠି ଲେଖିବା ଆରମ୍ଭ କରନ୍ତି । ପ୍ରୋଫେସର ମେକ-ଡୋନାଲ୍‌ଡ୍‌ଙ୍କ ଭିତର ଇଚ୍ଛା ବିପିନବାବୁ ଜାଣନ୍ତି, କିନ୍ତୁ ପୁଅକୁ କହିପାରନ୍ତି ନ । କାରଣ ସେ ଜାଣନ୍ତି, ପୁଅ ବଡ଼ ସ୍ୱାଧୀନ ମତବାଦୀ । ସେ ନିଜ ଇଚ୍ଛାରେ ଯାହା ଭଲ ପାଇବ କରିବ, କାହା ଇଚ୍ଛାରେ ପରିଚାଳିତ ହେବା ପିଲା ସେ ନୁହେଁ । ତା'ର କେମ୍ବ୍ରିଜରେ ରହିବା ଇଚ୍ଛା ଯଦି ନ ଥିବ ମେକଡୋନାଲ୍‌ଡ୍‌ କି ବାପାଙ୍କ ଇଚ୍ଛା ଅଛି ବୋଲି ସେ ରହିବ, ତାହା ନୁହେଁ ।

ପ୍ରୋଫେସର ମେକଡୋନାଲ୍‌ଡ୍‌ଙ୍କ ବହୁ ଅନୁରୋଧ ସତ୍ତ୍ୱେ ଅମରେଶ କେମ୍ବ୍ରିଜରେ ରହିବାକୁ ଇଚ୍ଛା ଦେଖାଇଲା ନାହିଁ । ପି. ଏଇଚ. ଡି. ପାଇ ସାରିବା ସଙ୍ଗେ ସଙ୍ଗେ ନିଜ ଦେଶକୁ ଫେରି ଆସିବା ଇଚ୍ଛା ପ୍ରୋଫେସରଙ୍କୁ ଜଣାଇ ଦେଲା । ପ୍ରୋଫେସର ପୋଷ୍ଟ ଡକ୍ଟରେଟ ବୃତ୍ତି ଦେଇ ତାକୁ ଆଉ କିଛିଦିନ କେମ୍ବ୍ରିଜରେ ରଖିବାକୁ ଚାହୁଁଥିଲେ ହେଁ, ସେ ତାକୁ ପ୍ରତ୍ୟାଖ୍ୟାନ କରି ନିଜ ଦେଶକୁ ଫେରିଆସିବାକୁ ଚାହିଁଲା ।

ଲଣ୍ଡନ ଉଡ଼ାଜାହାଜ ଘାଟିରୁ ମସ୍କୋ ଦେଇ ଦିଲ୍ଲୀରେ ପହଞ୍ଚି ସେଠୁ ପାଟନା ଆସିବା ଠିକ୍ ହୋଇଥାଏ । ପାଟନା ଉଡ଼ାଜାହାଜ ଘାଟିରେ ତାକୁ ସ୍ୱାଗତ କରିବା ପାଇଁ ବିପିନବାବୁ, ତାଙ୍କ ସ୍ତ୍ରୀ ଓ ତାଙ୍କର ବନ୍ଧୁ ବାନ୍ଧବ, ଜ୍ଞାତି କୁଟୁମ୍ବମାନେ ଉଡ଼ାଜାହାଜ ଘାଟିରେ ଭିଡ଼ ଜମାଇ ଥାନ୍ତି ।

ଯଥା ସମୟରେ ଇଣ୍ଡିଆନ ଏୟାର ଲାଇନ୍‌ସର ଉଡ଼ାଜାହାଜ ପାଟନା ଉଡ଼ାଜାହାଜ ଘାଟିରେ ଓହ୍ଲାଇଲା । ଧୀରେ ଧୀରେ ଜାହାଜରୁ ଯାତ୍ରୀମାନେ ଓହ୍ଲାଇଲେ । ଅମରେଶ ଏକ ଧୋତି ପଞ୍ଜାବୀ ପିନ୍ଧି ଉଡ଼ାଜାହାଜରୁ ଓହ୍ଲାଇ-ଆସିଲା । ଫୁଲହାର, ଫୁଲତୋଡ଼ା ଧରି ବନ୍ଧୁ ବାନ୍ଧବମାନେ ଉଡ଼ାଜାହାଜ ପାହାଚ ପାଖକୁ ଦୌଡ଼ିଗଲେ । ଅମରେଶ ଉଡ଼ାଜାହାଜରୁ ଓହ୍ଲାଇ ସବା ପହିଲେ ବାପା ବୋଉଙ୍କୁ ଭୂମିଷ୍ଠ ପ୍ରଣାମ କରାଇ ଅନ୍ୟମାନଙ୍କୁ ସାଦର ପ୍ରଣାମ ଜଣାଇଲା । ଚାରିବର୍ଷ ବିଚ୍ଛେଦ ପରେ ପୁଅକୁ ଦେଖି ବିପିନବାବୁ ତାକୁ କୁଣ୍ଢାଇ ପକାଇଲେ ।

ପାଟନାରେ ଦିନଟାଏ ରହି ବିପିନବାବୁ ଓ ତାଙ୍କ ସ୍ତ୍ରୀ ପୁଅକୁ ଧରି ରାଞ୍ଚି ଚାଲିଆସିଲେ । ପୁଅର ବିଲାତ ଦେଶର ଅଭିଜ୍ଞତା ସାଇପଡ଼ଶା ବନ୍ଧୁ ବାନ୍ଧବ ଶୁଣୁଶୁଣୁ ସାତ ଦିନ କାଳ ମହା ଆନନ୍ଦରେ କଟିଗଲା । ମା, ବାପ; ଭଉଣୀ ପାଇଁ ଯାହା ଯାହା ବିଦେଶୀ ଉପହାର ସବୁ ଆଣିଥିଲା ସେ ସବୁ ଦେଇ ସାରିଲା ପରେ ମୁଣ୍ଡରେ ଚିନ୍ତା ପଶିଲା, ଚାକିରି ତ ନାହିଁ ସେ ବର୍ତ୍ତମାନ କ'ଣ କରିବ ? ବିଲାତରୁ ଚାକିରି ପାଇଁ ଦିଲ୍ଲୀକୁ ଦେଇଥିବା ଚିଠି ଉପରେ କିଛି କାର୍ଯ୍ୟାନୁଷ୍ଠାନ କରାଯାଇନି । ବିପିନବାବୁ ପୁଅକୁ ବେକାରରେ ବସିବାକୁ ନ ଦେଇ ଡ. ପି. ଆଇ.ଙ୍କୁ କହି ରାଞ୍ଚି କଲେଜରେ ଏକ ଅସ୍ଥାୟୀ ଲେକଚରର ଚାକିରି ଠିକ୍ କରିଦେଲେ ।

ଇତି ମଧ୍ୟରେ ପାଟନା ସାଏନ୍ସ କଲେଜରେ ରିଡ଼ର ଚାକିରି ଖୋଲିଲା ! ପୁଅର ତ ବିଦେଶୀ ଡ଼ିଗ୍ରୀ, ଅତି ଉତ୍ତମ କେରିୟର, ସେହି ରିଡ଼ର ପୋଷ୍ଟ ମିଳିବାରେ କିଛି ଅସୁବିଧା ହେଲାନି ।

ବିପିନବାବୁ ଓ ତାଙ୍କ ସ୍ତ୍ରୀଙ୍କର ମନ ଭରି ଖୁସି, ପୁଅ ଯାହା ହେଉ ଭଲ ଚାକିରିଟିଏ ପାଇଗଲା । ଏତେ ଅଳ୍ପ ବୟସରୁ ଯଦି ସେ ରିଡର ହୋଇଯାଏ ତେବେ ତା'ର ଭବିଷ୍ୟତ କମ୍ ଉଜ୍ଜ୍ୱଳ ନୁହେଁ । ଅନ୍ୟୁନ ପକ୍ଷେ ସେ ତ ଡ. ପି. ଆଇ. ହୋଇପାରିବ । ଇତିମଧ୍ୟରେ ବିପିନବାବୁଙ୍କର ବଦଳି ହୋଇଗଲାଣି । ସେ ରାଞ୍ଚି କଲେଜର ପ୍ରିନ୍ସିପାଲ ପୋଷ୍ଟ ଛାଡ଼ି ମୁଙ୍ଗେର କଲେଜରେ ପ୍ରିନ୍ସିପାଲ ହେଲେଣି । ମନରେ ଆନନ୍ଦ ପୁଅଠାରୁ , ଆଉ ଭଲା ଏତେ ଦୂରରେ ନାହାନ୍ତି ।

ପାଟନା ସାଏନ୍ସ କଲେଜରେ ଅବସ୍ଥାପିତ ହେବା ପରେ ଅମରେଶ କେମ୍ବ୍ରିଜରେ ଯେଉଁ ଗବେଷଣା କରିଥିଲା, ସେହି ଗବେଷଣା ଏଠି ଆରମ୍ଭ କରିବାକୁ ଚେଷ୍ଟା କଲା । ସେଥିପାଇଁ ଅର୍ଥ ଦରକାର । ସରକାରଙ୍କ ଗବେଷଣା ପରିଷଦକୁ ଆର୍ଥିକ ସାହାଯ୍ୟ ପାଇଁ ଯୋଜନା ଓ ଦରଖାସ୍ତ ପଠାଇଲା । ମନ୍ତ୍ରୀ ଓ ଡ: ପି ଆଇ: ଅମରେଶ ପ୍ରତି ଶୁଭଦୃଷ୍ଟି ଦେଇଥିବାରୁ ସଙ୍ଗେ ସଙ୍ଗେ ଆର୍ଥିକ ସାହାଯ୍ୟ ମିଳିଗଲା । ବିଦେଶରୁ ନାନାଦି ଯନ୍ତ୍ରପାତି ମଗାଇ ନିଜ ଗବେଷଣା ଖୁବ୍ ଜୋରସୋରରେ ଆରମ୍ଭ କରିଦେଲା । ଏଥିପୂର୍ବରୁ ଗବେଷଣାରେ ପାଟନା ସାଏନ୍ସ କଲେଜର ଯେଉଁ ସୁନାମ ଥିଲା ତାହା ଆହୁରି ବଢ଼ିଗଲା ଅମରେଶର ଉଚ୍ଚ ଦରର ଗବେଷଣା ଫଳରେ । କେମ୍ବ୍ରିଜରେ ଯେଉଁ ଧରଣର ଗବେଷଣା ଚାଲିଛି, ପାଟନାରେ ସେହି ଧରଣର ଗବେଷଣାର ଆରମ୍ଭ ଦେଖି ଅନ୍ୟମାନେ ତାଟଙ୍କା

ହେଲେ । ଅମରେଶର ଅଧ୍ୟାପକ ଭାବରେ ଭଲ ସୁନାମ ଥିଲା, ବର୍ତ୍ତମାନ ଗବେଷଣାରେ ତାର ସୁନାମ ଅଧ୍ୟାପକମାନଙ୍କ ଭିତରେ ତାର ସ୍ଥାନ ବହୁତ ଉପରକୁ ଉଠାଇ ଦେଲା ।

× × ×

"ତୁମକୁ ମୁଁ କେଉଁଠି ଦେଖିଲି ଦେଖିଲି ଭଳି ମନେ ହେଉଛି । କିନ୍ତୁ କେଉଁଠି ଠିକ୍ ମନେ ପଡୁନି । କହିଲ ତୁମକୁ ମୁଁ କେଉଁଠି ଦେଖିଥିଲି ।

"ସାର୍, ମୋ ନାଁ ହେଉଛି ଶୁଭ୍ରା । ରାମଦାସ କଲେଜରେ ଆଜକୁ ପାଞ୍ଚବର୍ଷ ତଳେ ଯେଉଁ ଛାତ୍ର ଧର୍ମଘଟ ହୋଇଥିଲା, ସେତେବେଳେ ଆପଣ ଥାନାରେ— ।

"ହଁ, ହଁ, ଠିକ୍ ମନେପଡିଗଲା ମୋର । ହଁ, ହଁ, ତୁମେ ଶୁଭ୍ରା ।"

କିନ୍ତୁ, ଗୋଡ଼ ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଦୁଇ ଗୃରିଥର ଅନାଇ ଅମରେଶ କହିଲା, "ତୁମ ପୋଷାକ ପରିଚ୍ଛଦ କ'ଣ ପୂରାପୂରି ବଦଳି ଯାଇଛି ? ତୁମର ସେ ଆମେରିକାନ ପୋଷାକ ତ ଆଜି କ'ଣ ନାହିଁ ? ତୁମେ କ'ଣ ଭାରତୀୟ ପୋଷାକରେ ଦେହକୁ ଗୋଟାସାରା ଆଚ୍ଛାଦନ କରି ଆସିଛ, ଭାରତୀୟ ସଂସ୍କୃତି ଓ ପରମ୍ପରାକୁ ଯଥେଷ୍ଟ ସମ୍ମାନ ଦେଇ ? ସେ ଶୁଭ୍ରା ଓ ଏ ଶୁଭ୍ରା ଭିତରେ ମୁଁ ଦେଖୁଛି ଆକାଶ ପାତାଳ ପ୍ରଭେଦ, ମାନେ ସୁମେରୁ ଆଉ କୁମେରୁ ?

ସାର୍, ସେତେବେଳେ ମୁଁ ଆପଣଙ୍କ ଉପଦେଶକୁ ମନେ ମନେ ହସୁଥିଲି । କିନ୍ତୁ ଧର୍ମଘଟର ଅବସାନ ପରେ ମୁଁ ଉପଲବ୍ଧି କଲି ଆପଣଙ୍କ ଉପଦେଶର ଯଥାର୍ଥତା । ବାସ୍ତବିକ ମୁଁ ଲଜ୍ଜିତ ସାର୍, ସେଭଳି ପୋଷାକ ପିନ୍ଧୁଥିଲି ବୋଲି ।

"ଭଲ ହୋଇଛି, ମିସ ଶୁଭ୍ରା ମାଲହୋତ୍ରା—।"

"ସାର୍, ମୋତେ ଏମିତି କ'ଣ କହୁଛନ୍ତି ?

ତୁମର ମନେ ଅଛି ନା, ମୁଁ ତୁମକୁ ସେଦିନ ଥାନାରେ ଶୁଭ୍ରା ଦେବୀ ବୋଲି ସମ୍ବୋଧନ କରିଥିବାରୁ ତୁମେ ମୋତେ ସଂଶୋଧନ କରି—।"

ସାର, ଆପଣ କ'ଣ ସେ କଥା ମନେ ରଖିଛନ୍ତି ଏତେ ଦିନ ଯାଏ ? ମୁଁ ବଡ଼ ଲଜ୍ଜିତ ମୋର ସେ ବ୍ୟବହାର ପାଇଁ; ଅନୁତପ୍ତ ମଧ୍ୟ ।

ତୁମେ ସେତେବେଳେ କଣୋଖଣ୍ଟ ଥିଲ ଶୁଭ୍ରା, ମୋ ଉପଦେଶର ଗୁରୁତ୍ୱ ଉପଲବ୍ଧି କରି ପାରି ନଥିଲ । ବର୍ତ୍ତମାନ ତୁମେ ଯୁବତୀ, ବିଷୟଗୁଡ଼ାକୁ ବେଶ୍ ହୃଦବୋଧ କରିପାରିବ ବୋଲି ଶୁଣି ଖସି ହେଲି ।

"ତେବେ ତୁମର ମୋ ଠାକୁ ଆସିବା ଅଭିପ୍ରାୟ ?"

ସାର, ମୁଁ ଆପଣଙ୍କ ଅଧୀନରେ ପିଏଇଚ୍‌ ଡ଼ି ପାଇଁ ଗବେଷଣା କରିବ ।"

ତୁମେ ପିଏଇଚ ଡ଼. କରିବ ? ପିଏଇଚ ଡ଼. ? ପିଏଇଚ ଡ଼: ଗୋଟେ ଆଡ଼େ; ତୁମେ ତ ଅନ୍ୟ ଆଡ଼େ ?"

"ନାଁ, ସାର ମୁଁ ଗତ ବର୍ଷ ପାଟନା କଲେଜର ରସାୟନ ବିଜ୍ଞାନରେ ଏମ୍ ଏସ୍‌ସିରେ ଫାଷ୍ଟ କ୍ଲାସ ଫାଷ୍ଟ ହୋଇ ପାସ କରିଛି । ମୋତେ ଆପଣଙ୍କ ଗବେଷଣା ଛାତ୍ରୀ ଭାବରେ ଗ୍ରହଣ କଲେ, ମୁଁ ଅତ୍ୟଧିକ କୃତଜ୍ଞ ହେବି ସାର ।"

ତୁମେ ଫାଷ୍ଟ କ୍ଲାସ ଫାଷ୍ଟ ହୋଇଛ ଏମ୍ ଏସ୍ ସିରେ ? ରସାୟନ ବିଜ୍ଞାନରେ ? ପୁଣି ଏହି କଲେଜରୁ ? ମୁଁ ସ୍ୱପ୍ନ ଦେଖୁନାହିଁ ତ ?"

ନାଁ, ସାର, ବିଶ୍ୱାସ ଆସୁନି ବୋଧହୁଏ ?

ତୁମେ ଫାଷ୍ଟ କ୍ଲାସ ଫାଷ୍ଟ, ମାନେ ଗୋଲଡ଼୍ ମେଡ଼ାଲିଷ୍ଟ । ତୁମ ଭଳି ପିଲା କେବେ ଗୋଲ୍‌ଡ଼୍ ମେଡ଼ାଲିଷ୍ଟ ହୋଇପାରେ ?

ଆପଣଙ୍କର ମୋ ଉପରେ ଏକ ଖରାପ ଧାରଣା ମୂଳରୁ ରହିଯାଇଛି ସାର୍ ! ସେଥିପାଇଁ ବିଶ୍ୱାସ ହେଉନି ଆପଣଙ୍କର । ମୋର ପୂର୍ବ ବ୍ୟବହାରକୁ ମନେ ପକାଇ ଆପଣ ପଛୁଉଛନ୍ତି ମୋତେ ଗ୍ରହଣ କରିବା ପାଇଁ । ମୋର ଏହା ଭିତରେ ଯଥେଷ୍ଟ ପରିବର୍ତ୍ତନ ହୋଇ ଯାଇଛି ସାର୍ । ମୁଁ ମୋର ସେହି ପଶ୍ଚାତ କୃତି ପାଇଁ ବିଶେଷ ଭାବରେ ଅନୁତପ୍ତ । ଆପଣଙ୍କର ସେହି କଡ଼ା ତାଗିଦ୍ ମୋତେ ଠିକ୍ ବାଟକୁ ଆଣିପାରିଛି ସାର୍ ।"

"ତୁମେ ତ ଜାଣ ଶୁଭ୍ରା, ମୁଁ କୌଣସି ଝିଅପିଲାଙ୍କୁ ମୋ ଅଧୀନରେ ଗବେଷଣା କରିବା ପାଇଁ ନିଏନି । ତୁମେ ଏହା ଜାଣିଶୁଣି ମୋ ଠାକୁ କେମିତି ଆସିଛ, ମୁଁ ବୁଝିପାରୁନି । ମୁଁ ଯେଉଁ ଜୈବରସାୟନରେ ଗବେଷଣା କରୁଛି ସେହି ଜୈବ

ରସାୟନରେ ଆ ମାରକ ସାକ୍ସେନା, ଅଧ୍ୟାପକ ଭଣ୍ଡାରୀ ଆଦି ତ କାମ କରୁଛନ୍ତି । ସେମାନେ ମୋ ଠାରୁ ବହୁତ ସିନିୟର । ତୁମେ ମୋ ପାଖକୁ ନ ଆସି ସେମାନଙ୍କ ପାଖକୁ ତ ଯାଇ ପାରିଥାନ୍ତ ?

ହସିଲା ଶୁଭ୍ରା, ଏକ ସରଳିଆ ହସ, କହିଲା, "ସାର୍ ମୋ ଏମ୍.ଏସ୍.ସି. ଫଳ ବାହାରିଲା ଦିନଠାରୁ ଅଧ୍ୟାପକ ସାକସେନା ମୋତେ ବାଟରେ ଘାଟରେ ଯେଉଁଠି ଦେଖିଲେ, ତାଙ୍କଠାରେ ଗବେଷଣା କରିବା ପାଇଁ ଉପଦେଶ ଦେଲେ । ଇତି ମଧ୍ୟରେ ଆମ ଘରକୁ ଯାଇ ବାପାଙ୍କୁ ପ୍ରବର୍ତ୍ତାଇଲେ, ମୁଁ ତାଙ୍କଠା ର ଗବେଷଣା କରିବ ବୋଲି । ତାଙ୍କଠାରେ ଗବେଷଣା କରିବା ଅର୍ଥ ଭଣ୍ଡାରୀ । କାମ କରିବା ଦରକାର ନାହିଁ । ଖାଲି ନାମ ରେଜିଷ୍ଟ୍ରୀ କରି ଦେଇ ନିଜ କାମରେ ଯାଅ । ଦୁଇ ବର୍ଷ ଶେଷ ହେଲା ବେଳକୁ ଥିସିସ ଲେଖା ହୋଇ ଥିଆ ହୋଇଥିବ । ଖାଲି ଏହି ଥିସିସ ବାବଦକୁ ମାତ୍ର ପାଞ୍ଚ ହଜାର ଟଙ୍କା ଦେଇଦେ ଲି ହେଲା । ଏହାକୁ ସାର୍, ଭଣ୍ଡାରୀ କୁହାଯିବ ନାହିଁ ତ ଆଉ କଣ କୁହାଯିବ ?

ତା ଛଡ଼ା ଗବେଷଣା ବୃତ୍ତି ତାଙ୍କ ପାଖରେ ସବୁବେଳେ ଥିଆ । ଗବେଷଣା ବୃତ୍ତିର ଏକ ଚତୁର୍ଥାଂଶ ତାଙ୍କୁ ଦେଇଦେଲେ ସଙ୍ଗେ ସଙ୍ଗେ ବୃତ୍ତି ମିଳିଗଲା । କଣ୍ଟି-ଜେନ୍‌ସି ଟଙ୍କାତକ ସବୁ ତାଙ୍କର । ଏ ସବୁ ବ୍ୟତୀତ ତାଙ୍କ ଘରର ବଜାରସଉଦା ଠାରୁ ଆରମ୍ଭ କରି ପନିପରିବା କିଣା, ଗୋରୁଗାଈଙ୍କ ପାଇଁ ଗୋବିକଡ଼ ଚୂନ ଆଦି ଗୋଖାଦ୍ୟ ଖାଦ୍ ! ବେଳେ ବେଳେ ପିଲାପିଲିଙ୍କୁ ସ୍କୁଲ ନେବା ଆଣିବା କାମ, ଏପରିକି ଦରକାର ପଡିଲେ ପିଲାମାନଙ୍କ ଜୋତା ମରାମତି କାମ କରାଇବାକୁ ପଡ଼ିବ । ଏସବୁ ହେଲ ଗୁରୁ ସମ୍ମାନର ପ୍ରତୀକ ।

ଯେଉଁ ଗବେଷକ ଏସବୁ କାମ କରିବାକୁ ପଛାଇବ, ତା'ର ଗୁରୁ ସମ୍ମାନ ନାହିଁ ବୋଲି ଧରିନିଆ ଯିବ । ସେ କ୍ଷେତ୍ରରେ ଥିସିସ ବାବଦ ପ୍ରାପ୍ୟ ଦଶ ହଜାରକୁ ବଢ଼ିଯିବ । ଅବଶ୍ୟ ଝିଅ ପିଲାମାନଙ୍କୁ ଏ ସବୁ କରିବାକୁ ପଡ଼େ ନା । ତେବେ ଦୁଇ ତିନି ଦିନରେ ଥରେ ଲେଖାଏଁ ତାଙ୍କ ଘରକୁ ଯାଇ ତାଙ୍କ ମିସେସଙ୍କ ହାନି ଲଭ, ସୁବିଧା ଅସୁବିଧା ବୁଝିବାକୁ ପଡିବ । ଟେଲିବେଳେ ତାଙ୍କ ହାତରେ ନ ଯାଇ ତାଙ୍କ ପିଲାଙ୍କ ପାଇଁ ବିସ୍କୁଟ, ଚକଲେଟ୍ ନେବାକୁ ପଡିବ, ପିଲାମାନଙ୍କୁ କାଖ କୋଳ କରିବାକୁ ପଡ଼ିବ ।

ତାଙ୍କଠାରେ ମୋ ସାଙ୍ଗ ଇନ୍ଦ୍ରଶ୍ରୀ ଏବେ କାମ କରୁଛି । ତାକୁ ଦିନେ ପଚାରିଲି ଅଧ୍ୟାପକ ସାକ୍ସେନାଙ୍କ ପାଖରେ ସବୁବେଳେ ଗବେଷଣା ବୃତ୍ତି ମିଳୁଛି କେମିତି ?

•

ସେ ହସିଲା ମୋ ପ୍ରଶ୍ନରେ, କହିଲା, "ଅଧ୍ୟାପକ ସାକ୍ସେନାଙ୍କ ଭଳି ଯୋଗାଡ଼ିଆ ଲୋକ ଖୁବ୍ କମ୍ ଅଛନ୍ତି ଆମ କଲେଜରେ । ସେ ପ୍ରତି ଦୁଇ ତିନି ମାସରେ ଥରେ ଲେଖାଏଁ ଦିଲ୍ଲୀ ଯାଇ ସେଠା ଅଫିସରେ ବସନ୍ତି । କାହାକୁ ହୋଟେଲରେ, କାହାକୁ ରେଷ୍ଟୁରେଣ୍ଟରେ ଖୁଆଇ, କାହାକୁ ସିନେମା ଦେଖାଇ, କାହାକୁ ବିଭିନ୍ନ ପାନୀୟ ପିଆଇ, ବା କାହାକୁ କିଛି ଉପହାର ବା ଧାତଗୁଞ୍ଜା ଦେଇ ଖୁସି କରନ୍ତି । ତା'ପରେ ଯେତୋଟି ବୃତ୍ତି ତାଙ୍କର ଦରକାର ଥିବ, ସେହି ବୃତ୍ତିର ଶତକଡ଼ା ଦଶ ଭାଗ ଅର୍ଥ ଆଗତୁରା ନିଜ ହାତରୁ ଦେଇ ବୃତ୍ତି ନେଇ ଆସନ୍ତି ।

ତା'ପରେ ଏଠାରେ ଶତକଡ଼ା ପଚିଶ ଲାଭରେ ଗବେଷଣା ଛାତ୍ରଙ୍କୁ ବୃତ୍ତି ଗୁଡ଼ିକୁ ବିକି ଦିଅନ୍ତି । ତାଙ୍କ ଯୁକ୍ତି ହେଲା ସିଏତ ଏଥିପାଇଁ କିଛି ପଇସା ହାତରୁ ଖର୍ଚ୍ଚ କରିଛନ୍ତି । ତେଣୁ ସେ ନିଜେ ଏଥିରୁ କିଛି ଅର୍ଥ କାଟି ନ ନେଲେ ହେବ କେମିତି ? ଆମେ ପିଲାଏ ମଧ୍ୟ ସେଥିରେ ରାଜି ହୋଇଯାଉ । ଅନ୍ୟ କେଉଁଠି ତ ବୃତ୍ତି ପାଇ ନ ଥାନ୍ତୁ ଯା ହେଉ ଏଠିତ ମିଳିଯାଉଛି ।

"ଦେଖ ଶୁଭ୍ରା, ତୁମର ଗୁରୁମାନଙ୍କୁ ନିନ୍ଦା କରିବାର ଏକ ବଦଭ୍ୟାସ ଅଛି । ଯେତେହେଲେ ଡକ୍ଟର ସାକ୍ସେନା ତୁମର ଗୁରୁ । ତାଙ୍କ ନିନ୍ଦା ଆସି ମୋ ଆଗରେ କରିବା କେତେ ଖରାପ, ତୁମେ ବୁଝି ପାରୁନ ବୋଧହୁଏ ?

ତୁମେ ଆଜି ତାଙ୍କ ନିନ୍ଦା ମୋଠାରେ କରୁଛ, କାଲି ମୋ ନିନ୍ଦା ଯାଇ ଅନ୍ୟ କାହାଠାରେ କରିବ । ତେଣୁ ତୁମ ସଂସ୍ପର୍ଶରେ ଆସିବା ଅର୍ଥ ନିଜ ପ୍ରତି ବିପଦ ଟାଣି ଆଣିବା କଥା । ତୁମେ ଅତି ଶୀଘ୍ର ଏଠୁଁ ଗଲ ।

"ସାର୍, ଆପଣଙ୍କ ନିନ୍ଦା କରିବାକୁ ବହୁତ କମ୍ ଲୋକଙ୍କର ସାହସ ଅଛି । ଯେଉଁ ଅଧ୍ୟାପକମାନଙ୍କର ଗଳତି ଅଛି, ସେମାନଙ୍କୁ ସିନା କେହି ନିନ୍ଦା କରିବ, ଯେଉଁମାନେ ଏହାଠାରୁ ଢେର ଉଚ୍ଚରେ ସେମାନଙ୍କୁ ନିନ୍ଦା କରିବାକୁ ସାହସ କାହାର ?

ତୁମେ କଥା ବେଶ ବନେଇ ଚୁନେଇ କହିପାର । କେଉଁଠି କେଉଁ କଥା କୁହା ହେବା ଦରକାର, ତୁମକୁ ବେଶ୍ ଭଲ ଭାବରେ ଜଣା ।

"ମାତ୍ର, ଆପଣ ତ ସବୁବେଳେ ମୋ କଥାକୁ ପରିହାସ କରିବେ ।

ତୁମ ଗୁରୁମାନଙ୍କୁ ନିନ୍ଦା କରିବାକୁ ତୁମକୁ ଟିକିଏ ସଙ୍କୋଚ ଲାଗେନି ଶୁଭ୍ରା ?

"ମୁଁ କହନ୍ତି ନାହିଁ ସାର୍ ସେମାନଙ୍କର ବ୍ୟବହାର ମୋତେ କହିବାକୁ ବାଧ୍ୟ କରୁଛି । ପ୍ରୋଫେସର ଭଣ୍ଡାରୀଙ୍କ ଗବେଷଣାରେ ଯେଉଁ ସୁଖ୍ୟାତି, ସେଥିରେ ସେ ଯାଇ ବାପାଙ୍କ ପାଖରେ କହିଛନ୍ତି, ମୁଁ ତାଙ୍କଠାରେ ଗବେଷଣା କରିବି ବୋଲି । ତାଙ୍କର ଅସତ୍ ଚରିତ୍ର ଯୋଗୁଁ ତାଙ୍କ ପାଖ କେହି ଝିଅ ମାଡୁ ନାହାନ୍ତି । ସେଥିରେ ସେ ମୋ ତ ନେବାପାଇଁ କେମିତି ଯାଇ ବାପାଙ୍କୁ କହିଲେ ମୁଁ ତାହାହିଁ ଭାବି ଆଶ୍ଚର୍ଯ୍ୟ ହେଉଛି । ଆଜିକାଲି କୌଣସି ଭଦ୍ରଘରର ଝିଅ ତାଙ୍କୁ ସାକ୍ଷାତ କରିବାକୁ ଡରନ୍ତି, ଗବେଷଣା ତ ଦୂରର କଥା । ଗୁରୁ ହୋଇ ଛାତ୍ରୀମାନଙ୍କ ପ୍ରତି ତାଙ୍କ ବ୍ୟବହାର ଅତି ଅଶ୍ଳୀଳ ଓ ଜଘନ୍ୟ । ସେ ଭାବନ୍ତି, ତାଙ୍କ ଗବେଷଣା ଛାତ୍ରୀମାନେ ତାଙ୍କ ସହିତ ହୋଟେଲ ଯାଆନ୍ତେ, ସିନେମା ଯାଆନ୍ତେ କ୍ଲବ ଯାଆନ୍ତେ, ନାଚନ୍ତେ । ତା ଛଡ଼ା···।"

"ଥାଉ ଥାଉ ଶୁଭ୍ରା, ଫେର ସେହି ଗୁରୁ ନିନ୍ଦା । ଦେଖ, ତୁମେ ଏବେ ଏଠିକି କେଉଁ ଶିକ୍ଷକଙ୍କ ନାଁରେ ମୋ ଠାରେ କିଛି କହିବ ନାହିଁ । ଏହା ଭାରି ଖରାପ କଥା । ଗୁରୁ ନିନ୍ଦା ନର୍କେବାସ । ତୁମେ କ'ଣ ଜାଣିନ ?

"ନାଁ, ସାର ଆଉ କହିବ ନି । ଏଥର କାନ ମୋଡ଼ ହେଉଛି । ଆପଣଙ୍କ ଆଗ ରେ ମୁଁ କହନ୍ତିନ ସାର, ସେମାନଙ୍କ ବ୍ୟବହାର ମୋତେ ସେମାନଙ୍କ ନାଁରେ କହିବାକୁ ବାଧ୍ୟ କରୁଛି । ମୁଁ କାହା ପାଖରେ ଗବେଷଣା କରିବି ନ କରିବି ସେ ଟା ମୋର ବ୍ୟକ୍ତିଗତ ଇଚ୍ଛା । ସେମାନେ କାହିଁକି ବାପାଙ୍କୁ ଯାଇ ବାରମ୍ବାର କହିବେ ମୁଁ ସେମାନଙ୍କ ପାଖରେ ଗବେଷଣା କରିବି ବୋଲି ?

ବାପା ସେମାନଙ୍କୁ ମଧ୍ୟ ବେଶ ଭଲ ଭାବରେ ଚିହ୍ନି ଗଲେଣି । କାଲି ମୋତେ କହୁଥିଲେ "ଦେଖ୍, ମା, ମୁଁ ବର୍ତ୍ତମାନ ଏହି ଅଧ୍ୟାପକମାନଙ୍କ ନାଁରେ ଯେଉଁ କଦର୍ଯ୍ୟ କଥା ସବୁ ଶୁଣୁଛି ସେଥିରେ ତୋତେ ଗବେଷଣା

ବିଗରେ ପଠାଇବାକୁ ମୋର ମୋଟେ ଇଚ୍ଛା ହେଉ ନାହିଁ । ତେବେ ତୁ ଯଦି ଗବେଷଣା କରିବାକୁ ଏକାନ୍ତ ଜିଦ୍ ଧରୁ, ତେବେ ଡକ୍ଟର ଦାସଙ୍କ ପାଖରେ ଗବେଷଣା କର । ସେ ହେଲେ ସାରା କଲେଜରେ ଗୋଟିଏ ମଣି । ସେ ଯଦି ତୋତେ ନଅନ୍ତି ଭଲ କଥା, ନଚେତ୍ ତୋର ଗବେଷଣା ବନ୍ଦ । କେମ୍ବ୍ରିଜରେ ମୁଁ ତାଙ୍କର ଯେଉଁ ଅପୂର୍ବ ପ୍ରଶଂସା ଶୁଣି ଆସିଛି, ତାଙ୍କ ଭଳି ବୈଜ୍ଞାନିକ ଆମ ଦେଶରେ ବିରଳ ।

•

ହସିଲ ଅମରେଶ, "ତୁମର ପରିବର୍ତ୍ତନ ଓ ପ୍ରଗଳଭତା ଦେଖି ମୁଁ ଖୁସି ହେଉଛି ଶୁଭ୍ରା । ହେଲେ, ତୁମକୁ ଗବେଷଣା ଛାତ୍ରୀ ଭାବରେ ନେବା ପାଇଁ ମୋ ମନ ହେଉନି । ମୋ ଧାରଣା ଝିଅମାନେ ଗବେଷଣା କରିବା ଉଚିତ ନୁହେଁ । ସେମାନେ ଯଦି ଗବେଷଣା କରିବେ, ତେବେ ଘର ସଂସାର କଥା ବୁଝିବ କିଏ ? ସେଥିପାଇଁ ମୁଁ ଝିଅମାନଙ୍କୁ ନେବାକୁ ରାଜି ନୁହେଁ ।

ଶୁଭ୍ରା ମୁହଁ ଶୁଖାଇ କହିଲା, "ହେଉ ସାର, ଆପଣଙ୍କ ଇଚ୍ଛା ବିରୁଦ୍ଧରେ ମୋର କିଛି କହିବାର ନାହିଁ ।" ଏତିକ କହି ମୁହଁ ଶୁଖାଇ ନମସ୍କାର ଜଣାଇ ବାହାରିଗଲା ଶୁଭ୍ରା ।

ଅତି ବିଷର୍ଣ୍ଣ ବଦନରେ ଶୁଭ୍ରାକୁ ଫେରିଯିବାର ଦେଖି ଅମରେଶର ଦୟା ହେଲା । ସେ ପଛରୁ ଡାକି କହିଲା, "ଦେଖ ଶୁଭ୍ରା, ଖାଲି ତମରି ପାଇଁ ମୁଁ ମୋର ମତ ବଦଳାଇବାକୁ ବାଧ୍ୟ କଲି । ତେବେ ଗୋଟିଏ ସର୍ତ୍ତରେ । ତୁମେ ଏଠି ଯେତେବେଳେ ଗବେଷଣା କରିବ ଖୁବ୍ କମ୍ କଥା କହିବ ଓ ଗୁରୁମାନଙ୍କ ନିନ୍ଦା ଏଠି କେବେ ଯେମିତି ନ କର । ଯେଉଁଦିନ ଏଠି ଗୁରୁଙ୍କ ନିନ୍ଦା କଲ ବୋଲି ଜାଣିବି, ସେହି ଦିନଠାରୁ ତୁମ ଗବେଷଣା ବନ୍ଦ । ଏଥିରେ ତୁମେ ରାଜି ତ ?

"ହେଉ ସାର, "ଶୁଖିଯାଇଥିବା ମୁହଁ ତାର ଆନନ୍ଦରେ ପୁଣି ଉଜ୍ଜ୍ୱଳ ହୋଇ ଉଠିଲା ।

"କିନ୍ତୁ ତୁମେ ବୃତ୍ତି ପାଇଁ ଦରଖାସ୍ତ କରିଛ ? ମୋ ଠାରେ ତ ସାଲ୍‌ସେନାଙ୍କ ଭଳି କିଛି ବୃତ୍ତି ନାହିଁ ।"

ମୋର ବୃତ୍ତି ଦରକାର ନାହିଁ ସାର । ମୁଁ ବିନା ବୃତ୍ତିରେ ଗବେଷଣା କରିବି । ମୋ ବାପା ମୋ ପାଇଁ ଯେତେ ଅର୍ଥ ଦରକାର, ବ୍ୟୟ କରିବାକୁ

ପ୍ରସ୍ତୁତ । ଗବେଷଣା ପାଇଁ ଯେଉଁ ଯନ୍ତ୍ରପାତି ବା କେମିକାଲ ଦରକାର, ତାହା ପୃଥିବୀର ଯେଉଁ କୋଣରେ ମିଳୁଥିଲେ ବି ସେ ଆମକୁ ଆଣି ଯୋଗାଇ ଦେଇ ପାରିବେ ।

ସେ ତ ହେଲେ ଆହୁରି ବିପଦ । ମୋତେ ତ ଧନେ ତୁମେ ବାନ୍ଧିବ ସୁଗଲ ଜିନିଷ ଦେଇ ।”

ହସିଲା ଶୁଭ୍ରା, “ମୋ ବାପା ବର୍ତ୍ତମାନ ପୂର୍ବ କାରବାର ଛାଡ଼ି ଦେଇଛନ୍ତି ସାର । ସେ ବର୍ତ୍ତମାନ ଭାରତ ସରକାରଙ୍କର ଏକ୍ସପୋର୍ଟର-ଇମ୍ପୋର୍ଟର ଭାବରେ ଆତ୍ମମାତ୍ରବର୍ତ୍ତୀ ମୁକ୍ତ ବ୍ୟବସାୟ କରୁଛନ୍ତି । ଆପଣ ମୋତେ ଯେଉଁଦିନ ଆରେଷ୍ଟ କରି ଥାନା ହାଜତରେ ରଖିଦେଲେ, ସେହିଦିନଠାରୁ ବାପାଙ୍କ ମନରେ କି ଏକ ପରିବର୍ତ୍ତନ ଆସିଲା କେଜାଣି, ଯା ଫଳରେ ସେ ପୂର୍ବ ବ୍ୟବସାୟ ପୁରାପୁରି ଛାଡ଼ି ଦେଇ ବର୍ତ୍ତମାନର ବ୍ୟବସାୟକୁ ଧରିଲେ ।

ବାପାଙ୍କର ଆପଣଙ୍କ ପ୍ରତି ଅଶେଷ ସମ୍ମାନ ରହିଛି । ସେ କହନ୍ତି ଯେଉଁ ଲୋକ ଆଇ. ଏ. ଏସ. ଚାକିରୀକୁ ଛାଡ଼ି ଦେଇ ଗବେଷଣାକୁ ଆଦରି ନେଇପାରନ୍ତି ସେ ସାମାନ୍ୟ ଲୋକ ନୁହନ୍ତି ମା । ମଣିଷରେ ରହିଥିବା ମଣିଷର ମହାନୁଭବତା ବଡ଼ ଜିନିଷ । ପଦ ପଦବୀ ବଡ଼ ଜିନିଷ ନୁହେଁ ମା । ଆଜିକାଲିକା ଟୋକାଗୁଡ଼ାଙ୍କର ନିଜତ୍ୱ ବୋଲି କିଛି ନାହିଁ, ପଦପଦବୀ ଆଶାରେ ଆଇ. ଏ. ଏସ ପଛରେ ଗୋଡ଼ାଉଛନ୍ତି । ଅମରେଶବାବୁ ସାଧାରଣ ମଣିଷ ଠାରୁ ଢ଼େର ଉଚ୍ଚରେ, ତାଙ୍କ ପାଦ ଧୂଳି ନେବା କଥା ମା ।

\+ \+ \+

ସ୍ମିତା ଘରେ ଅମରେଶଙ୍କୁ ନେଇ ବହୁ ବାକ ବିତଣ୍ଡା ଉଠେ । ଡକ୍ଟର କାନ୍ତ ପ୍ରସାଦ ଅମରେଶ ଆଇ. ଏ. ଏସ, ଚାକିରୀ ଛାଡ଼ି ଦେଲା ପରେ ତା' ନାଁ ଜୋଇଁ ତାଲିକାରୁ କାଟି ଦେଇଥାନ୍ତି । କିନ୍ତୁ ମିସେସ ପ୍ରସାଦ ଅମରେଶ ଉପରେ ଅତ୍ୟନ୍ତ ଖୁସି । ମିସେସ ପ୍ରସାଦ ମଣିଷ ଚିହ୍ନନ୍ତି, ପଦ ପଦବୀକୁ ଚିହ୍ନନ୍ତି ନାହିଁ । ଅମରେଶ ଭଳି ପାତ୍ର ସାରା ଦେଶରେ ବିରଳ । ଭାଗ୍ୟରେ ଥିଲେ ତା' ଭଳି ପାତ୍ର ଝିଅ ପାଇଁ ମିଳିବ । କଥା ପଡ଼ୁ ପଡ଼ୁ ଧନେ ଡ଼କ୍ଟର ପ୍ରସାଦଙ୍କ ଆଗରେ ଅମରେଶ ସହିତ ସ୍ମିତାର ବିବାହର ପ୍ରସ୍ତାବ ବାଢ଼ି ବସିଲେ ମିସେସ୍ ପ୍ରସାଦ ।

ହସିଲେ ଡକ୍ଟର ପ୍ରସାଦ, "ଅମରେଶ ଅତି ଭଲ ପିଲା । ତା'ଉପରେ ମୋ ଆଖି କଣ୍ଟି ଦିନ ତଳେ ଥିଲା । ସେ ଯେତେବେଳେ ଆଇ.ଏ.ଏସ, ପାଇଲା, ଭାବିଥିଲି ତାକୁ ଜୋଇଁ କରିବି ବୋଲି । କିନ୍ତୁ ଯେତେବେଳେ ସେ ଆଇ:ଏ ଏସ. ଚାକିରିକୁ ଛାଡ଼ିଦେଇ ଗବେଷଣା ପଛରେ ଧାଇଁଲା ମୁଁ ଭାବିଲି ପିଲାଟା ପାଗଲା । ଏଭଳି ପିଲା ହାତରେ ନିଜ ଝିଅକୁ ଦେଇ ଲି ସେ ତାକୁ ଯେ କେଉଁ ଦିନ ଦାଣ୍ଡରେ ବସାଇବ ତାର ନିଶ୍ଚିତ ନାହିଁ । ଆଇ:ଏ ଏସ, ଚାକିରିରୁ ଇସ୍ତଫା ଦେଇ ଯେ ଶିକ୍ଷକ ଚାକିରିକୁ ଆଦରି ନିଏ. ସେ ବିକୃତ ମସ୍ତିଷ୍କ ବୋଲି ମୁଁ ଧରିନିଏ । ସେ ସମ୍ଭବତଃ ବୁଝି ନାହିଁ, ଶିକ୍ଷା ବିଭାଗରେ ଚାକିରି କରି ବୈଜ୍ଞାନିକ ହିସାବରେ ଯେତେ ନାଁ କଲେ ବି ସେ ସେହି ଆଇ: ଏ. ଏସ,ଙ୍କ ଗୋଡ଼ ତଳକୁ । ତାର ମେଧାଶକ୍ତି ପୃଥିବୀ ବିଖ୍ୟାତ ହେଉ ପଛକେ, ଯାହା ପୃଥିବୀର ସମ୍ମାନ ତା' ଗୋଡ଼ ତଳେ ଲୋଟିପଡ଼ୁ ପଛକେ ତା ର ପ୍ରମୋସନ, ଇନକ୍ରିମେଣ୍ଟ ଆଦି ପାଇଁ 'ସେ ସେହି ଆଇ:ଏ, ଏସ ଙ୍କ ହାତକୁ ଅନାଇ ବସିବ । ପିଲାଟାର ମୁଣ୍ଡ ର ଗୋଳମାଳ ନଥିଲେ ସେ କଣ ଏ ଭଳି ଭୁଲ କରି ବସିଥାନ୍ତା ? ଏତେ ଅବ୍ୟବସ୍ଥିତ ଚରିତ୍ର ପିଲାଟାକୁ ଜୋଇଁ କରି ତୁମେ କ'ଣ ତୁମ ଝିଅର ଭବିଷ୍ୟତକୁ ଅନ୍ଧକାରମୟ କରିଦେବାକୁ ଚାହୁଁଛ ?

ଡକ୍ଟର ପ୍ରସାଦଙ୍କ କଥାରେ ମିସେସ ପ୍ରସାଦ ଚୁପ୍ ରହନ୍ତି । ଭାବନ୍ତି, ହଁ ସତେ ତ ଅତି କମ୍‌ରେ ଆଇ.ଏ.ଏସ୍. ନ ହେଲେ ସେ କ'ଣ ଝିଅକୁ ତା ହାତରେ ଦେଇ ନିଶ୍ଚିନ୍ତ ହୋଇ ବସିପାରିବେ ? ତାଙ୍କର ଗୋଟିଏ ବୋଲି ସୁନାନାକୀ ଝିଅ, ତାକୁ କଣ ମ୍ୟା ତା ହାତରେ ଦେଲେ ସେ ସୁଖୀ ହୋଇପାରିବ ? ଅବଶ୍ୟ ଅମରେଶ ଆଇ ଏ ଏସ ମାନଙ୍କ ଠାରୁ ବହୁତ ଉପରେ. କାରଣ ସେ ଆଇ.ଏ.ଏସ. ଚାକିରିକୁ ଛାଡ଼ିଦେଇ ଅଧ୍ୟାପକ ଚାକିରିକୁ ଆଦରି ନେଇଛନ୍ତି । ହେଲେ ସେ ସରକାରୀ ପଦବୀରେ ଆଇ:ଏ.ଏସ ଙ୍କ ତଳେ ତଳେ । ତା'ର ମେଧାଶକ୍ତି ଥାଇ, ତାଙ୍କର କି ଲାଭ ? ଜଣେ ଆଇ. ଏସ. ଅଫିସର ତାଙ୍କ ଝିଅକୁ ଯେତେ ସୁଖରେ ରଖିପାରିବ, ଜଣେ କଲେଜ ଶିକ୍ଷକ କ'ଣ ସେମିତି ରଖିପାରିବ ? ବଡ଼ ବଡ଼ ବଙ୍ଗଳା, ମଟର ଗାଡ଼ି, ଗଣ୍ଡା ଗଣ୍ଡା ପିଅନ ଚପରାଶୀ ଜଣେ ଅଧ୍ୟାପକ ଘରେ ମିଳିବେ କୁଆଡ଼ୁ ?

× × ×

ଝାଳ ଗମଗମ ଦେହରେ ଅମରେଶ ଗବେଷଣାଗାର ଭିତରକୁ ପଶିଆସିଲା ବେଳକୁ ଶ୍ରୁତି ଟେବୁଲ ଉପରେ ଗ୍ରିଗ୍‌ନାର୍ଡ କନଡେନସେସନ ପାଇଁ ଯନ୍ତ୍ର ସବୁ

ସଜାଡୁ ଥିଲା । ଅମ ରଣଙ୍କୁ ଏଭଳି ଅବସ୍ଥାରେ ଦେଖି ଝଟ୍ କି ଶୁଭ୍ରା ତାଙ୍କ ପାଖକୁ ଦୌଡ଼ି ଆସି ଫେନ୍ ଖୋଲି ଦେଇ କହିଲା "ସାର୍, ଆପଣ ବର୍ତ୍ତମାନ କୁଆଡ଼େ ବେଶି ଦୂରକୁ ଯାଇଥିଲେ ନା କ'ଣ ? ଏହି ଗରମରେ ଆପଣଙ୍କ ଗୋଟାସାରା ଦେହ ଝାଳରେ ଭିଜି ଯାଇଛି ।

"ହଁ, ଶୁଭ୍ରା ବେଶି ଦୂର ନୁହେଁ, ଦୁଇ ତିନ ମାଇଲ ହେବ । ବଡ଼ ଶୋଷ, ରେଫ୍ରିଜେରେଟରରୁ ଗିଲାସେ ଥଣ୍ଡାପାଣି ଆଣିବ ?

"ନାଁ ସାର୍ ହଠାତ୍ ଗରମରୁ ଆସି ଥଣ୍ଡା ପାଣି ପିଇଦେଲେ ଥଣ୍ଡା ଧରିଯିବ । ଟିକିଏ ସମ୍ଭାଳି ଯାଆନ୍ତୁ, ଆଉ ଟିକିଏ ପରେ ପାଣି ପିଇବେ ।"

ହସିଲେ ଅମରେଶ, " ତମେ ଶୁଭ୍ରା, ଏକାଧାରରେ ଗବେଷକ, ଡାକ୍ତର, ଗୃହିଣୀ ସବୁ କରୁଛ । ତା' ଛଡ଼ା ମୋ ର ବ ମୁରବି । ତୁମେ ତ ମୋତେ ପାଠ ପଢ଼ାଇବ ଦେଖୁଛି, ତୁମେ ମୋ'ଠାକୁ ପଢ଼ିବାକୁ କ'ଣ ଆସିଛ ?"

"ଆପଣ କ'ଣ ସାର୍ ସାଇକେଲରେ ଯାଇଥିଲେ ଏତେ ବାଟ ?" ବଡ଼ ବ୍ୟସ୍ତ ହୋଇ ପଚାରିଲା ।

"ହଁ, ଆଉ କେଉଁଥିରେ ଯାଇଥାନ୍ତି ସେ ?"

"କାହିଁକି ସାର, ଆର ପାଖରେ ମୋ ଗାଡ଼ି ଥୁଆ ହୋଇଛି । ଡ୍ରାଇ-ଭରକୁ କହିଥିଲେ ସେ ଆପଣଙ୍କୁ ଗାଡ଼ିରେ ନେଇଯାଇ ଥାଆନ୍ତା ? ମୋ ଗାଡ଼ି ଥାଉଁ ଥାଉଁ...

ହସିଲେ ଅମରେଶ, କହିଲେ, "ଦେଖ ଶୁଭ୍ରା, ତୁମେ ଅତି ପିଲାଳିଆ । ତୁମେ ବୁଝୁନା । ତୁମେ ଆଜି ମୋ ଠାରେ ଗବେଷଣା କରୁଛ ବୋଲି ତୁମ ଠାରୁ ଫାଇଦା ଉଠାଇବା କ'ଣ ମୋର ଉଚିତ୍ ? ତୁମ ଗାଡ଼ିକୁ ମୋ କାମ ପାଇଁ ବ୍ୟବହାର କରିବା କେତେ ବଡ଼ ଅନ୍ୟାୟ ତୁମେ ବୋଧହୁଏ ଜାଣିପାରୁ ନାହଁ । ତୁମେ ଆଜି ହୁଏତ ମୋ ଠାରେ ଗବେଷଣା କରୁଛ ବୋଲି କିଛି କହିବ ନାହିଁ, କିନ୍ତୁ ପର କାଳରେ କହି ବୁଲିବ ଅମୁକେଇ ସାର୍ ଭାରି ଫାଏଦା ଉଠାଇଲା ବାଲା । ସେ ନିଜ ଛାତ୍ର ଛାତ୍ରୀଙ୍କଠାରୁ ବେଶ ଫାଇଦା ଉଠାଇ ଜାଣନ୍ତି ।

ହସିଲା ଶୁଭ୍ରା, ଏକ ଶୁଷ୍କ ହସ "ସାର୍, ଆପଣ ବ ଚାଗ୍ରହରେ ମୋତେ ଏ କଥା ଶୁଣାଇଲେ ଆଜ ? ଆପଣଙ୍କ ନାଁରେ ମୁଁ ଦିନେ ଏମିତି କହିବ, ଆପଣ କଳ୍ପନା କରିପାରିଲେ ସାର୍ ? ହେଉ, ମୋର ଦୁର୍ଭାଗ୍ୟ ।

ତୁମକୁ ବୋଧହୁଏ କଷ୍ଟ ହେଲା ଶୁଭ୍ରା ଏଇ କେଇ ପଦ କହିଦେଲି ବୋଲି ।" ଏଇ କିଛି ସମୟ ତଳେ ଏକ ଘଟଣା ମୋତେ ଏଭଳି କହିବାକୁ ବାଧ୍ୟ କରିଛି ।

"ତୁମେ ଜାଣିଛ ଶୁଭ୍ରା, ପାଟନା ଜିଲ୍ଲା ମାଜିଷ୍ଟ୍ରେଟ ମିଷ୍ଟର ଗୁପ୍ତାଙ୍କୁ ?

ରେଫ୍ରିଜେ ରଟରରୁ ଗିଲାସେ ଥଣ୍ଡା ପାଣି ଆଣି ଅମରେଶର ଟେବୁଲ ଉପରେ ଥୋଇଁ ଥୋଇଁ କହିଲା, "ହିଁ, ସାର୍ ଜାଣିଛି, ଖୁବ୍ ଭଲ ଭାବରେ ଜାଣିଛି । କାହିଁକି ? ସେ ତ ଅନେକ ସମୟରେ ଆମ ଘରକୁ ଆସନ୍ତି । ବାପାଙ୍କ ସହିତ ବହୁ ସମୟ ଆମ ଘରେ ବସି କଥାବାର୍ତ୍ତା ହେବାର ଦେଖିଛି ।

ତୁମେ ଜାଣିଛ ଶୁଭ୍ରା, ପାଣି ପିଉଁ ପିଉଁ ଅମରେଶ କହିଲା, "ସେଇ ଗୁପ୍ତା ହେଉଛି ମୋର ସର୍ବପ୍ରଥମ ଛାତ୍ର ଏହି କଲେଜରେ । ସେ ଏମ.ଏସ.ସି. ପଢ଼ିଲା-ବେଳେ ମୁଁ ଏଠି ଲେକଚରରର ଭାବରେ ଜଏନ କଲି । ମୁଁ ତାକୁ ଏମ.ଏସ.ସି.ରେ ପଢ଼ାଇଛି । ମୋତେ ସବୁବେଳେ ସାର୍, ସାର୍ କହି ମୋ ପଛରେ ଗୋଡ଼ାଏ । ମୁଁ ଯେତେବେଳେ ଆଇ.ଏ.ଏସ, ହେଲି, ମୋ ପାଖକୁ ଦୌଡ଼ିଲା ଦିନ ରାତି । ମୋର ଯେତେପ୍ରକାର ନୋଟ, ବହି, ଖାତା ସବୁ ଥିଲା, ସେ ସବୁ ମୋ'ଠାରୁ ନେଇ ଆଇ.ଏ.ଏସ. ପରୀକ୍ଷା ପାଇଁ ପ୍ରସ୍ତୁତ ହେଲା । ମୁଁ ଯେଉଁ ଯେଉଁ ବିଷୟ ନେଇଥିଲି, ସେ ଠିକ୍ ସେହି ସେହି ବିଷୟ ନେଲା । ପିଲାଟା ପରିଶ୍ରମୀ । ସବୁବେଳେ ମୋ ଠାକୁ ଦୌଡ଼ି ନାନା ବିଷୟ ବୁଝାସୁଝା କଲା । ମୁଁ ତା ପାଇଁ ଦିନ ରାତି କେତେ ଯେ ଖଟିଛି, ତାର ଇୟତ୍ତା ନାହିଁ । ଜାଣ ତା ପରୀକ୍ଷା ପାଇଁ ମୁଁ ଅଧେ ପରିଶ୍ରମ କରିଛି ।

ଯାହା ହେଉ ମୋ ପରବର୍ଷ ସେ ହେଲା ଆଇ. ଏ. ଏସ: । ମୁଁ ଆଇ: ଏ: ଏସ. ଥିଲାବେଳେ ମୋତେ ଭାରି ମାନ ଖାତିର କରେ । ସମସ୍ତଙ୍କ ଆଗରେ କହି ବୁଲିଲା ମୋରି ଯୋଗୁଁ ସେ ଆଇ.ଏ.ଏସ. ପାଇଲା ବୋଲି । କିନ୍ତୁ ମୁଁ ଯେମିତି ଆଇ:ଏ:ଏସ ଛାଡ଼ିଦେଇଛି, ତା'ର ମୋ ପ୍ରତି ବ୍ୟବହାର ହଠାତ୍ ବଦଳିଗଲା । ବାଟରେ ଘାଟରେ ଦେଖାହେଲେ, ସେ ମୋତେ ଆଉ ଆଖିରେ ବି ଗୁହେଁ ନାହିଁ ଆଜିକାଲି ।

ବାପା ମୋତେ ଚିଠି ଲେଖିଥିଲେ ଦୁଇଶହ ବସ୍ତା ସିମେଣ୍ଟ ପାଇଁ। ପାଟନାରେ ଆମର ଯେଉଁ ଘର ତିଆରି ହେଉଛି, ସେହି ଘରର ଛାତ ପଡ଼ିବ। ସେହି ସିମେଣ୍ଟ ବଣ୍ଟନ ବର୍ତ୍ତମାନ ତା ହାତରେ। ମୁଁ ଯାଇଥିଲି ତା' ଘରକୁ ତାକୁ କହିବା ପାଇଁ। ଘରେ ଥାଇ ମୋତେ ଚପରାଶୀ ହାତରେ ମନା କରିଦେଲା ସିମେଣ୍ଟ ନାହିଁ ବୋଲି। ମୋତେ ଠିକରେ ଦେଖା ବି କଲା ନାହିଁ। ଫୋନ କଲେ ତା' ଚାକର କହେ, ବାବୁ ନାହାନ୍ତି। କେତେବେଳେ କହେ ବାବୁ ବାଥ୍ ରୁମରେ ଅଛନ୍ତି। ଚିଠି ଲେଖିଲେ ତା' ଠାରୁ କିଛି ଉତ୍ତର ମିଳେନି। ମୁଁ ଭାବି ପାରୁନି ତାକୁ କେମିତି ଧରିହେବ। ତାକୁ ନ ଧରିଲେ ସିମେଣ୍ଟ ମିଳିବ କୁଆଡ଼ୁ ?

ହସିଲା ଶୁଭ୍ରା, କହିଲା, "ସେମାନେ ସାର୍ ଆପଣଙ୍କୁ ସିମେଣ୍ଟ ଦେବେନି। ସିମେଣ୍ଟ ପରମିଟ ପାଇଁ ଅପର୍ଯ୍ୟାପ୍ତ ଲାଞ୍ଚ ଦିଆନିଆ ଚାଲିଛି। ଆପଣ ଲାଞ୍ଚ ଦେବେନି, ତେଣୁ ପାଇବେନି।

"ତୁମକୁ ଏକଥା କିଏ କହିଲା ଶୁଭ୍ରା ?

ସାର୍ ଏହିଭଳି କେତେ କଥା ମୋ କାନରେ ଆସି ପଡ଼େ। ଆପଣ ଜାଣନ୍ତି ଏଇ କେତେଦିନ ଭିତରେ ମିଷ୍ଟର ଗୁପ୍ତା ପାଟନାରେ ତିନୋଟି ପ୍ରକାଣ୍ଡ ପ୍ରକାଣ୍ଡ କୋଠାଘର ତିଆରି କରି ସାରିଲେଣି। ଏଥିପାଇଁ ଟଙ୍କା ଆସୁଛି କୁଆଡ଼ୁ ? ଲୋକେ ଆଣି ରାତିଅଧରେ ଘରେ ଦେଇଯିବେ। ଆପଣ ନ ନେବେ କେମିତି ? ତାଙ୍କ ବଡ଼ ଭାଇ ବି ଆଇ. ଏ: ଏସ୍, ସେ ତ ଗୋଟାଏ ବି କୋଠା କରି ପାରି ନାହାନ୍ତି।"

"ତୁମେ ତ ବହୁତ ଖବର ରଖୁଛ ଶୁଭ୍ରା ?" ମୁଁ ତ କାହିଁ ଏତେ କଥା ଜାଣିନି। ମୋର ବେଳେ ବେଳେ କ'ଣ ମନେ ହୁଏ ଜାଣ ଶୁଭ୍ରା ? ମୁଁ ତୁମ ଠାରେ ଶିକ୍ଷା ଗ୍ରହଣ କରନ୍ତି କି ? ଏସବୁ ବିଷୟରେ ତୁମେ ଯେ ଜଣେ ବଡ଼ ଓସ୍ତାଦ୍ ଏହା ମୋତେ ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ପଡ଼ିବ।

"ସାର୍, ଆପଣ ତ ମୋତେ ସବୁବେଳେ ଥଟ୍ଟା କରୁଛନ୍ତି। ନାନାକଥା ମୋ କାନରେ ଆସି ବାଜେ। ଖବରଟାଏ କାନକୁ ଆସିଲେ ମନେ ନ ରଖିବି କେମିତି ?

ତୁମେ ଯେତେ କଥାରେ ମୁଣ୍ଡ ଖେଳାଅ ଶୁଭ୍ରା, ସେତେ ଖେଳାଇଲେ ତୁମେ ଗବେଷଣା କରି ପାରିବ କେଉଁଠୁ ? ତୁମ ମୁଣ୍ଡରେ ତ ଏତେ କଥା

ଜମାଟ ବାନ୍ଧି ରହିଛି ଯେ ଗବେଷଣା କଥା ମୁଣ୍ଡକୁ ପଶିବା ପାଇଁ ଯାଗା ନାହିଁ ? ତୁମର ଏଇଟା ଭାରି ଖରାପ ଗୁଣ । ତୁମକୁ ମୁଁ ମୂଳରୁ କହିଥିଲି, ତୁମେ ଯେବେ ଏଠି ଗବେଷଣା କରିବ ଏତେ କଥା ଶୁଣିବନି କି କହିବନି ।

"ନାଁ ସାର୍, ଫେର କାନମୋଡ଼ ହେଉଛି, ଆଉ ଏତେ କଥା କହିବନି ।

ଶୁଣିବନି ମଧ୍ୟ ।

ହଁ ସାର୍ ଶୁଣିବନି ।

କିନ୍ତୁ ସାର୍, ସେମାନେ ଆମକୁ ସିମେଣ୍ଟ ଦେବେ । ବାପାଙ୍କ ପାଖରୁ ଯଦି ସିମେଣ୍ଟ ନାଁ ବାହାରେ ହଜାର ହଜାର ବସ୍ତାର ପରମିଟ ସଙ୍ଗେ ସଙ୍ଗେ ଲେଖା ହୋଇଯିବ । ବାପାଙ୍କ ପାଖରୁ ଭବିଷ୍ୟତରେ କେତେ କ'ଣ ଉପକାର ପାଇବା ଆଶାରେ ଏମିତି ଦୟା ଦେଖାନ୍ତି । ଅପଣଙ୍କ ପାଖରୁ ତ କିଛି ଲାଭ ପାଇବେନି, ଦୟା ଦେଖାଇବେ କାହିଁକି ?

ମୋର ଜଣେ ଛାତ୍ରର ଏଭଳି ମନୋବୃତ୍ତି ଦେଖି ମୋତେ ସେତେବେଳେ ବଡ଼ ଖରାପ ଲାଗିଲା ଶୁଭ୍ରା । ତେଣୁ ତୁମକୁ ସେପରି କହିଦେଲି । କିଛି ମନେ କରିବନି ସେଥିପାଇଁ ।

"ନାଁ ସାର୍, ଆପଣ କ'ଣ ଯେ କହୁଛନ୍ତି; ମୁଁ ମନକଷ୍ଟ କରିବ ଏଥି-ପାଇଁ ?"

ସାର, ମୋର ଗୋଟିଏ ଅନୁରୋଧ ରକ୍ଷା କରିବେ ? ମୁଁ ବାପାଙ୍କ ପି. ଏ.କୁ କହିଦେଲେ ସେ ମିଷ୍ଟର ଗୁପ୍ତାଙ୍କ ପାଖରୁ ଦୁଇଶହ ବସ୍ତା ସିମେଣ୍ଟ ପାଇଁ ଆପଣଙ୍କ ନାଁରେ ପରମିଟ ଟାଏ କରି ଆଣିବ ?"

"ଫେର, ମୋତେ ସାହାଯ୍ୟ କରିବାକୁ ଚାହିଁଲ ଶୁଭ୍ରା ? ଏଇ କିଛି ସମୟ ତଳେ ପରା ତୁମକୁ ଟାଳି ଦେଇଥିଲି ।

+ + +

ଅମରେଶଙ୍କୁ ନେଇ ସ୍ମିତା ଘର ଭଳି ପୁଷ୍ପା ଘରେ ମଧ୍ୟ ଗୋଳମାଳ । ଅମରେଶର ଅପୂର୍ବ ମେଧାଶକ୍ତି, ଉତ୍ତମ କେରିୟର, ଭଲ ସ୍ୱଭାବ ଚରିତ୍ର ଦେଖି ପୁଷ୍ପାର ବାପା ମିଷ୍ଟର ସିହ୍ନା ଜୋଇଁ କରିବାକୁ ଚାହୁଁଥିଲେ । ଅମରେଶ ଆଇ: ଏ: ଏସ ଚାକିରି ଛାଡ଼ି ଦେଲାରୁ ସବୁ ଗୋଳମାଳ ହୋଇଗଲା ।

ଅମରେଶ ସହିତ ଝିଅର ବିଭାହର ପ୍ରସ୍ତାବ କଥା ଉଠିଲେ ମିସେସ୍ ସିହ୍ନା ଚଢ଼ି ଉଠନ୍ତି । ସେ ମିଷ୍ଟର ସିହ୍ନାଙ୍କୁ କହନ୍ତି, "ତୁମ ମୁଣ୍ଡ କ'ଣ ଖରାପ ହୋଇଗଲାଣି କି ? ଅମରେଶକୁ ଜୋଇଁ କରିବାକୁ ବସିଛ ? ଚାକିରି ପୁଣି କ'ଣ ନା କଲେଜ ଶିକ୍ଷକ । ମୋ ଝିଅ ଆଇ. ଏ. ଏସ ଛଡ଼ା ଆଉ କାହାକୁ ବିଭା ହେବନି । ତୁମେ ଏତେବଡ଼ ରାଜ୍ୟରେ ମନ୍ତ୍ରୀ ହୋଇଛ, ତୁମକୁ ଜୋଇଁ କରିବାକୁ ଆଇ.ଏ.ଏସ.ଟାଏ କ'ଣ ମିଳିବ ନାହିଁ ? ଶେଷରେ ଝିଅକୁ ଦେବ ମାଷ୍ଟରଟାକୁ !"

"ତୁମେ କ'ଣ ଜାଣିନ ପ୍ରଭାବତୀ, ଏ ସବୁ ଆଇ. ଏ. ଏସ. ଚାକିରୀକୁ ଗୋଇଠା ମାରି ଚାଲି ଆସିଛି । ଆଇ. ଏ. ଏସ ଚାକିରିରେ କ'ଣ ଅଛି କହିଲ ? ଖାଲି ଉପରକୁ ଦିଶୁଛି ସିନା ବଡ଼, କିନ୍ତୁ ଭିତରଟା ଫମ୍ପା । ଆଇ.ଏ.ଏସ. ଚାକିରି ମୂଳରୁ ଗୋଡ଼ାଣିଆ ଚାକିରି । ଯେଉଁ ଦିନ ଠାରୁ ଚାକିରିରେ ପଶିଲ, ସେହି ଦିନଠାରୁ ଜାଣ ଉପର ଅଫିସର ପଛରେ ଗୋଡ଼ାଇବା ଆରମ୍ଭ ହୋଇଗଲା । ଯେତେ ପ୍ରକାର ତେଲ ଦୁନିଆରେ ଅଛି, ସେ ତେଲ କେଉଁଠି କେମିତି ମାଲିସ କରାଯାଏ, ତୁମେ ଜାଣିଥିବ । ନୋହିଲେ ଚାକିରି ଗଲା । ଆଜି କମିଶନର ଆସିଲେ, ତାଙ୍କ ପଛରେ ଗୋଡ଼ାଅ । କାଲି ମନ୍ତ୍ରୀ ଆସିଲେ ତାଙ୍କ ପଛରେ ଗୋଡ଼ାଅ । ହଠାତ୍ ମନ୍ତ୍ରୀଙ୍କର କ'ଣ ଦରକାର ହେବ, ଚାକର ଭଳିଆ ଦୌଡ଼ି ଯାଇ କରିଦେବ । ନିଜତ୍ୱ କି ନିଜର ସ୍ୱାଧୀନ ଚିନ୍ତା ବୋଲି କିଛି ନାହିଁ । ଯିଏ ଯାହା କହିଲା, ଇଏସ ସାର୍, ଇଏସ ସାର୍ । ଏହି ଇଏସ ସାର୍, ଇଏସ ସାର୍ କହି ଯେଉଁମାନଙ୍କ ଜୀବନ କଟେ, ସେମାନଙ୍କୁ କ'ଣ ତୁମେ ମଣିଷ ବୋଲି ଗଣ ପ୍ରଭାବତୀ ? ତୁମେ କ'ଣ ମଣିଷ ଚିହ୍ନି ନାହଁ ? ତୁମେ ମଣିଷ ଚିହ୍ନିଥିଲେ ଅମରେଶ ଭଳି ପିଲକୁ ନାପସନ୍ଦ କରନ୍ତ ନାହିଁ । ଶିକ୍ଷା ଜଗତରେ ସେ ଗୋଟିଏ ମଣି ଜାଣ । ଆମ ଦେଶର ନାଁ ସେ ଦେଶ ବିଦେଶରେ ଉଡ଼ାଇବ । ଦେଖିବ ଦିନେ ସାରା ପୃଥିବୀର ସମ୍ମାନ ତା ଗୋଡ଼ ତଳେ ଲୋଟି ପଡ଼ିବ ।"

ଥାଉ, ଥାଉ ଏତେ କହିବା ଥାଉ । ଯେତେ ହେଲେ ବି ସେ ସବୁବେଳେ ରହିବ, ସେହି ଆଇ.ଏ.ଏସ.ଙ୍କ ଗୋଡ଼ ତଳକୁ । ତାର ପ୍ରମୋସନ, ତାର ଚରିତ୍ର ପଞ୍ଜିକା ଲେଖିବେ ସେଇ ଆଇ. ଏ. ଏସ.ମାନେ । ଜଣେ ଆଇ. ଏ. ଏସ. ସହିତ ଜଣେ କଲେଜ ଶିକ୍ଷକକୁ କେମିତି ତୁଳନା କରୁଛ ମୁଁ ବୁଝି ପାରୁନି । କାହିଁ ରାଣୀ କାହିଁ ଚେଙ୍ଗୁଡ଼ାଣୀ । ତୁମେ ସେ ପାଟକୋମି ଛୁଡ଼ । ଭୁଲରେ ବି ଅମରେଶ ନାଁ

ଆଉ ଧରନ । ତୁମେ ଯଦି ତୁମ ଝିଅ ପାଇଁ ଆଇ. ଏ. ଏସ. ଯୋଗାଡ଼ କରି ନ ପାରୁଛ; ତେବେ ଝିଅ ବେକରେ ପଥରଟିଏ ବାନ୍ଧି କୂଅରେ ଗଳେଇ ପକାଉନ ।

•

ଆଇ. ଏ. ଏସ.ଙ୍କ ଜୀବନ ଧାରଣ ପ୍ରଣାଳୀ ତୁମେ ଦେଖିଛ ପ୍ରଭାବତୀ ? ଖୋସାମତ କରି କରି ସେମାନଙ୍କ ଜୀବନ ଗଲା । ଷ୍ଟେଟ ଅଫିସର ଥିଲାବେଳେ ଯେତେ ପ୍ରକାର ଖୋସାମତ କରିଥିବେ, ବଡ ଅଫିସର ହେଲେ ଅନ୍ୟଙ୍କ ଠାରୁ ସେତିକ ଖୋସାମତ ଚାହିଁବେ । ଲୋକେ କହନ୍ତି ଦେଶ ଚଳାଉଛନ୍ତି ସେମାନେ, ଆମେ ମନ୍ତ୍ରୀ ଗୁଡ଼ାକ କିଛି ନୋହୁଁ । ମୋତେ ଶୁଣିଲେ ହସ ମାଡେ ସେ କଥା ।

ହଇହେ, ଦେଶତ ଚାଲିଛି କିରାଣୀମାନଙ୍କ କଲମ ଯୋଗୁଁ । ଏହି ଆଇ. ଏ. ଏସ୍. ଗୁଡ଼ାକ ଦସ୍ତଖତ ମାରନ୍ତି ସିନା । ସେମାନଙ୍କ ଦସ୍ତଖତରେ କ'ଣ ଶାସନ ଚାଲେ ? ବିଚରା କିରାଣୀର କୃତିତ୍ୱ କେହି ଜାଣନ୍ତି ନାହିଁ । ଏମାନଙ୍କୁ ଚିନ୍ତା କରିବାକୁ ବେଳ କାହିଁ ଯେ ଏମାନେ ଦେଶ ଚଳାଇବେ ? ତୁମେ ଏମାନଙ୍କୁ ଯେ କେମିତି ଜୋଇଁ କରିବାକୁ ଚାହୁଁଛ, ମୁଁ ଧାରଣା କରି ପାରୁନ ।"

ତୁମେତ ଦେଖୁଛ ଆଜିକାଲିକାର ବଜାର । କଳାପୋଡିଆ, କଳାବଜାରୀ, ଠିକାଦାର, ଲାଞ୍ଚଖୋରମାନେ ଯେତେବେଳେ ଜୋଇଁ ପାଇଁ ଆଇ. ଏ. ଏସ. ତଳକୁ ଆସୁ ନାହାନ୍ତି, ତୁମେ ଜଣେ ମନ୍ତ୍ରୀ ହୋଇ କେମିତି ଆସିବ, ମୁଁ ବୁଝି ପାରୁନ ?"

ହଇହେ, ଆଇ.ଏ.ଏସ.ମାନେ ଯେଉଁ ଶ୍ରେଣୀରୁ ବାଛି ହୁଅନ୍ତି, ଆମର ଯାଏ କେତେ ଆସେ କେତେ । ଆମେ ତ ସେହି ଶ୍ରେଣୀର ନୁହଁନ୍ତି, ଆମେ କାହିଁକି ସେମାନଙ୍କୁ ଝିଅ ଦେବା ? ଯିଏ ଆଇ. ଏ. ଏସ. ଚାକିରିକୁ ଛାଡ଼ି ଦେଇ ଆସିଛି, ସିଏ କ'ଣ ଆଇ. ଏ. ଏସ. ଠାରୁ ବଡ଼ ନୁହେଁ ?

କେମିତି ହେବ ? ଜଣେ ଆଇ. ଏ. ଏସ. ଆମ ଝିଅକୁ ଯେତେ ସୁଖରେ ରଖିପାରିବ, ଜଣେ କଲେଜ ଶିକ୍ଷକ କ'ଣ ସେମିତି ରଖିପାରିବ ?

ହେଉ, ତୁମରି କଥା ହେଲା, ପ୍ରଭାବତୀ । ତେବେ ମନେ ରଖ, ଅମରେଶ ଭଳି ସୁନାମୁଣ୍ଡାକୁ ତୁମେ ଗୋଡ଼ରେ ଠେଲି ଦେଉଛ । ଦିନେ ଏମିତି ବେଳ ଆସିବ, ତୁମେ ତା'ରି ଗୋଡ଼ ତଳକୁ ଯିବ । ସୁନା ମୁଣ୍ଡା ଯେ ସୁନା ମୁଣ୍ଡା, ସୁନା ପୁଟ ଦିଆ ଦସ୍ତା ମୁଣ୍ଡା ସେ କେବେ ହେବନି ।

× × ×

କ'ଣ ଶୁଭ୍ରା, ଆଜ ଶୁଣିଲି ତୁମ ବାହାଘର ଏ ଭିତରେ ହେଉଛି ବୋଲି । ଡ଼କ୍ଟର ଗ୍ଲେପ୍ରା କହୁଥିଲେ । ତୁମକୁ ତ ପୁଣି କିଛି ଗୋଟିଏ ଉପହାର ଦେବାକୁ ପଡ଼ିବ ସେଦିନ ।

ହସିଲା ଶୁଭ୍ରା ଏକ ଦୁଷ୍ଟାମୀ ହସ, "ହଁ, ସାର୍ ଶୁଣିଛନ୍ତି, ଠିକ୍ ହୋଇନି ।"

ତୁମେ କାଲେ ଜଣେ ଆଇ. ଏ. ଏସ୍.ଙ୍କୁ ବାହା ହେଉଛ ? ସତ ?

ମୁଁ ବାହା ହେଉନି ସାର୍, ସେମାନେ ମୋତେ ବାହା ହେବାକୁ ଚାହୁଁଛନ୍ତି । ପୁଣି ଗୋଟିଏ ନୁହେଁ ? ପାଞ୍ଚଟା ଆଇ. ଏ. ଏସ୍. ମୋତେ ବାହାହେବା ପାଇଁ ଲାଇନ ଦେଇଛନ୍ତି ।

"ମାନେ ! ତୁମେ ପୁଣି ମହାଭାରତ ଯୁଗକୁ ଫେରି ଯାଉଛ ନା କ'ଣ ? ଦ୍ରୌପଦୀ ପଞ୍ଚ ପାଣ୍ଡବଙ୍କ କଥା ?"

"ହଁ ସାର୍ ଜାଣନ୍ତି ସେଇଆ । ବାପା ଯଦି କହନ୍ତେ, "ମୋର ତ ଗୋଟିଏ ବୋଲି ଝିଅ ତୁମେ ପାଞ୍ଚଜଣ କେମିତି ବାହାହେବ ? ସେମାନେ କହନ୍ତେ, ଆପଣ ଆଗେ ରାଜି ହୋଇ ଯାଆନ୍ତୁ, ଆମେ ପାଞ୍ଚଜଣ ମିଶି ଗୋଟିଏ ଝିଅକୁ ଚଳେ ବାହା ହୋଇ ପଡିବୁଁ ।"

"ହଁ ନ ହେବେ କାହିଁକି ? ତୁମେ ରୂପବତୀ, ଉଚ୍ଚ ଶିକ୍ଷିତା, ଧନୀର ଦୁଲାଳୀ, ପାଞ୍ଚ କାହିଁକି, ବେଳ ପଡ଼ିଲେ ଦଶ ଜଣ ଆଇ. ଏ. ଏସ୍. ତୁମ ପାଇଁ ଲାଇନ ଦେବାକୁ ପଛାଇବେ ନାହିଁ ।"

"ସାର୍, ସେମାନେ କ'ଣ ମୋ ପାଇଁ ଲାଇନ ଦେଇଛନ୍ତି ?

"ଆଉ କାହା ପାଇଁ ?"

"ନାଁ ସାର୍ ମୋଟେ ନୁହେଁ, ସେମାନେ ମୋ ନାଁରେ ଲାଇନ ଦେଇଛନ୍ତି ବାପାଙ୍କ ଟଙ୍କା ପାଇଁ । ସେମାନେ ତ ଜାଣନ୍ତି, ମୁଁ ବାପାଙ୍କର ଗୋଟିଏ ବୋଲି ଝିଅ । ସେମାନେ ମୋତେ ବାହାହେଲେ ଅନ୍ତତଃ ଚଳେ ପନ୍ଦର କୋଡ଼ିଏ ଲକ୍ଷ

ଟଙ୍କାରୁ କମ ଯୌତୁକ ପାଇବେ ନ । ସେଥିପାଇଁ ସେମାନଙ୍କର ଏ ଲାଇନ । ମୁଁ ସେହି ପାଞ୍ଚଜଣ ଆଇ. ଏ: ଏସ:ଙ୍କ ଭିତରୁ ଅନ୍ତତଃ ତିନିଜଣଙ୍କୁ ଜାଣେ, ଯେଉଁମାନଙ୍କ ବାହାଘର ଏହି ସହରର ଖୁବ୍ ସୁନ୍ଦରୀ ସୁନ୍ଦରୀ ଝିଅଙ୍କ ସହିତ ହେବା ପ୍ରାୟ ସ୍ଥିର ହୋଇଯାଇଛି । ସେ ଝିଅମାନେ ମୋଠାରୁ କମ୍ ଶିକ୍ଷିତା କି କମ୍ ସୁନ୍ଦରୀ ନୁହନ୍ତି ? ଏହି ଲୋକ ଗୁଡ଼ାକ ଏତେ ଲୋଭୀ ଯେ ସେ ସବୁ ସ୍ଥାନରେ ନାନା ପ୍ରକାର ଆଳ ଦେଖାଇ ଫାଇନାଲ ଜବାବ ଦେଉ ନାହାନ୍ତି । ଭିତର ଆଶା ଜାଗେ ଏଠି ସେମାନଙ୍କ ପ୍ରସ୍ତାବ ବାଜି ଯିବ । ଏହି ଲୋକ ଗୁଡ଼ାଙ୍କୁ ଦେଖିଲେ ମୋ ହାଡ଼ ଏମିତି ଜଳେ ଯେ ମନେ ହୁଏ, ଏମାନଙ୍କ ବେକରେ ଏକ ଦଉଡ଼ି ଲଗାଇ ଏମାନଙ୍କୁ ପ୍ରତିଦିନ ସକାଳୁ ଉଠ୍‌ବସ କରନ୍ତି କି ?

"ଥାଉ, ଥାଉ ଶୁଭ୍ରା", ହସିଲା ଅମରେଶ, "ତୁମେ ଏତେ ବଡ଼ ବଡ଼ ଅଫିସରଙ୍କ ନାଁରେ ଏମିତି କ'ଣ କହିଯାଉଛ ! ଯେତେହେଲେ ସେମାନେ ଆମ ସମାଜରେ ଉଚ୍ଚପଦସ୍ଥ ପ୍ରତିଷ୍ଠିତ ବ୍ୟକ୍ତି । ସେମାନଙ୍କୁ ଏମିତି ଗାଳି ଦେଲେ ସେମାନଙ୍କ ବ୍ୟକ୍ତିତ୍ୱ ପ୍ରତି କେତେ ଆଘାତ ଲାଗିବ ତୁମେ ବୁଝିପାରୁନ ?

ନାଁ, ସାର, ଆପଣ ଜାଣିନାହାନ୍ତି ଏମାନଙ୍କୁ । ସେମାନେ ଭାରି କ୍ଷମତା ଲୋଭୀ । ଭାବନ୍ତି ଆଇ. ଏ, ଏସ: ହୋଇଗଲେ ସ୍ୱର୍ଗର ଇନ୍ଦ୍ର ଦେବତା ପାଲଟି ଗଲେ । ସେମାନଙ୍କ ଆଖିରେ ଚନ୍ଦ୍ର ସୂର୍ଯ୍ୟ ବି ଦେଖା ପଡ଼ନ୍ତିନି । ସମାଜରେ ସବୁ ବିଷୟରେ ବଡ଼ ଅଂଶ କେମିତି ମାରିନେବେ, ସେହି ବାଟରେ ସବୁବେଳେ ଥାଆନ୍ତି ।

ତୁମେ ତ ସେମାନଙ୍କ ଉପରେ ଏତେ ରାଗିଛ, ସେମାନଙ୍କୁ ବାହାହୋଇ ଘର ସଂସାର କରି କେମିତି ରହିବ ଶୁଣେ ?

ମୁଁ ସେମାନଙ୍କ ଭିତରୁ ସତରେ କାହାକୁ ବାହା ହେଉଛି ନା କଅଣ ? ବାପାଙ୍କର ଇଚ୍ଛା ଅଛି, ଆଇ: ଏ: ଏସ: ଜୋଇଁ ପାଇଁ । ମୋତେ ଏ ପର୍ଯ୍ୟନ୍ତ ପଚାରି ନାହାନ୍ତି । ପଚାରିଲେ ମୁଁ ସଙ୍ଗେ ସଙ୍ଗେ ମନା କରିଦେବି । କହିବି, ଆଇ: ଏ: ଏସକୁ ବାହା ହୋଇ ମୁଁ ମୋ ଜୀବନକୁ ନଷ୍ଟ କରିବାକୁ ଚାହେଁନି । ସେମାନଙ୍କୁ ନେଇ ଯେ କିଏ କେବେ ସୁଖର ସଂସାର ଗଢ଼ି ପାରିବ, ସେଥିରେ ମୋର ଯଥେଷ୍ଟ ସନ୍ଦେହ ଅଛି ।"

ଯାଅ, ଯାଅ ଶୁଭ୍ରା, ତୁମେ କାମ କର । ଏହି ଆଇ. ଏ. ଏସ୍.ମାନଙ୍କ ଚିନ୍ତା କରି ଏତେ ବିବ୍ରତ ହୋଇପଡ଼ନା ।

× × ×

ବାପା, ହାରଭାର୍ଡ଼ ବିଶ୍ୱବିଦ୍ୟାଳୟରୁ ଗୋଟିଏ ପୋଷ୍ଟ ଡକ୍ଟରାଲ୍ ବୃତ୍ତି ପାଇଛି । ଭାବୁଛି ବର୍ଷେ ଦୁଇବର୍ଷ ପାଇଁ ସେ ଆଡ଼ୁ ବୁଲି ଆସନ୍ତି । ରସାୟନ ବିଜ୍ଞାନରେ ହାରଭାର୍ଡ଼୍‌ର କାମ ହେଉଛି ସବୁଠାରୁ ଉଚ୍ଚ କୋଟୀର । କେମ୍ବ୍ରିଜର ଗବେଷଣା ଟ୍ରେନିଂ ଠାରୁ ହାରଭାର୍ଡ଼ର ଟ୍ରେନିଂ ଢ଼େର ଉନ୍ନତ । ଆଉ ଥରେ ବିଦେଶ ଯିବା ପାଇଁ ଛୁଟି ମିଳିବ କି କଅଣ ଜାଣିନି ।

ବିପିନବାବୁ ସେତେବେଳେ ବିଶ୍ୱବିଦ୍ୟାଳୟରୁ ଆସିଥିବା ଏକ ସର୍କୁଲାର ପଢ଼ୁଥିଲେ । ପୁଅର ଆମେରିକା ଯିବା କଥା ଶୁଣି ଚମକି ପଡ଼ିଲେ । "ଆଁ, ହାରଭାର୍ଡ଼ ଯିବୁ ?"

"ହଁ, ବାପା ।"

ତୋର ଯଦି ଯିବାପାଇଁ ପ୍ରବଳ ଇଚ୍ଛା, ଅସୁବିଧା ହେବନି ଭାବୁଛି । ଛୁଟି ମିଳିବ ନିଶ୍ଚୟ । ଏହା ବିନା ଦରମା ଛୁଟି ହୋଇପାରେ । ତୋର ଯଦି ଏକାନ୍ତ ଇଚ୍ଛା ଆମେରିକା ଯିବା ପାଇଁ, ଦେଖିବା ଛୁଟି ମିଳିବାରେ ଯେମିତି କିଛି ଅସୁବିଧା ନ ହୁଏ ।

'ଫେର ପୁଅକୁ କୁଆଡ଼େ ପଠାଇ ଦେଉଛ ?" କହୁଁ କହୁଁ ଡ୍ରଇଂ ରୁମ ଭିତରକୁ ପଶି ଆସିଲେ ରାଧାମଣି ଦେବୀ । "ପୁଅ ଏମିତି ବିଲାତ ଆମେରିକା ହେଉଥିବ ନା ବିଭା ହୋଇ ଘର ସଂସାର କରିବ ?"

ପିଲାଟା ଯଦି ମନ କରୁଛି, ଯାଉ । ବର୍ଷେ କି ଦୁଇବର୍ଷ ଆମେରିକାରେ ବୁଲି ଆସୁ । ଆଖି ଟିକିଏ ଫିଟି ଯିବ । ତୁମେ ଖାଲି ହାତକୁ ଦିହାତ କରିବା କଥା କ'ଣ ସବୁବେଳେ ଭାବି ହେଉଛ ? ପିଲାଟାର କ'ଣ ବୟସ ଗଡ଼ି-ଯାଉଛି ?

ବାପା ବୋଉ କଥାକାଟି ହେବା ଦେଖି ଅମରେଶ ସେଠୁ ଉଠି ଆସିଲା ।

ରାଧାମଣି ଦେବୀ କହିଲେ, "ପୁଅ ଯଦି ଆମେରିକା ଯିବ, ତେବେ ବିଭା-

ହୋଇ ଯାଉ । ପୁଅ ବୋହୂ ଏକ ସଙ୍ଗରେ ଆମେରିକା ଯାଆନ୍ତୁ । ତୁମେ ତ ଜାଣିଛ ବିଲାତ ଅପେକ୍ଷା ଆମେରିକାରେ ଖିଆପିଆ ଢେର ଅସୁବିଧା । ବୋହୂ ସାଙ୍ଗରେ ଥିଲେ ପୁଅର ଖିଆପିଆରେ କିଛି ଅସୁବିଧା ହେବନି । ଏକା ଗଲେ ନିଜ ହାତରେ ରାନ୍ଧି କେତେ ଖାଇବ ? ପୁଅ ତ ହୋଟେଲରେ ସେ ଦେଶିଆ ମୋଟେ ଖାଇ ପାରିବନି । ସେ ସେଠି କେମିତି ଖାଇବ, ସେଇ ମୋର ଚିନ୍ତା ।

"ମୋର ସେଥିରେ ଅରାଜି ନାହିଁ, ରାଧାମଣି । ପୁଅକୁ ପଚାରି ବୁଝ, ସେ ଯଦି ରାଜି ହୁଏ ତେବେ ଆମେ ବାହାଘର କରିଦେବା । ଶିକ୍ଷାମନ୍ତ୍ରୀଙ୍କ ଝିଅ କଥା ସେତେବେଳେ ଉଠିଥିଲା । ପୁଅ ଆଇ. ଏ. ଏସ ଛାଡ଼ିଦେଲା ପରେ ସେ ପଟତ ଚୁପ୍ । ଡ଼. ପି. ଆଇ:ଙ୍କ ଝିଅ କଥା ବି ହେଇଥା । ପୁଅ ସିନା ଆଇ. ଏ, ଏସ୍. ପାଇଥିଲା, ତା ପଛରେ ଲୋକେ ଲାଇନ ଦେଉଥିଲେ । ଛାର ଜଣେ କଲେଜ ଶିକ୍ଷକକୁ ଝିଅ ଦେବ କିଏ ? ସବୁ ବଡ଼ ବଡ଼ଆ ତ ଆଇ: ଏ, ଏସ,ଙ୍କ ପଛରେ ।"

ଆମେ ଗୋଟିଏ ସାଧାରଣ ଘରୁ ପୁଅକୁ ବିଭା କରିବା ନାହିଁ କାହିଁକି ? ସେ ଯେମିତି ରନ୍ଧାବଢ଼ା; ଘର କାମ ଭଲ ଜାଣିଥିବ । ଆମେରିକାରେ ପୁଅର ଚଳିବାରେ ସାହାଯ୍ୟ କରିବ । ବଡ଼ ବଡ଼ଆଙ୍କ ଝିଅ ବିଭା କଲେ ସେମାନେ ଆମେରିକାରେ କହିବେ ନାଇଟ୍ କ୍ଲବ୍‌କୁ ଚାଲ, ରନ୍ଧାବଢ଼ା ତେଣେ ଚୁଲିକୁ ଯାଉ ।

"ହେଉ ପୁଅକୁ ପଚାର । ସେ ଯଦି ରାଜି ହୁଏ, ପୁଅକୁ ବିଭା କରି ପୁଅ ବୋହୂ ଉଭୟଙ୍କୁ ଏକ ସଙ୍ଗେ ଆମେରିକା ପଠାଇଦେବା ।

ସେହିଦିନ ସନ୍ଧ୍ୟାବେଳକୁ ପୁଅକୁ ଖାଇବାକୁ ଦେଇଁ ଦେଇଁ ରାଧାମଣି ଦେବୀ ପଚାରିଲେ ପୁଅର ବାହାଘର କଥା । ବାହାଘର କଥା ଶୁଣି ଆମରେଶ ଚମକିଉଠି କହିଲା, "ମୁଁ ଆମେରିକାରୁ ନ ଫେରିଲା ପର୍ଯ୍ୟନ୍ତ ବାହାଘର ନା ଧରନା ବୋଉ । ମୁଁ ତ ଏ ପର୍ଯ୍ୟନ୍ତ ମୋ ଭବିଷ୍ୟତ ଠିକ୍ କରିପାରିନି; ବିଭା ହୋଇ ଲାଭ କଅଣ ? ମୋ ଭବିଷ୍ୟତ ଠିକ୍ ହୋଇଗଲେ ତୁ ସେ କଥା ଚିନ୍ତା କରିବୁ ବୋଉ ।"

× × ×

ଅମରେଶ ଦୁଇବର୍ଷ ପରେ ଆମେରିକାରୁ ଫେରି ସାଏନ୍ସ କଲେଜରେ ପୂର୍ବ ଶୃଙ୍ଖଳାରେ ପୁଣି ଯୋଗଦେଲା । ଆମେରିକାରେ ଗବେଷଣା କରି ସେଠାରେ ଗବେଷଣାର ଉଚ୍ଚ ମାନ ଦେଖି ଭାବିଲା, ସେ ବି ଏ ଦେଶରେ ସେହି ଧରଣର କାମ କରିବ । ନିଜ ଦେଶର ଗବେଷଣାଗାରମାନ କେତେ ନିକୃଷ୍ଟ ଧରଣର ଉପଲବ୍ଧି କରି ଦୁଃଖକଲା । ଡ଼.ପି. ଆଇଙ୍କ ସହିତ ସାକ୍ଷାତ କରି ତାଙ୍କୁ ବୁଝାଇଲା ଏ ଦେଶର ଗବେଷଣାର ଦୂରବସ୍ଥା । ଏଠା ଗବେଷଣାଗାରଗୁଡ଼ିକୁ ଉନ୍ନତ ନ କଲେ ଏଠି ଉଚ୍ଚ ମାନର ଗବେଷଣା ସ୍ୱପ୍ନ ହୋଇ ରହିଯିବ ।

ଡ଼.ପି ଆଇଙ୍କର ଝିଅ ତ ଏହା ମଧ୍ୟରେ ଜଣେ ଆଇ.ଏ.ଏସ୍.ଙ୍କୁ ବିବାହ କରିଯାଇଛି । ଅମରେଶ ପ୍ରତି ଏଥି ପୂର୍ବରୁ ଡ଼.ପି.ଆଇଙ୍କର ଯାହା ଟିକିଏ ଆକର୍ଷଣ ଥିଲା, ଏବେ ସେତିକି ବି ନାହିଁ । ଅମରେଶର ଅଭିଯୋଗ ଶୁଣି କହିଲେ "ଦେଖ, ଅମରେଶ, ଆମ ଦେଶର ଆର୍ଥିକ ସମ୍ବଳ ଯାହା, ସେଥିରେ ଆମେ ଯଦି ଚାହିଁବା ଆମର ଗବେଷଣାଗାର ବିଲାତ ଆମେରିକା ଭଳି ହୋଇଯିବ, ତାହା କଦାପି ସମ୍ଭବ ନୁହେଁ । ଆମର ଯେତିକି ସମ୍ବଳ ଅଛି ତାରି ଭିତରେ ଗବେଷଣା ନକଲେ ଅଧିକ କିଛି ଦିଆଯାଇ ପାରିବନି । ତୁମେ ତ ଜାଣିଛ, ଆମ ରାଜ୍ୟରେ ଏମିତି କଲେଜ ଅଛି, ଯେଉଁଠି ଅର୍ଥାଭାବରୁ ଆମେ ପିଲାମାନଙ୍କୁ ଆବଶ୍ୟକୀୟ ଯନ୍ତ୍ରପାତି ଯୋଗାଇ ପାରୁନୁ । ପିଲାମାନେ ଯେଉଁ କଷ୍ଟରେ ସେସବୁ କଲେଜରେ ବିଜ୍ଞାନ ଶିକ୍ଷା କରୁଛନ୍ତି ତାହା କହିହେବନି । ଆମ ହାତରେ ଯଦି କିଛି ଅଧିକ ଟଙ୍କା ହେଲା, ସେହି ଟଙ୍କା କାହାକୁ ସାହାଯ୍ୟ ଦେବା ଉଚିତ ହେବ କହିଲ ? ତୁମ ଗବେଷଣା-ଗାରକୁ ନା ସେହି କଲେଜକୁ ? ତୁମେ ଆଜି ମୋ ସ୍ଥାନରେ ଥିଲେ କ'ଣ କରିଥାନ୍ତ ଅମରେଶ ?

ଡ଼.ପି. ଆଇଙ୍କ ଯୁକ୍ତି ଶୁଣି ଅମରେଶ ଚୁପ ରହିଲେ । ତେବେ ସେ ମନେ ମନେ ଭାବେ, "ଏହି ଆଦର୍ଶ କଣ ଆଜି ବାହାରୁଛି ? କିଛିବର୍ଷ ତଳେ ତ ନ ଥିଲା । ସେତେବେଳେ ଝିଅ ପଢ଼ୁଥିଲା, ପ୍ରଫେସରମାନଙ୍କୁ ହାତରେ ରଖିବା ଥିଲା କାମ । ତେଣୁ ସେ ସେତେବେଳେ ଯିଏ ଯାହା ଚାହୁଁଥିଲେ ସଙ୍ଗେ ସଙ୍ଗେ ମିଳି ଯାଉଥିଲା । ଆଜି ସବୁ ପ୍ରକାର ଆଦର୍ଶ ବାହାରୁଛି ।

ଅମରେଶ ଡ.ପି. ଆଇଙ୍କ ଠାରୁ ନିରାଶ ହୋଇ ଶିକ୍ଷାମନ୍ତ୍ରୀଙ୍କୁ ସାକ୍ଷାତ କଲା । ଶିକ୍ଷାମନ୍ତ୍ରୀଙ୍କ ଝିଅ ତ ବଡ଼ ହୋଇଗଲାଣି । ଅମରେଶ କଥା ପ୍ରତି ଗୁରୁତ୍ୱ ଦେବାର ଆବଶ୍ୟକତା ଆଉ କଅଣ ? ଅମରେଶଠାରୁ ମନ୍ତ୍ରୀ ମହାଶୟ ସବୁ ଶୁଣିଲେ ପରେ ଏହା ଉପରେ ଚିନ୍ତାକରି ଯାହା ବ୍ୟବସ୍ଥା କରିବା କଥା କରିବେ ବୋଲି କହି ବିଦାୟ କରିଦେଲେ । ଅମରେଶ ମନ୍ତ୍ରୀଙ୍କ ହାବଭାବ ଦେଖି ଧରିନେଲା ନ ହେବା କଥା ।

ସବୁଆଡ଼ୁ ନିରାଶ ହୋଇ ଅମରେଶ ବିଜ୍ଞାନାଗାରରେ ଯେତିକି ସୁବିଧା ଅଛି, ତାରି ଭିତରେ କାମ କରିବାକୁ ମନୋନିବେଶ କଲା ।

ଶୁଭ୍ରା ଅମରେଶର ଏ ଅସନ୍ତୋଷତା ଦେଖି ବଡ଼ ଦୁଃଖ କଲା । ସାର ଗବେଷଣା କରିବା ପାଇଁ ଉପଯୁକ୍ତ ଯନ୍ତ୍ରପାତି ପାଉନାହାନ୍ତି ବୋଲି ଶୁଭ୍ରା ଦିନେ ଆସି ଅମରେଶଙ୍କୁ କହିଲା "ସାର୍, ବାପା ମୋତେ କହୁଥିଲେ ଆପଣଙ୍କ ଗବେଷଣା ପାଇଁ ଯାହା ଯାହା ଦରକାର ତାଲିକା ଦେଲେ ସେ ସଙ୍ଗେ ସଙ୍ଗେ ମଗାଇ ଦେଇ ଆପଣଙ୍କୁ ଯୋଗାଇ ଦେବେ ।

ହସିଲା ଅମରେଶ "ଦେଖ ଶୁଭ୍ରା, ତୁମର ଓ ତୁମ ବାପାଙ୍କର ଏତାଦୃଶ ସାହାଯ୍ୟ ପାଇଁ ଅଶେଷ ଧନ୍ୟବାଦ । ମୁଁ ଜାଣେ, ତୁମ ବାପାଙ୍କର ଆର୍ଥିକ ସମ୍ବଳ ଅଛି ଓ ସେ ଦେଶ ବିଦେଶ ବୁଲୁଛନ୍ତି, ବିନା କଷ୍ଟରେ ସେଗୁଡ଼ିକ ସଂଗ୍ରହ କରି ମୋତେ ଯୋଗାଇ ଦେଇପାରିବେ । ତେବେ ଯେଉଁଟା ସରକାର ଦେବା କଥା, ସେ ଅଭାବ ତୁମ ବାପା କାହିଁକି ପୂରଣ କରିବେ କହିଲ ? ତୁମେ ଆଜି ମୋ ଠାରେ ଗବେଷଣା କରୁଛ ବୋଲି କଣ ମୋ ପ୍ରତି ଅନୁରକ୍ତି ଦେଖାଇ ? ତୁମ ବାପାଙ୍କର ଏହି ଅନୁରକ୍ତି ପାଇଁ ଅଶେଷ ଧନ୍ୟବାଦ । କହିଦେବ ଆମ ଦେଶରେ ମିଳୁଥିବା ସମ୍ବଳ ଭିତରେ ମୁଁ ମୋ ଗବେଷଣାକୁ ସୀମାବଦ୍ଧ କରିବାକୁ ଚେଷ୍ଟା କରିବି । "ମୁଁ ଆଉ ଆଧୁନିକ ଉଚ୍ଚଧରଣର ଯନ୍ତ୍ରପାତି ବା ଉଚ୍ଚଧରଣର ଗବେଷଣା ପାଇଁ ମନ ବଳାଇବି ନାହିଁ ।

ସରକାରଙ୍କର ଏଭଳି ନିରୁତ୍ସାହ ବାଣୀ ଶୁଣି ଅମରେଶ ମନରେ ଦେଖାଦେଲା ବିଦ୍ରୋହ । ଭାବିଲା ଯେଉଁ ଗବେଷଣାକୁ ପାଶ୍ଚାତ୍ୟ ଦେଶର ବୈଜ୍ଞା-ନିକମାନେ ଅଦରକାରୀ ବୋଲି ଭାବି ପରିତ୍ୟାଗ କରୁଛନ୍ତି, ଆମେ ସେ ଗୁଡ଼ିକୁ

ଗୋଟାଇ ଆଣି କରିବା ଛଡ଼ା କ'ଣ ଅନ୍ୟ ଉପାୟ ନାହିଁ ? ସେମାନେ ଯେଉଁ କାମ ଅଧା କରି, ଏହାର କିଛି ଭବିଷ୍ୟତ ନାହିଁ ବୋଲି ଭାବି ଛାଡି ଦେଉଛନ୍ତି ଆମେ ସେ ଗୁଡ଼ିକୁ କରି କ'ଣ ବାହାବା ନେବା ଆମେ ଗବେଷଣା କରୁଛୁ ବୋଲି ? ଏହିଭଳି ଜୋଡ଼ାଳିଆ ଗବେଷଣା କଲେ କ'ଣ ଆମ ଦେଶର ଉନ୍ନତି କେବେ କରି ପାରିବା ? ଏହା ଖାଲି ନିଜକୁ ନିଜେ ଠକାଇବା ଛଡା ଅନ୍ୟ କିଛି ନୁହେଁ । ଅମରେଶର ହୃଦବୋଧ ହେଲା, ଆମ ଦେଶରେ ଏହି ପରିସ୍ଥିତିରେ ଏହି ଧରଣର ତୃତୀୟ ଶ୍ରେଣୀ ଗବେଷଣା ଛଡ଼ା ଅନ୍ୟ କିଛି କରି ହେବନି । ପ୍ରଥମ ଶ୍ରେଣୀ ଗବେଷଣା ଆମ ଦେଶରେ ସ୍ୱପ୍ନ ହୋଇଥିବାରୁ ଆମ ଦେଶରୁ ପ୍ରଥମ ଶ୍ରେଣୀ ବୈଜ୍ଞାନିକ ବାହାରିବା ମଧ୍ୟ ଦୁରାଶା ଛଡ଼ା ଅନ୍ୟ କିଛି ନୁହେଁ ।

ବେଳେ ବେଳେ ଅମରେଶର ମନ ବିଦ୍ରୋହ କରି ଉଠେ, "ନା, ଏଭଳି ଧରଣର ଗବେଷଣା କରି ଲାଭନାହିଁ । ଗବେଷଣା ନାଁରେ ଆମ ଦେଶ ଲୋକଙ୍କୁ ଠକାଇବା ଦେଶ ଓ ଜାତି ପ୍ରତି କମ୍ ବଡ଼ ଅପରାଧ ନୁହେଁ । ସେ ଭାବେ ସେ ଯେଉଁ ଗବେଷଣା କରୁଛି, ତାହା ଦେଶର କିଛି କାମରେ ଆସିବ ନାହିଁ ।

ଯେଉଁଦିନ ଶୁଭ୍ରା ପି.ଏଇଚ.ଡି. ପାଇବା ପରେ ମମରେ ପାଦ ଧୂଳି ନେଇ ଆମେରିକାରେ ଉଚ୍ଚତର ଗବେଷଣା କରିବା ପାଇଁ ଯିବ ବୋଲି ବିଦାୟ ନେଲା, ସେ ଦିନ ଅମରେଶ ମନରେ ଦେଖାଦେଲା ଭାବାନ୍ତର । ଶୁଭ୍ରା ଆଜି ନିଜ ଦେଶ ଛାଡ଼ି ଚାଲି ଯାଉଛି ଆମେରିକା, ସେଠି ଗବେଷଣା କରିବ । ଯେଉଁ ଦେଶରେ ଗବେଷଣା କଲେ ସୁନାମ ଅର୍ଜନ କରି ହେବ, ସେ ଦେଶରେ ଯାଇ ସେ ଗବେଷଣା ନ କରିବ କାହିଁକି ? ଏଠି ନିଜ ଦେଶ ନିଜ ଦେଶ ବୋଲି କହି ନିଜର ମେଧା ଶକ୍ତିକୁ ବିନଷ୍ଟ ହେବାକୁ ଦେବ କାହିଁକି ?

ବେଳେବେଳେ କହିଲା, "ସାର୍, ଆଜି ମୁଁ ଯାହା କରିବାକୁ ଯାଉଛି, ଆପଣଙ୍କର ତାହା କିଛି ବର୍ଷ ତଳେ କରିବା ଉଚିତ୍ ଥିଲା । ଆପଣ ସେଥିରେ ମାନସିକ ଶାନ୍ତି ପାଇ ପାରିଥାନ୍ତେ । ଆପଣଙ୍କ ଦୁଃଖ ଲାଘବ ପାଇଁ ଏ ଦେଶରେ କେହି ପଦେଏ କହିବେ ନାହିଁ । ଆପଣ ଭାବିପାରନ୍ତି ମୁଁ ସ୍ୱାର୍ଥପର, କାହିଁକି ନା ଆମ ଦେଶ ଛାଡ଼ି ଅନ୍ୟ ଦେଶକୁ ଚାଲିଯାଉଛି । ବୃହତ୍ତର ମାନବିକତା ଦୃଷ୍ଟିରୁ ଏହାକୁ ବିଚାର କଲେ, ଏହା ସ୍ୱାର୍ଥପରତା ନୁହେଁ ବୋଲି ଜଣା ପଡିବ । ସାରି

ଦୁଃଖୀଙ୍କୁ ଏକ ପରିବାର ବୋଲି ଧରିନେଲେ, ଦେଶତ୍ୟାଗ ଏକ ଦୋଷ ବୋଲି ମନେ ହେବନି ସାର୍ ।

ଶୁଭ୍ରା ଚାଲିଗଲା ସତ, କିନ୍ତୁ ଅମରେଶର ଚିନ୍ତା ରାଜ୍ୟରେ ସୃଷ୍ଟି କରି ଦେଇ ଚାଲି ଏକ ଅଭୂତପୂର୍ବ ଆଲୋଡ଼ନ । ଅମରେଶ ଆଗରୁ ଭାବୁଥିଲା, ଯେଉଁମାନେ ନିଜ ଦେଶ ଛାଡ଼ି ଅନ୍ୟ ଦେଶକୁ ଚାଲାନ୍ତି, ସେମାନେ ସ୍ୱାର୍ଥପର । ଆମ ଲୋକମାନଙ୍କର ମେଧାଶକ୍ତି ଯଦି ଆମ ଦେଶର ଉପକାରରେ ନ ଲାଗି ଅନ୍ୟ ଦେଶର ଉପକାରରେ ଲାଗିଲା ସେଥିରେ ଆମ ଦେଶର ଲାଭ କଅଣ ?

ସେ ଆଗରୁ ଭାବୁଥିଲା ମଣିଷ ଅତ୍ୟଧିକ ସ୍ୱାର୍ଥପର ନ ହେଲେ ନିଜ ଦେଶ ଛାଡି ଅନ୍ୟ ଦେଶକୁ ଯାଏ ନାହିଁ । ବିଜ୍ଞାନର ଉନ୍ନତି କରିବା ନାଁରେ ସେ ନିଜ ଦେଶ ତ୍ୟାଗ କରି ଅନ୍ୟ ଦେଶକୁ ଆସିବାର ନାଏ । କିନ୍ତୁ ନିଜର ଅନ୍ତର୍ନିହିତ ସ୍ୱାର୍ଥପରତା ଏହା ପଛରେ ଲୁକ୍କାୟିତ ରହି କାମ କରୁଥାଏ । ଶୁଭ୍ରା ଚାଲିଗଲା ପରେ ଅମରେଶ ଭାବିଲା, "ନାଁ । ତା ଠିକ୍ ନୁହେଁ । ଶୁଭ୍ରା ଯାହା କରିଛି ତାହା ଠିକ୍ । ଶୁଭ୍ରା ଗଲାବେଳେ ଯାହା କହି ଯାଇଛି ତାହା ଅକ୍ଷରେ ଅକ୍ଷରେ ସତ ।

କିନ୍ତୁ ଠିକ୍ ପର ମୂହୂର୍ତ୍ତରେ ଭାବେ, "ନାଁ, ସେ ଭୁଲ ଭାବୁଛି, ପ୍ରଥମ ଭାବନା ହିଁ ତା'ର ଠିକ୍ । ଶୁଭ୍ରା ଯାହା କରିଛି ଠିକ୍ କରିନାହିଁ । ଶୁଭ୍ରାର ଦେଶ ପ୍ରୀତି ନାହିଁ । ଦେଶ ପ୍ରୀତି ଥିଲେ ସେ କ'ଣ ଆଜି ନିଜ ଦେଶ ଛାଡ଼ି ଚାଲିଯାଇଥାନ୍ତା ସୁଦୂର ଆମେରିକାକୁ ?

ଫେର୍ ଭାବିଲା," ନାଁ, ତାହା ନୁହେଁ । ଶୁଭ୍ରା ଆଜି ଏଠାରେ ଥିଲେ କଣ ପ୍ରକୃତରେ କରି ପାରିଥାନ୍ତା ? ସେହି ତୃତୀୟ ଶ୍ରେଣୀ ଗବେଷଣା ? ଭାରତରେ ତୃତୀୟ ଶ୍ରେଣୀ ଗବେଷଣା ଛଡ଼ା ପ୍ରଥମ ଶ୍ରେଣୀ ଗବେଷଣା ସ୍ୱପ୍ନ ଛଡ଼ା ଅନ୍ୟ କିଛି ନୁହେଁ । ସେ ଆଜି ଆମେରିକା ଚାଲିଯାଇଛି, ଠିକ୍ କରିଛି । ସେଠି ସେ ନା କରିବ ସେହି ଠାରେ କାମ କରି ଭାରତର ସୁନାମ ଅର୍ଜନ କରିବ ଗବେଷଣା କ୍ଷେତ୍ରରେ ।

( ଦୁଇ )

ବନମାଳିପୁର ବ୍ଲକ । ବିହାର ରାଜ୍ୟର ସିଂହଭୂମି ଜିଲ୍ଲାର ବିଭିନ୍ନ ବ୍ଲକ୍ ଭିତରୁ ଗୋଟିଏ । ଏହି ବ୍ଲକ୍ ଅଧୀନରେ ଆଠ ଦଶଗୋଟି ଗ୍ରାମପଞ୍ଚାୟତ । ଏହି ବ୍ଲକ୍‌ଟି ଓଡ଼ିଶା ରାଜ୍ୟର ସୀମାକୁ ଲାଗିଛି । ଏହି ଜିଲ୍ଲାରେ ଅର୍ଦ୍ଧାଧିକ ଲୋକ ଓଡ଼ିଆ । ହେଲେ ଜିଲ୍ଲାଟି ବିହାର ରାଜ୍ୟ ଭିତରେ ରହିଯାଇଛି । ଏହି ବ୍ଲକରେ ଥିବା ସବୁ ଗ୍ରାମ ପଞ୍ଚାୟତ ଭିତରୁ ଗୋବିନ୍ଦପୁର ଗ୍ରାମପଞ୍ଚାୟତ ସବୁଠାରୁ ବଡ଼ । ଏହା ଆଠ ଖଣ୍ଡି ଗାଁକୁ ନେଇ ଗଠିତ ହୋଇଛି ।

ଗାଁ ଗୁଡ଼ିକର ଅବସ୍ଥା ଅତ୍ୟନ୍ତ ଦାରିଦ୍ର୍ୟମୟ । କୃଷି ହେଲା ଏକମାତ୍ର ଭରସା । ଜମି ମାଲିକମାନେ ହେଲେ ଉଚ୍ଚ ଶ୍ରେଣୀର ଲୋକ । ଚାରି ପାଞ୍ଚଜଣ ଲୋକଙ୍କ ହାତରେ ଗାଁ ଗୋଟାକର ସମସ୍ତ ଜମି ରହିଛି । ଗାଁର ଅନ୍ୟ ଅଧିବାସୀ ମାନେ ଏହି ଜମିକୁ ଭାଗ ଚାଷକରି ଚଳନ୍ତି । ଜଣକା ମାଣେ ଦୁଇମାଣରୁ ଅଧିକ ଜମି ଚଷିବାକୁ ପାଆନ୍ତିନି । ଏତକ ଜମିରୁ ଯେତକ ଫସଲ ମିଳେ ଅଧେ ଜମି ମାଲିକଙ୍କୁ ଦେଇ ବାକି ଅଧକରେ ନିଜ ଗୁଜୁରାଣ ମେଣ୍ଟାନ୍ତି । ତେଣୁ ବର୍ଷକ ଭିତରେ ଛମାସ ଓପାସ । ଦିନ ମଜୁରିଆ କାମ ବି ତ ମିଳେନି । ପାଖ ଆଖରେ କଳ କାରଖାନା ନାହିଁ, ଯେଉଁଠି କୁଲିଗିରି କରି ଦିପଇସା ଅର୍ଜ୍ଜନ କରି ପାରନ୍ତେ ।

ଏହି ଗ୍ରାମ ଗୁଡ଼ିକରେ ଜଳସେଚନ ବ୍ୟବସ୍ଥା ନାହିଁ, ଥିଲେ ଅବା ବର୍ଷକୁ ଦୁଇ ତିନୋଟି ଫସଲ କରି ନିଜର ଅଭାବ ମେଣ୍ଟାନ୍ତେ । ଗୋବିନ୍ଦପୁର ଗ୍ରାମ ପଞ୍ଚାୟତ ଦେଇ ବହିଯାଉଛି ଗୋବରୀ ନାମକ ଛୋଟିଆ ନଈଟିଏ, ଆମ

ସୁବର୍ଣ୍ଣରେଖାର ଏକ ଉପନଦୀ । ଯଦି ବା ଏହି ନଈର ଦୁଇମୁଣ୍ଡ ଶୁଖିଲା, କିନ୍ତୁ ଏହି ଗାଁ ଭିତର ଦେଇ ଯେଉଁତକ ଅଂଶ ବହିଯାଉଛି, ସେଥିରେ ବର୍ଷସାରା ଜଳ ଥାଏ । ନଦୀରେ ଅବଶ୍ୟ ବେଶି ପାଣି ନ ଥାଏ । ଯେତିକ ଥାଏ, ସେତକକୁ ନଦୀକୂଳ ଜମିରେ ମଡାଇ ବର୍ଷର ସବୁ ଦିନେ ପନିପରିବା ଚାଷଠାରୁ ତୈଳବୀଜ, ଖୋଟ, ତମାଖୁ ପର୍ଯ୍ୟନ୍ତ ବହୁତ କିଛି ଚାଷ କରାଯାଏ । ଏହି ଜମିଗୁଡ଼ିକ ଜମି ମାଲିକମାନଙ୍କ ଖୋଦ୍ ହାତଚାଷ । ତେଣୁ ଏଥିରୁ ଦି ପଇସା ଅର୍ଜ୍ଜନ କରି ଜମି ମାଲିକମାନେ ବେଶ୍ ଭଲରେ ଚଳନ୍ତି ।

ହାତ ଆଙ୍ଗୁଳିରେ ଗଣିଲା ଭଳି ଯେଉଁ ଅଳ୍ପ କେଇଜଣ ଜମିମାଲିକ ଅଛନ୍ତି, ସେହିମାନଙ୍କୁ ଛାଡିଦେଲେ ଗାଁ ଗଡ଼ିକର ଅନ୍ୟ ଅଧିବାସୀମାନଙ୍କ ଅବସ୍ଥା କହିଲେ ନସରେ । ଦାରିଦ୍ର୍ୟର ସୀମାରେଖାର ବହୁ ତଳେ ସେମାନେ ଥାଆନ୍ତି ।

ଏହା ବ୍ୟତୀତ ଗାଁର ଅନ୍ୟମାନଙ୍କର ଯାହା ପାଏ, ଦିପାଆ ଜମି ନିଜର ପୈତୃକ ଅମଳରୁ ରହି ଆସିଛି, ସେତକ ବନ୍ଧା ପଡ଼ିଛି ଗାଁ ମହାଜନ ପାଖରେ । ଏହିସବୁ ଗରିବ ଲୋକଙ୍କ ଜମି ବନ୍ଧାନେଇ ଗାଁ ମହାଜନ ଜଣେ ବଡ଼ ଜମିମାଲିକ । ଯେଉଁମାନେ ବନ୍ଧା ଦେଇଛନ୍ତି; ତାଙ୍କର ଦ୍ୱାରା ଚାଷ କରାଇ ସେ ଜମିର ଅଧେ ଫସଲ ବିନା ପରିଶ୍ରମରେ ମାରି ନିଅନ୍ତି ।

ନଦୀକୂଳଆ ଜମି ଭିତରୁ ଯେଉଁ ଅଳ୍ପ କେତେକାଂଶ ଅନ୍ୟ ଗାଁଲୋକଙ୍କର ଅଛି, ସେଥିରେ ଯେଉଁ ଅର୍ଥକରୀ ଫସଲ ଚାଷହୁଏ, ଚାଷର ଲାଭ ମାରି ନିଅନ୍ତି ରାଜ୍ୟ ବାହାରର ବ୍ୟବସାୟୀମାନେ । ତୈଳବୀଜ ଓ ତମାଖୁ ମହଲ ସେମାନଙ୍କର ପ୍ରଧାନ ଚାଷ । ଚାଷ ପରେ ପରେ ବାହାର ବ୍ୟବସାୟୀମାନେ ଆସି ସେମାନଙ୍କୁ ଆଗତୁରା ଅଳ୍ପ କିଛି ଟଙ୍କା ଦେଇ ସେମାନଙ୍କ ଫସଲ କିଣିନେଇ ଯାଆନ୍ତି ।

ଚାଷୀ ଫସଲ କାଟେ ସତ, କିନ୍ତୁ ଚାଷ ଅମଳ ପରେ ସେଗୁଡ଼ିକ ବ୍ୟବସାୟୀର ଟ୍ରକରେ ଲଦା ହୋଇ ରାଜ୍ୟ ବାହାରକୁ ଚାଲିଯାଏ । ଗରିବ ଚାଷୀ ଜମିରେ ଚାଷ ଫଳାଏ ସତ, କିନ୍ତୁ ଲାଭ ଖାଆନ୍ତି ଅନ୍ୟମାନେ ।

ଏହି ଗ୍ରାମ ଗୁଡ଼ିକରେ ଲୋକମାନଙ୍କର ଯାହା ଘର ଅଛି, ତାହା ଘର ଭଳି ଘର ନୁହେଁ । ଝଡ଼, ବର୍ଷା ହେଲେ ଲୋକଙ୍କ ହିନସ୍ତା କହିହେବ

ନାହିଁ । ଖାଇବାକୁ ଅନ୍ନ ନାହିଁ, ପିନ୍ଧିବାକୁ କ'ଣ ଲୁଗା ଅଛି ? ପିଲାଗୁଡ଼ିକ ଅସ୍ଥି କଙ୍କାଳସାର, ପିନ୍ଧିବାକୁ କିଛି ନ ଥିବାରୁ ଲଙ୍ଗଳା । ଗାଁଲୋକଙ୍କ ଅବସ୍ଥା ଦେଖିଲେ ନିଷ୍ଠୁର ହୃଦୟ ବି କାନ୍ଦି ଉଠିବ ।

ଗାଁ ମାନଙ୍କରେ ସ୍କୁଲ ସ୍ୱଳ୍ପ, ପିଲାଙ୍କ ପାଠପଢ଼ିବା ପ୍ରଶ୍ନ ଉଠିବ କୁଆଡ଼ୁ ? ଗତ ଦୁଇଦଶନ୍ଧି ଠାରୁ ଅଧିକକାଳ ହେବ ଦେଶ ସ୍ୱାଧୀନ ହୋଇ ଥିଲେହେଁ ସେମାନଙ୍କ ଅବସ୍ଥାର କିଛି ମାତ୍ର ଉନ୍ନତି ହୋଇନି । ଭୋଟବେଳ ଛାଡ଼ିଦେଲେ ଏଇ ଅଞ୍ଚଳର ଲୋକପ୍ରତିନିଧିଙ୍କର ଦୃଷ୍ଟି ଏ ଅଞ୍ଚଳକୁ ଭୁଲରେ କେବେ ପଡ଼େ ନାହିଁ । ଦେଶ ସ୍ୱାଧୀନ କି ପରାଧୀନ ଏ ଅଞ୍ଚଳର ଲୋକେ ଜାଣନ୍ତିନି, ଜାଣି ବା କି ଲାଭ ?

ଏହି ଗାଁ ଗୁଡିକ ବ୍ଲକ ଅଧୀନକୁ ଆସିଲା ଦିନରୁ ସରକାରଙ୍କ ଗ୍ରାମ ଉନ୍ନୟନ ଯୋଜନାର ପ୍ରଚୁର ଏହି ଗାଁ ଗୁଡ଼ିକରେ ଯେ ନ ହୋଇଛି ତା' ନୁହେଁ । ଲୋକମାନଙ୍କୁ ନାନା ମିଥ୍ୟା ପ୍ରତିଶ୍ରୁତି ଦିଆଯାଇ ସେମାନଙ୍କ କଲ୍ୟାଣାର୍ଥେ ଆସିଥିବା ଟଙ୍କାର ଅଧିକାଂଶ ବ୍ୟକ୍ତି ବିଶେଷଙ୍କ ନିକଟକୁ ଚାଲିଯାଇଛି, କିଛି ରାଜନୀତି ଦଳଙ୍କ ପାଣ୍ଠିରେ ସାମିଲ ହୋଇଯାଇଛି ।

ବ୍ଲକର ରାସ୍ତାଘାଟର ଉନ୍ନତି, ସଘନ କୃଷି ଯୋଜନା ସଘନ ପଶୁପାଳନ, ସବୁଜ ବିପ୍ଳବ, ଶ୍ୱେତ ବିପ୍ଳବ ନାଁରେ ଲକ୍ଷଲକ୍ଷ ଟଙ୍କା ଏହି ବ୍ଲକକୁ ଆସିଛି, କିନ୍ତୁ ଗାଁରେ ପହଞ୍ଚିପାରିନି । ଅଧାବାଟରୁ ଉଭେଇଯାଉଛି । ନୂଆନୂଆ ପ୍ରକାର ବିହନ, ସାର, କୀଟନାଶକ ଆଦି ଯାହା ଆସେ, ତାହା ବ୍ଲକ ଅଫିସରୁ ହିଁ ହରଣଚାଲ ହୋଇଯାଏ । ସରକାରଙ୍କ ଠାକୁ ମିଛ ରିପୋର୍ଟ ଯାଏ ଗାଁ ମାନଙ୍କରେ ବଣ୍ଟାଗଲା ବୋଲି । ଏଥିରୁ କେତେ ଲୋକ ଯେ ହାତ ଚିକ୍କଣ କରନ୍ତି, ତା'ର ଇୟତ୍ତା ନାହିଁ ।

ତାଛଡ଼ା ଗାଁଲୋକଙ୍କ ନାଁରେ କଣ୍ଟ୍ରୋଲ ଚିନି, ତେଲ, ଗହମ ଆସେ । ବ୍ୟବସାୟୀମାନଙ୍କ ଦୟାରୁ ସେସବୁ ଜିନିଷଙ୍କ ଭାଗ୍ୟରେ ଗାଁ ଦର୍ଶନ ମିଳେନି । ଯେଉଁଠି କିଣାହୁଏ, ସେଇଠି ବନ୍ଦୀହୋଇ ସେଠିବାଟେ ଅନ୍ୟତ୍ର ଚାଲିଯାଏ । ଖାଲି କଣ୍ଟ୍ରୋଲ ବ୍ୟବସାୟୀଙ୍କ ଖାତାରେ ନାଁ ଭରତି ହୁଏ, କେତେ ସତ ଆଉ କେତେ ମିଛ ନାଁ । ଏହି ଲାଭ ଯେ ଖାଲି ଜଣକ ପକେଟକୁ ଯାଏ, ତା ନୁହେଁ । ଶୁଣାଯାଏ ଏଥିର କିଛି ଅଂଶ ଜିଲ୍ଲାର ବଡ଼ ବଡ଼ ଅଫିସରଙ୍କ ଘରକୁ ବିଭିନ୍ନ ରୂପ ନେଇଯାଏ ।

ବନମାଳିପୁର ବ୍ଳକର ଭାଗ୍ୟରେ ଯେ ସବୁ ଦିନେ ଏଇ ଅବସ୍ଥା ଲେଖାଥିଲା, ତା’ ନୁହେଁ । ହଠାତ୍ ଏହି ବ୍ଳକର ଭାଗ୍ୟ ପରିବର୍ତ୍ତନ ହେଲା । ନୂଆହୋଇ ଏ ବ୍ଳକକୁ ଆସିଲେ ବ୍ଳକ ଡେଭଲପମେଣ୍ଟ ଅଫିସର ରାମକୃଷ୍ଣ ଦେଶପାଣ୍ଡେ । ବା.ଡ଼.ଓ ଙ୍କ ଅତ୍ୟଧିକ ପରୋପକାରୀ, ଗାଁ ଲୋକଙ୍କ ଅବସ୍ଥା କେମିତି ଭଲ ହେବ, ସେଥିପ୍ରତି କଡ଼ା ଦୃଷ୍ଟି ।

ବେଙ୍ଗଲା ଖଣ୍ଡ ଶକ୍ତ ହେଲେ ଯେମିତି ବଳଦମାନେ ଏଆଡ଼େ ସେଆଡ଼େ, ଯାଇପାରନ୍ତିନି, ସେହିଭଳି ବି.ଡି.ଓ ଯଦି ସଚ୍ଚା ଲୋକ ହୁଅନ୍ତି ତେବେ ଗ୍ରାମ-ସେବକ, ଗ୍ରାମସେବିକା, ଏସ୍.ଇ.ଓ.ମାନେ ହାତ ଟେକି କଣ କରିପାରନ୍ତିନି । ନୂଆ ବା.ଡ଼.ଓ. ଆସିବା ସଙ୍ଗେ ସଙ୍ଗେ ବନମାଳିପୁର ବ୍ଳକର ଭାଗ୍ୟ ଖୋଲିଲେ । ଗୋବର୍ଦ୍ଧନପୁର ସମେତ ଏହି ବ୍ଳକର ଗ୍ରାମପଞ୍ଚାୟତ ଗୁଡ଼ିକୁ ଘନଘନ ବଡ଼.ଓ.ଙ୍କ ଗସ୍ତ ଚାଲିଲା । ଗାଁର ପ୍ରକୃତ ଅବସ୍ଥା ପର୍ଯ୍ୟବେକ୍ଷଣ କରି ଲୋକମାନଙ୍କୁ କ'ଣ କ'ଣ ସାହାଯ୍ୟ ଦିଆଯାଇ ସେମାନଙ୍କ ଅବସ୍ଥାର ଉନ୍ନତି କରାଯାଇ ପାରିବ, ବ.ଡ଼.ଓଙ୍କ ପ୍ରଧାନ ଚିନ୍ତାର ବିଷୟ ହୋଇପଡ଼ିଲା ।

ବ.ଡ଼.ଓଙ୍କ ପରି ଆଉ ପରୋପକାରୀ ଜିଲ୍ଲା ମାଜିଷ୍ଟ୍ରେଟ ଜୁଟିଗଲେ ମିଶ୍ର ତ୍ରିପାଠୀ । ଅଧିକ ଧର୍ମପରାୟଣ, ଡେପୁଟି ମାଜିଷ୍ଟ୍ରେଟରୁ ଉଠି ଉଠି ଆଇ.ଏ.ଏସ ହୋଇଛନ୍ତି । ଅନ୍ୟ ଆଇ.ଏ ଏସଙ୍କ ଭଳି ଏହାଙ୍କ ରକ୍ତ ସେତେ ଗରମ ନୁହେଁ । ଯଥେଷ୍ଟ ଶୀତଳ । ସେ ଭଗବାନଙ୍କୁ ବଡ଼ ଭୟ କରନ୍ତି । ଅନ୍ୟାୟର ପାଖ ମାଡ଼ନ୍ତି ନାହିଁ । ନିଜ ଜିଲ୍ଲାର ଲୋକଙ୍କ ଅବସ୍ଥା କେମିତି ଭଲ ହେବ, ସେଥିକୁ ଭାରି ନଜର ।

ଠିକ୍ ଲୁହାକୁ ଠିକ କମାର ଭଳି ପରୋପକାରୀ ବ.ଡ଼.ଓଙ୍କ ସହିତ ପରୋପକାରୀ ଜିଲ୍ଲା ମାଜିଷ୍ଟ୍ରେଟ ବନମାଳିପୁର ବ୍ଳକର ଭାଗ୍ୟ ବଦଳାଇଦେଲେ । ଗାଁରେ ରାସ୍ତା କେମିତି ତିଆରି ହେବ, ପିଲାଙ୍କ ପାଇଁ ସ୍କୁଲ ବସିବ, ନଦୀ, ପୋଖରୀ ସଫାହୋଇ ମାଛଚାଷ ହେବ, ଜମି ଗୁଡ଼ାକରେ ଭଲ ବିହନ ଓ ସାର ଦେଇ ଚାଷର ଉନ୍ନତି କରାଯିବ, ଏଇଭଳି ବହୁ ଯୋଜନା ବ.ଡ଼.ଓ.ଙ୍କ ସହାୟତାରେ ଗ୍ରାମମାନଙ୍କରେ ଆରମ୍ଭ ହେଲା ।

ଆଗ ବ.ଡ଼.ଓଙ୍କ ଭଳି ରାମକୃଷ୍ଣ ବାବୁ କାଗଜ କଲମର ବି.ଡି.ଓ ନ ଥିଲେ, ସେ ଥିଲେ ପ୍ରକୃତରେ କାର୍ମିକ ବ.ଡ.ଓ । ସରକାର ବ୍ଳକକୁ ଯାହା ସାହାଯ୍ୟ

ଦେଉଛନ୍ତି, ସେଗୁଡ଼ିକ ଲୋକଙ୍କଠାରେ କେମିତି ଠିକ୍ ଠିକ୍ ପହଞ୍ଚିବ, ସବୁବେଳେ ନଜର । ନୂଆ ବି.ଡ଼ି.ଓଙ୍କ ସାଧୁତାରେ ଗ୍ରାମସେବକ, ଗ୍ରାମସେବିକା, ଏସ.ଇ.ଓ ମାନେ ଥରହର । ବି.ଡ଼ି.ଓଙ୍କୁ ଜିଲ୍ଲା ମାଜିଷ୍ଟ୍ରେଟ ତାଙ୍କ ସାଧୁତା ପାଇଁ ଭଲ ପାଆନ୍ତି, ଏକଥା ତଳ ଅଫିସରମାନେ ଶୁଣିଲା ବେଳକୁ ସେମାନଙ୍କ ଦେହ ଥରି ଉଠୁଥାଏ । ଗାଁରେ କିଛି ନ କରି ମିଛ ରିପୋର୍ଟରେ ସେମାନେ ଆଉ ଖାତା ପୂରାଉ ନାହାନ୍ତି । ଗାଁର କଣ୍ଟ୍ରୋଲ ଜିନିଷ ଆଉ ପୂର୍ବଭଳି ସହରରେ ବିକ୍ରୀ ହୋଇଯାଉନି ଅଧିକ ଦରରେ ।

ଦେଶପାଣ୍ଡେ ବାବୁଙ୍କର ଦିନେ ନଜର ପଡ଼ିଲା ଗୋବିନ୍ଦପୁର ଗ୍ରାମ ପଞ୍ଚାୟତରେ । ଗ୍ରାମସେବକ ଓ ଗ୍ରାମସେବିକା ମାନେ ଘରଘର ବୁଲି ଗ୍ରାମବାସୀ ମାନଙ୍କୁ ଡାକି ଏକ ସଭା କଲେ, ଯେଉଁ ସଭାରେ ଉଦ୍‌ବୋଧନ ଦେଲେ ବି.ଡ଼ି.ଓ ।

ବ୍ଲକ ହେବା ଦିନରୁ କେହି ବି.ଡ଼ି.ଓ ଗୋବିନ୍ଦପୁର ଅଞ୍ଚଳକୁ କେବେ ଆସି ନଥିଲେ, କି ଲୋକଙ୍କର ଉପକାର ହେଲାଭଳି କି କି କାମ ବ୍ଲକରେ କରାଯାଇପାରିବ, ସେ ସମ୍ବନ୍ଧରେ ଗ୍ରାମବାସୀଙ୍କ ସହିତ ଆଲୋଚନା କି ପରାମର୍ଶ କରି ନ ଥିଲେ ।

ବ୍ଲକର ବି.ଡ଼ି.ଓ ଗ୍ରାମବାସୀଙ୍କୁ ଡାକି ଆଲୋଚନା କରିବା ଏହି ସର୍ବପ୍ରଥମ । ବ୍ଲକ ଅଫିସର ଗାଁର କି କି ଉନ୍ନତି କରାଯିବ ବୋଲି କହିବେ ଶୁଣିବା ପାଇଁ ଗାଁଯାକର ଲୋକେ ସ୍ତ୍ରୀ ପୁରୁଷ ନିର୍ବିଶେଷରେ ସ୍କୁଲପାଖ ପଡ଼ିଆରେ ଆସି ଜମା ହେଲେ । ଗାଁର ମୁଖିଆ ମାନେ ଆଗ ଧାଡ଼ିରେ ବସିଥାନ୍ତି ।

ବି.ଡ଼ି.ଓ ଆରମ୍ଭ କଲେ ସର୍ବପ୍ରଥମେ ଗାଁ ସ୍କୁଲରୁ । ଗାଁ ସ୍କୁଲର ଦୂରବସ୍ଥା ଦେଖାଇ ଗ୍ରାମବାସୀମାନଙ୍କୁ କହିଲେ "ବହୁଦିନ ତଳେ ଏଇ ସ୍କୁଲଟି ସମ୍ଭବତଃ ତିଆରି ହୋଇଥିଲା । ସେତେବେଳେ ଗାଁର ପିଲାମାନେ ଏ ସ୍କୁଲରେ ପଢ଼ୁଥିଲେ । ସହରମାନଙ୍କରେ ପ୍ରତିବର୍ଷ ସ୍କୁଲର ଛାତ୍ରସଂଖ୍ୟା ବଢ଼ୁଥିବା ସ୍ଥଳେ ଏ ସ୍କୁଲରେ ଛାତ୍ରସଂଖ୍ୟା କମି କମି ଚାଲିଛି । ସ୍କୁଲ ଘର ମରାମତି ହେବାକୁ ନାହିଁ । ଭଲ ଶିକ୍ଷକ ଦେଖି ନ ରଖିଲେ ଏହି ଗାଁର ଶିକ୍ଷା ଉପରକୁ ଯିବା

ପରିବର୍ତ୍ତେ ନିମ୍ନଗାମୀ ହେବ । ଏଇ ସ୍କୁଲ୍ ଘରର ମରାମତି, ଭଲ ଶିକ୍ଷକ ରଖିବା ଓ ଗାଁର ପିଲାମାନେ ଯେମିତି ସମସ୍ତେ ପଢ଼ିବେ, ସେହି ହେଲା ମୋର ପ୍ରଥମ କାମ ।

"ତା'ପରକୁ ଚାଷ । ମୁଁ ଏ ଗାଁର ଚାଷର ଦୁରବସ୍ଥା ଦେଖିଛି । ନୂଆ ନୂଆ ପ୍ରକାର ବିହନ, ସାର ବ୍ୟବହାର କରି ଜମିର ଅମଳ କେମିତି ବଢ଼ାଇ ହେବ, ମୁଁ ଆପଣମାନଙ୍କୁ ଏ ବର୍ଷ ଚାଷକରି ଦେଖାଇଦେବି ।

ଗାଁର ପୋଖରୀକୁ ସଫା କରି ମାଛ ଚାଷ, ନଷ୍ଟ ହୋଇଯାଇଥିବା ରାସ୍ତାଘାଟ ଗୁଡ଼ିକୁ ଉଦ୍ଧାର କରି ସେଗୁଡ଼ିକର ଉନ୍ନତି କରିବା ମୋର ଅନ୍ୟତମ କାମ । ଖାଲି ମୋର ଆପଣମାନଙ୍କୁ ଅନୁରୋଧ ସରକାରରୁ ଯାହା ଅର୍ଥ ବା ସାହାଯ୍ୟ ଆସୁଛି ତାହା ଯଥାଯଥ ଭାବରେ ଯେମିତି ଖରଚ ହୁଏ, ଆପଣମାନେ ଟିକିଏ ଦୃଷ୍ଟି ରଖିଥିବେ । ତା' ନହେଲେ କେଉଁ ସ୍ତରରେ କି ଖିଲାପ ହୋଇଯିବ ସହଜରେ ଧରାପଡ଼ିବ ନାହିଁ । ଗାଁର ପଞ୍ଚାୟତ ସମିତି ନିର୍ବାଚନ କେଇଦିନ ହେଲା ହୋଇନି । ଏହି ନିର୍ବାଚନ ସଅଳ ସଅଳ ଶେଷ କରିଦେଲେ ନିଜ ନିଜ ଗ୍ରାମର ପ୍ରତିନିଧିମାନେ ଏ ଦିଗରେ ସରକାରଙ୍କୁ ସାହାଯ୍ୟ କରିବାପାଇଁ ବାହାରି ଆସିବେ ।"

ଖୁବ୍ ଶୀଘ୍ର ଗ୍ରାମ ପଞ୍ଚାୟତ ସମିତି ନିର୍ବାଚନ ଶେଷ ହୋଇଗଲା । ଗାଁର ସବୁଠାରୁ ଯେ ବଡ଼ ଜମି ମାଲିକ, ସେ ହେଲେ ଚେୟାରମେନ୍ । ବି.ଡ଼ି.ଓ ତାଙ୍କ ସହିତ ଆଲୋଚନା କରି ଧୀରେ ଧୀରେ ଗାଁର ବିଭିନ୍ନ ପ୍ରକାର ଉନ୍ନତି କରାଇଲେ ।

ସ୍କୁଲ ଘରର ମରାମତି କରାଇ ସେଠାକୁ ଆଣାଇଲେ ସେହି ଗାଁର ଶିକ୍ଷକ ହରି ମହାନ୍ତିଙ୍କୁ । ହରି ମହାନ୍ତିଙ୍କ ଘର ଯଦିଓ ସେହି ସ୍କୁଲ ପାଖରେ, ତାହାଙ୍କୁ ଆଗ ବି.ଡ଼ି.ଓ ବଦଳି କରି ଦେଇଥିଲେ ସେଠାରୁ ତିନି କ୍ରୋଶ ଦୂର ଗାଁ ଗୁଡ଼ ଆଉ ଏକ ଗାଁକୁ । ହରି ବାବୁ ଖୁବ୍ ସଚ୍ଚୋଟ ଲୋକ, ପରୋପକାରୀ । ସେ ଏଠି ଥିଲାବେଳେ ଘରଘର ବୁଲି ପିଲାଙ୍କୁ ଡାକି ତାଙ୍କ ସ୍କୁଲକୁ ଆଣୁଥିଲେ ।

ତାଙ୍କ ବଦଳି ପରେ ଯିଏ ଆସିଲେ ସେ ଗାଁ ସ୍କୁଲ କେବେ ଦର୍ଶନ କରନ୍ତି ନାହିଁ । ସେ ଘରେ ଥାଇ ବ୍ୟବସାୟ କରନ୍ତି । ମାସର ପ୍ରଥମ ସପ୍ତାହରେ ବ୍ଲକକୁ ଆସି ଦରମା ନେଇଯାନ୍ତି । "ରାଧେ ରାଧେ, ତମର ଅଧେକୁ ମୋର ଅଧେ" ମାତରେ କିଛି ଦକ୍ଷିଣା ଦରମା ନେଲା ବେଳେ ଦେଇଯାଆନ୍ତି ।

କିନ୍ତୁ ନୂଆ ବି,ଡି,ଓ ଆସିଲା ପରେ ଆଉ ସେ କାମ ଘଟିଲା ନାହିଁ । ତାଙ୍କର ଏଭଳି କାମ ଦେଖି ତାଙ୍କୁ ଅନ୍ୟତ୍ର ବଦଳି କରାଯାଇ ସ୍କୁଲର ପୂର୍ବ ଶିକ୍ଷକ ହରିବାବୁଙ୍କୁ ଅଣାଗଲା । ହରିବାବୁ ସେହି ଗାଁର ଲୋକ । ସେ ଗାଁ ପାଇଁ ଯେତେ ଚେଷ୍ଟା କରିବେ, ଅନ୍ୟ କେଉଁ ଶିକ୍ଷକ କ'ଣ ସେତେ କରିବେ ? ସତକୁ ସତ ହରିବାବୁ ଆସିଲା ଦିନରୁ ସ୍କୁଲ ଠିକ୍‌ମତ ଚାଲିଲାଣି । ଦିନକୁ ଦିନ ଛାତ୍ର ସଂଖ୍ୟା ବଢ଼ିବାରେ ଲାଗିଛି ।

ଗାଁ ଭିତରେ ହରିବାବୁଙ୍କ ଚଳପ୍ରଚଳ ଖୁବ୍ ଭଲ । ଏଣେ ମାଷ୍ଟ୍ରି ଚାକିରି ତେଣେ ଭଲ ଜମିବାଡ଼ି ଦିଖଣ୍ଡ ଅଛି । ନିଜେ ଚାଷକରି ଦି'ପଇସା ଭଲ ଆୟ କରନ୍ତି । ପିଲା ବୋଲି ଗୋଟିଏ ଝିଅ, ଗୋଟିଏ ପୁଅ । ଝିଅଟି ବଡ଼ । ନାଁ ବାସନ୍ତୀ । ପାଖସ୍କୁଲରୁ ମେଟ୍ରିକୁଲେସନ ପ୍ରଥମ ଶ୍ରେଣୀରେ ପାସ କରି ଘରେ ଅଛି । ହରିବାବୁଙ୍କର ଇଚ୍ଛା ନାହିଁ ଝିଅକୁ କଲେଜରେ ପଢ଼ାଇବାକୁ । ଝିଅଟିକୁ କେମିତି ହାତକୁ ଦିହାତ କରିଦେଲେ ସେ ନିଶ୍ଚିନ୍ତ ହେବେ, ସେଇ ତାଙ୍କର ଚିନ୍ତା ।

ଝିଅଟି ଦେଖିବାକୁ ବେଶ୍ ସୁନ୍ଦର, ଉଜଳ ଢାଉଳ, ସତେ ଯେମିତି ଗୋଟିଏ ଗୁଡ଼ିଲରେ ଗଢ଼ା । ଚମ୍ପା ରଙ୍ଗ ଭଳି ବର୍ଣ୍ଣ । ସ୍ୱଭାବ ଚାଲିଚଳନ ଖୁବ ଧୀର । ମା'ବାପାଙ୍କୁ ଖୁବ ଆଦର । ପାଠପଢ଼ା ବନ୍ଦ ହେବା ଦିନରୁ ମା'କୁ ଘରର କିଛି କାମ କରିବାକୁ ଦିଏନି । ପୁଅ, ଝିଅ ସ୍ୱାମୀକୁ ନେଇ ହରିବାବୁଙ୍କ ସ୍ତ୍ରୀ ବେଶ୍ ଖୁସିରେ ସଂସାର ଚଳାନ୍ତି ।

ବି,ଡି,ଓ ଦିନେ ଗାଁକୁ ଆସିଥିଲେ । ଗାଁର ମୁଖିଆ ମୁଖିଆ ମାନଙ୍କୁ ଡାକି ଏକ ଛୋଟ ସଭା କରିଥିଲେ । ସେଇ ସଭାରେ ହରିବାବୁ ଜଣେ ନାମଜାଦା ସଭ୍ୟ । ବି,ଡି,ଓ ଯେଉଁ ନୂଆ କଥା ଗାଁରେ କରିବାକୁ ଚାହାନ୍ତି, ତାକୁ ଗାଁ ଲୋକଙ୍କୁ ବୁଝାଇ ଦିଅନ୍ତି ହରିବାବୁ । ଗାଁର ରାସ୍ତା କେମିତି ତିଆରି ହେବ, ପୋଖରୀ ସଫା ହୋଇ ମାଛ ଧାଆଁଳ ଛଡ଼ାଯିବ, ପିଇବା ପାଣି ଗାଁ ଲୋକଙ୍କୁ ଯୋଗାଇବା ପାଇଁ ଟିଉବ୍‌ୱେଲ ବସିବ, ଗାଁରେ ପନିପରିବା ଫଳ ଚାଷ ହେବ, ସରକାର ପଠାଇଥିବା ନଡ଼ିଆଗଛ ଆମ୍ବଗଛ ଚାରାସବୁ କେଉଁଠି କେଉଁଠି ଲଗାଯିବ ସେଇହେଲା ଆଲୋଚନାର ବିଷୟ ବସ୍ତୁ ।

ଗାଁର ସ୍ତ୍ରୀ ଲୋକମାନଙ୍କୁ ପାଠ ପଢ଼ାଇବା, ନାନାବିଧ ଘରକାମ ଶିକ୍ଷାଦେବା ପାଇଁ ଓ ପରସ୍ପର ମଧ୍ୟରେ ଭଲ ବୁଝାମଣା ଓ ମିଶାମିଶି ପାଇଁ ଏକ ମହିଳା ସମିତି ଗଠନର ଆବଶ୍ୟକତା ଉପରେ ଆଲୋଚନା ହେଲା । ମହିଳା ସମିତିରେ ମାଇପେ ପାଠ ପଢ଼ିବେ, ସୂତାକଟା ଶିଖିବେ, ସିଲେଇ କଳରେ ଲୁଗା ସିଲେଇ କରି ଶିଖିବେ, ଚେଞ୍ଚ, ଜାମା, କନ୍ଥାକନି ଶିଖିବେ, ରୋଗ ପ୍ରତିଷେଧକ, ଜନ୍ମନିୟନ୍ତ୍ରଣ ସମ୍ବନ୍ଧରେ ନାନା କଥା ଜାଣିବେ, ଏହିସବୁ କାମ ପାଇଁ ଗୋଟିଏ ମହିଳା ସମିତି ଗଢ଼ିବାକୁ ପଡ଼ିବ ।

ବାଡ଼ିଓଙ୍କ ପରାମର୍ଶ ଶୁଣି ସଭ୍ୟମାନେ ଅମତ ହେବେ ବା କାହିଁକି ? ଯାହାସବୁ ତ ହେଉଛି ଗାଁର ଭଲ ପାଇଁ । ସମସ୍ତେ ରାଜି ହୋଇଗଲେ । କଥା ରହିଲା, ଏହି ମହିଳାସମିତିର ସେକ୍ରେଟେରୀ କିଏ ହେବ ?

ଜଣେ ଶିକ୍ଷିତା ସ୍ତ୍ରୀ ଲୋକ ଦରକାର, ଯେକି ଏହି ଗାଁର ଲୋକ ହୋଇଥିବ ଓ ଗାଁର ସ୍ତ୍ରୀଲୋକମାନଙ୍କ ସହିତ ତା'ର ଭଲ ସଦ୍‌ଭାବ ଥିବ । ସେ ମହିଳା ସମିତିର ହିସାବପତ୍ର ଠିକ୍ ଭାବରେ ରଖି ଜାଣିଥିବ ।

ବାଡ଼ିଓଙ୍କ ମୁହଁରୁ ସେକ୍ରେଟେରୀ କଥା ଶୁଣି ସମସ୍ତେ ପରସ୍ପରର ମୁହଁକୁ ଚାହାଁଚାହିଁ ହେଲେ । ଏମିତି ସ୍ତ୍ରୀଲୋକ ଗାଁରେ କାହିଁ ? ସମସ୍ତଙ୍କର ଭାଲେଣି ପଡ଼ିଲା । ସମସ୍ତଙ୍କୁ ଚୁପ୍ ରହିବା ଦେଖି ବା.ଡ଼.ଓ କହିଲେ, "ଏହି ଗାଁରେ କ'ଣ ଜଣେହେଲେ ଶିକ୍ଷିତା ସ୍ତ୍ରୀଲୋକ ନାହାନ୍ତି ଯେ କି ଏହାର ଦାୟିତ୍ୱ ନେଇ ପାରିବେ ? ଏହା ପାଇଁ ମୁଁ ତ ଅନ୍ୟ ଗାଁରୁ ସ୍ତ୍ରୀଲୋକ ଆଣାଇପାରିବିନି । ଆପଣ-ମାନଙ୍କ ଗାଁରୁ ଯେମିତି ହେଲେ ଜଣେ ସ୍ତ୍ରୀ ଲୋକ ବାହାର କରିବାକୁ ପଡ଼ିବ ।

ସମସ୍ତଙ୍କୁ ଚୁପ୍ ରହିବାର ଦେଖି ବା.ଡ଼.ଓ ହରିବାବୁଙ୍କୁ ପଚାରିଲେ 'କଣ ହରିବାବୁ, ଆପଣଙ୍କ ଗାଁରେ ମହିଳା ସମିତିର ସେକ୍ରେଟେରୀ ହେବା ପାଇଁ ଜଣେ ହେଲେ ବି ସ୍ତ୍ରୀ ଲୋକ କଣ ମିଳିବେନି ? ଲୋକ ନ ମିଳିଲେ ମହିଳା ସମିତି ଆରମ୍ଭ ହେବ କେମିତି ?

ହରିବାବୁ ଚିନ୍ତା କରିବାକୁ ଲାଗିଲେ, ଠିକ କଥା ତ, ସେକ୍ରେଟେରୀଟାଏ ନ ମିଳିଲେ ଏ ଯୋଜନା ତ ବାଏଁ ବାଏଁ ବନ୍ଦ ହୋଇଯିବ । ମେମ୍ବରଙ୍କ ଭିତରୁ ଜଣେ କହିଲେ, 'ହରିବାବୁଙ୍କ ଝିଅ ଛଡ଼ା ଏ ଗାଁରେ କେହି ପାଠୁଆ

ସ୍ତ୍ରୀ ଲୋକ ନାହାନ୍ତି ଅଞ୍ଚଳ । ହରିବାବୁ ନିଜେ ରାଜି ହୋଇ ତାଙ୍କୁ ସେକ୍ରେଟେରୀ କରନ୍ତୁ, ତେବେ ହୋଇ ପାରିବ, ନୋହିଲେ ନାହିଁ ।"

ହରିବାବୁ ଗୁଁ ଗୁଁ ହୋଇ କହିଲେ, "ତା କେମିତି ହେବ ? ଏତେ ଶ୍ରେଷ୍ଠ ଝିଅଟେ, ସେ କ'ଣ ଏତେ ବଡ଼ ଦାୟିତ୍ୱ ମୁଣ୍ଡରେ ବହନ କରି ପାରିବ ? ସେ ଏଇ ଗତ ବର୍ଷ ମେଟ୍ରିକ ପାସ କରିଛି । ବର୍ଷ ଷୋହଳ ସତର ଭିତରେ ।"

"ହଁ, ନ ହେବ କାହିଁକି ?" ପଞ୍ଚାୟତ ସମିତି ଚେୟାରମ୍ୟାନ କହିଲେ, ବାସନ୍ତୀ ବେଶ୍ ଦାୟିତ୍ୱବନ୍ତ । ଆମ ଗାଁର ସବୁ ସ୍ତ୍ରୀ ଲୋକେ ତାକୁ ନିଜର ଝିଅ ଭଳି ଭଲ ପାଆନ୍ତି । ସିଏ ତ ଆମ ସମସ୍ତଙ୍କ ଝିଅ ଭଳିଆ । ସେ ସେକ୍ରେଟେରୀ ହେଉ, ଆମେ ସବୁ କ'ଣ ସାହାଯ୍ୟ କରିବୁନି ତାକୁ ?"

ହରିବାବୁ ପ୍ରସ୍ତାବଟିକୁ ବିରୋଧ କରୁଥିଲେ ଅନ୍ୟମାନେ ତାଙ୍କ ହାତ ଧରି ଚକୋଇ ଆଉ ବିରୋଧ ନ କରିବାକୁ ଅନୁରୋଧ କଲେ ।

ଚେୟାରମେନ୍ କହିଲେ, "ଗୋଟାଏ ଦୁଇଟା ବର୍ଷ ସେ ସମ୍ଭାଳୁ ହରିବାବୁ, ଦେଖିବା ପରେ ଆଉ କାହାକୁ କରିବା । ବାସନ୍ତୀ କ'ଣ ଆଉ ସବୁଦିନେ ରହି ପାରନ୍ତା କି ? ସେ ତ ପରଘରୀ, ଦିନ କେଇଟା ଗଲେ ସେ ପରଘରକୁ ଚାଲିଯିବ । ବର୍ତ୍ତମାନ ପାଇଁ ବାସନ୍ତୀ ଏହି ଦାୟିତ୍ୱ ନେଉ । କ'ଣ କହୁଛନ୍ତି ହରିବାବୁ ?"

ହରିବାବୁ ଆଉ କ'ଣ କହିବେ ? ଅନିଚ୍ଛା ସତ୍ତ୍ୱେ ଚୁପ ରହିଲେ । ଏତେ ଗୁଡ଼ାଏ ଲୋକଙ୍କ ମୁହଁକୁ କିଏ ସେ ଭାଙ୍ଗି ପାରିବେ ?

ପରିଶେଷରେ ହରିବାବୁଙ୍କ ଝିଅ ବାସନ୍ତୀ ମହିଳା ସମିତିର ସେକ୍ରେଟେରୀ ହେବା ସ୍ଥିର ହେଲା । ଏଥିରେ ସମସ୍ତଙ୍କ ଆନନ୍ଦ । ଗାଁର ଝିଅ, ଗାଁରେ ରହି କାମ କରିବ, କ୍ଷତି କାହିଁକି ? ଝିଅଟି ବେଶ୍ ପରିଶ୍ରମୀ, ମିଷ୍ଟଭାଷିଣୀ, ହିସାବ-ପତ୍ର ଠିକ୍ ଭାବରେ ରଖିବାକୁ ଆଗ୍ରହୀ, ବାପ ଭଳି ସଚ୍ଚୋଟ ଓ ସାଧୁ, ପଇସାଟିଏ ଏପାଖ ସେପାଖ କରିବନି । ସେହିଭଳି ଲୋକଟିଏ ମିଳିଥିବାରୁ ବି. ଡ଼ି. ଓ.ଙ୍କର ଭାରି ଆନନ୍ଦ ।

ସରକାରଙ୍କ ତରଫରୁ ସିଲାଇ କଳ, ବହି, ସିଲଟ, ଲଣ୍ଠନ ଆଦି ମହିଳା ସମିତିକୁ ଚାଲିଆସିଲା । ବାସନ୍ତୀ ଏ ସବୁର ଠିକଣା ହିସାବ ରଖି ସେ

ଗୁଡ଼ିକର ବ୍ୟବହାର କେମିତି କଣ ହେବ ତହିଁର ଏକ ଯୋଜନା ତିଆରି କଲି । ଓ଼ିଅଟିର କାର୍ଯ୍ୟତତ୍ପରତା ଦେଖି ବ: ଡ଼: ଓ ଘର ଖୁସି ହେଲେ ।

ମହିଳା ସମିତିକୁ ସବୁ ଦିନ ଆସିଲେ, ଏହାର ଦିନେ ଶୁଭାରମ୍ଭ ନ କଲେ ନ ହୁଏ । ମହିଳା ସମିତିକୁ ଉଦ୍‌ଘାଟନ କରିବା ପାଇଁ ଦକ୍ଷିଣ ବିହାରର କମିସନର ମ ହାଦୟଙ୍କୁ ଡ଼ାକିବାକୁ ମିଟିଂରେ ଠିକ୍ ହେଲା । ଏହି ସଭାରେ ପ୍ରଧାନ ଅତିଥି ଭାବରେ ଯୋଗଦେବେ ସିଂହଭୂମି ଜିଲ୍ଲାର ଜିଲ୍ଲାପାଳ ଓ ସଭାପତି ହେବେ ଗୋବିନ୍ଦପୁର ଗ୍ରାମ ପଞ୍ଚାୟତର ଚେୟାରମେନ । ଉଦ୍‌ଘାଟନ ଉତ୍ସବ କେଉଁଦିନ ହେବ ଦିନ ଧାର୍ଯ୍ୟ ହୋଇଗଲା । କମିସନର ଓ ଜିଲ୍ଲାପାଳଙ୍କୁ ଆମନ୍ତ୍ରଣ କରି ଗୋବିନ୍ଦପୁରକୁ ଆଣିବା ଦାୟିତ୍ୱ ବ: ଡ଼. ଓ ନିଜେ ବହନ କଲେ ।

ଦକ୍ଷିଣ ବିହାରର କମିସନର ଗୋବିନ୍ଦପୁର ଗ୍ରାମ ପଞ୍ଚାୟତକୁ ଆସି ବ ମହିଳା ସମିତି ଉଦ୍‌ଘାଟନ କରିବାକୁ, ଏଇ କଥା ପ୍ରଚାରିତ ହୋଇଛି କ ନାହିଁ, ସଙ୍ଗେ ସଙ୍ଗେ ସେ ଅଞ୍ଚଳରେ ଉନ୍ନୟନ କାର୍ଯ୍ୟ ଜୋରସୋରରେ ଆରମ୍ଭ ହୋଇଗଲା ।

ଜିଲ୍ଲାପାଳ ଘନ ଘନ ସେ ଅଞ୍ଚଳକୁ ଗସ୍ତ କରି ରାସ୍ତାଘାଟ ତିଆରି, ନଳି, ପୋଖରୀ ଆଦିର ପରିଷ୍କାର କାମ ତଦାରଖ କଲେ । ଫଳଗଛ ରୋପଣ, ରାସ୍ତାଘାଟ ଉନ୍ନୟନ ଆଦି ଯୋଜନା କେମିତି ଚାଲିଛି ଦେଖିବାକୁ ଘନଘନ ଆସିଲେ । କମିସନର ସାହେବଙ୍କ ଆଖିରେ ଏଗୁଡ଼ିକ ନିଶ୍ଚୟ ପଡ଼ିବ, ତେଣୁ ଜିଲ୍ଲାପାଳଙ୍କ ନିର୍ଦ୍ଦେଶରେ ଗାଁର ରାସ୍ତାଘାଟ, ନଳି ପୋଖରୀ ସବୁ ପରିଷ୍କାର ପରିଚ୍ଛନ୍ନ କରାହେଲା ।

ସଭା ହେବା ପାଇଁ ବ. ଡ଼: ଓଙ୍କ ନିର୍ଦ୍ଦେଶରେ ଏକ ସଭାମଞ୍ଚ ତିଆରି ହେଲା । ଏହି ମଞ୍ଚରେ ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହେବ । ଗାଁର ଛୋଟ ଛୋଟ ପିଲାମାନଙ୍କୁ ଶିଖାଇ ପ୍ରାରମ୍ଭିକ ସଙ୍ଗୀତ ଓ ଉଦ୍‌ଯାପନ ସଙ୍ଗୀତ ଶିକ୍ଷା ଦିଆଗଲା । ବାସନ୍ତୀ ଚେଷ୍ଟାରେ ଏସବୁ କରା ହେଲା । ସନ୍ଧ୍ୟା ପାଞ୍ଚଟା ବେଳେ ଉଦ୍‌ଘାଟନ ଉତ୍ସବ ହେବା ସ୍ଥିର ହୋଇଥାଏ ।

+ + +

ମହିଳା ସମିତିର ଉଦ୍‌ଘାଟନ ଦିନ । ସାଢ଼େ ଚାରିଟା ସୁଦ୍ଧା କମିସନର ଭେଙ୍କଟରମନ୍ ଓ ଜିଲ୍ଲାପାଳ ଆସି ପହଞ୍ଚି ଗଲେ । ସେହିଦିନ ସକାଳୁ ବ. ଡ଼, ଓ

ଏହି ଗାଁକୁ ଅସି ଆଉ ଘରକୁ ଯାଇ ନାହାନ୍ତି । ଗ୍ରାମସେବକ ଓ ଗ୍ରାମ ସେବିକାମାନେ ଏଠାକାର ନାନାପ୍ରକାର ବନ୍ଦୋବସ୍ତରେ ଲାଗି ରହିଥାନ୍ତି । ସେ ସମୟରେ କେଉଁଠି କିଛି ଭୁଲ ଭଟକା ରହିଗଲେ କମିଶନର ସାହେବ ବିଗିଡ଼ି ଯିବେ । ସବୁ ଠିକ୍ ଠାକ୍ ହୋଇ ଯଥା ସମୟରେ ସଭା କାର୍ଯ୍ୟ ଆରମ୍ଭ ହେଲା ।

ଗାଁର ମୁଖିଆମାନଙ୍କ ଅନୁରୋଧରେ ଓ ଗ୍ରାମସେବକ ଓ ଗ୍ରାମସେବିକାମାନଙ୍କ ଡ଼ାକା ଡକରେ ଗାଁର ସମସ୍ତେ ପୁଅ, ଝିଅ, ବୁଢ଼ା, ବୁଢ଼ୀ ନିର୍ବିଶେଷରେ ଆସି ପହଞ୍ଚି ଗଲେ । ଖାଲି ଗୋବିନ୍ଦପୁର ଗାଁର ଲୋକ ନୁହେଁ, ଏହି ପଞ୍ଚାୟତର ସାତ ଆଠ ଖଣ୍ଡି ଗାଁର ଲୋକେ ଆସି ଜମି ଯାଇଥାନ୍ତି । ଶୁଣିବେ ଗାଁର ଉନ୍ନତି ପାଇଁ କମିସନର ଓ ଜିଲ୍ଲାପାଳ କଣ ସବୁ କହିବେ ।

ଯଥା ସମୟରେ ପରଦା ଉଠିଲା । ଘନ ଘନ କରତାଳିରେ ସଭାସ୍ଥାନ କଂପି ଉଠିଲା । ସଭାମଞ୍ଚ ଉପରେ ବସିଥାନ୍ତି କମିସନର ସାହେବ, ତାଙ୍କ ପାଖକୁ ଜିଲ୍ଲାପାଳ । ମଝିରେ ବସିଥାନ୍ତି ସଭାପତି ଗ୍ରାମପଞ୍ଚାୟତର ଚେୟାରମେନ, ତାଙ୍କ ପାଖକୁ ମହିଳା ସମିତିର ସେକ୍ରେଟେରୀ ବାସନ୍ତୀ । ଏଥିପୂର୍ବରୁ ବଛା ଯାଇଥିବା ଗାଁର ଛୋଟ ଛୋଟ ପିଲାମାନେ ସଫା ସୁନ୍ଦର ପୋଷାକ ପିନ୍ଧି ଅତିଥିମାନଙ୍କ ବେକରେ ଫୁଲମାଳ ପକାଇ ଦେଲେ ।

କିଛି ସମୟପରେ ମହିଳା ସମିତିର ସେକ୍ରେଟେରୀ ରିପୋର୍ଟ ପଢ଼ିଲେ । ସରକାରଙ୍କ ତରଫରୁ କଣ କଣ ସବୁ ଯୋଗାଯିବ ଓ ସେ ସବୁ କିପରି ଗାଁର କାମରେ ଉନ୍ନୟନରେ ଲାଗିବ ସେ ଏପରି ଭାବରେ ହୃଦୟଗ୍ରାହୀ ଭାଷାରେ ପଢ଼ିଲେ ଯେ ଘନ ଘନ କରତାଳରେ ସଭାମଞ୍ଚ କଂପି ଉଠିଲା । ଗାଁର ଖାଲି ମହିଳାମାନଙ୍କ ସମସ୍ୟା ଉପସ୍ଥାପିତ ନ କରି ସବୁ ସମସ୍ୟା ସେ ଏମିତି ଭାବରେ ଉପସ୍ଥାପିତ କରି ସେଥିରେ ମହିଳାମାନଙ୍କ ସଂଶ୍ଳିଷ୍ଟତା ଏମିତି ଭାବରେ ଫୁଟାଇ ପାରିଲେ ଯେ, ଯିଏ ଶୁଣିଲା ସେ ଭାବିଲା ଯେମିତି ଗାଁର ସର୍ବବିଧ ଉନ୍ନତି ମହିଳା ସମିତିର ଦାୟିତ୍ୱ ।

ଏତିକ ଛୋଟିଆ ଝିଅଟେ ଗାଁର ସାଧାରଣ ଅଭାବ ଅସୁବିଧାକୁ ଏତେ ଦକ୍ଷତାର ସହିତ ହୃଦୟଗ୍ରାହୀ ଭାଷାରେ ଫୁଟାଇ ପାରୁଛି ଦେଖି କମିସନର ସାହେବ ଓ ଜିଲ୍ଲାପାଳ ତାଟଙ୍ଗା । ସେମାନେ ଏତେ ମହିଳା ସମିତି ଦେଖି ଆସିଲେଣି ଏତେ ଯୋଗ୍ୟା ସେକ୍ରେଟେରୀଟାଏ ସେମାନଙ୍କ ଆଖିରେ କେବେ ପଡ଼ିନ ।

କମିସନର ସାହେବ ତାଙ୍କ ଭାଷଣରେ ଗାଁର ସବୁ ଅସୁବିଧା ଗୋଟିକ ପରେ ଗୋଟିଏ କେମିତି ଦୂର କରି ହେବ ଓ ସରକାର ସେଥିପାଇଁ କେମିତି ଯୋଜନା କରୁଛନ୍ତି ଲୋକମାନଙ୍କୁ ବୁଝାଇଲେ । ମହିଳା ସମିତିର ସେକ୍ରେଟେରୀ ରିପୋର୍ଟଟି ଏଡ଼େ ସୁନ୍ଦର କରି ତିଆରି କରି ପଢ଼ି ଥିବାରୁ ସେ ଖୁବ୍ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଝିଅଟିର କାର୍ଯ୍ୟଦକ୍ଷତାର ଖୁବ୍ ତାରିଫ୍ କଲେ । ସେକ୍ରେଟେରୀ ଅଳ୍ପ ବୟସ୍କା ହେଲେ ହେଁ ଜଣେ ଦକ୍ଷ ସେକ୍ରେଟେରୀ ହୋଇ ପାରିଛନ୍ତି, ସେ ଅତ୍ୟନ୍ତ ଖୁସି ହୋଇ ଏହି ମହିଳା ସମିତିର ଭବିଷ୍ୟତ ଯେ ଖୁବ୍ ଉଜ୍ଜ୍ୱଳମୟ ନ କହି ରହିପାରିଲେନି ।

ଜିଲ୍ଲାପାଳ ତାଙ୍କ ଭାଷଣରେ ସେକ୍ରେଟେରୀଙ୍କ କାର୍ଯ୍ୟଦକ୍ଷତାର ଖୁବ୍ ତାରିଫ କଲେ । ସଭା ଭଙ୍ଗ ପରେ ଅତିଥିମାନଙ୍କୁ ଜଳଯୋଗରେ ଆପ୍ୟାୟିତ କରାଗଲା । କମିସନର ସାହେବ ଗଲାବେଳେ ସେକ୍ରେଟେରୀଙ୍କୁ ଆଶୀର୍ବାଦ କରି କହିଲେ "ତୁ ମା ଭବିଷ୍ୟତରେ ଜଣେ ଦକ୍ଷ ସଂଗଠିକା ହେବୁ । ତୋ ଭଳି କର୍ମୀ ପାଇ ଏଇ ଅଞ୍ଚଳ ଆଜି ଗୌରବାନ୍ୱିତ ।"

ବାସନ୍ତୀ କମିସନର ସାହେବଙ୍କ ପ୍ରଶଂସା ଗ୍ରହଣ କଲା ତାଙ୍କୁ ଭକ୍ତିପୂତ ପ୍ରଣାମ ଜଣାଇ । ଝିଅର ପ୍ରଶଂସାରେ ହରିବାବୁଙ୍କ ଛାତି କୁଣ୍ଢେ ମୋଟ । କେତେ ବଡ଼ ବଡ଼ ଅଫିସରମାନେ ଝିଅର ଏମିତି ପ୍ରଶଂସା କରୁଛନ୍ତି କାହା ଛାତି ଫୁଲି ନ ଉଠିବ ଏହି ପ୍ରଶଂସା ଶୁଣିଲେ ? ସେ ବାସନ୍ତୀ ଭଳି ଝିଅ ପାଇ ପ୍ରକୃତରେ ଧନ୍ୟ ହୋଇଛନ୍ତି ।

ବି ଡି ଓଙ୍କ ଚେଷ୍ଟା ଓ ଜିଲ୍ଲାପାଳଙ୍କ ଶୁଭ ଦୃଷ୍ଟି ପାଇ ବହୁ ଅର୍ଥ ଏ ଅଞ୍ଚଳକୁ ଉନ୍ନୟନ କାର୍ଯ୍ୟ ପାଇଁ ଆସିଲା । ମହିଳା ସମିତିର ସ୍ତ୍ରୀ ଲୋକମାନେ ପାଠ ପଢ଼ିବା ସଙ୍ଗେ ସଙ୍ଗେ ଧନ ଅର୍ଜ୍ଜନ କରିବା ପାଇଁ ବିଭିନ୍ନ ପ୍ରକାର ଟ୍ରେନିଂ ପାଇଲେ । ସରକାରଙ୍କ ପକ୍ଷରୁ ବହୁ ଜିନିଷ ପତ୍ର କିଣାଯାଇ ଏହି ଟ୍ରେନିଂ ପାଇଁ ଯୋଗାଇ ଦିଆଗଲା ।

ବି. ଡି, ଓ, ଓ ତାଙ୍କ କର୍ମଚାରୀ ଦଳ ଗୋବିନ୍ଦପୁର ଗ୍ରାମ ପଞ୍ଚାୟତରେ ସବୁ ପ୍ରକାର ଉନ୍ନତି ପାଇଁ ଲାଗି ପଡ଼ିଲେ । ଉନ୍ନତି ପାଇଁ କେତେ ପ୍ରକାର ବିହନ, ସାର, କୀଟନାଶକ ଆଦି ଗାଁରେ ଚାଷୀମାନଙ୍କୁ ଯୋଗାଇ ଦିଆଗଲା । ମାଛଚାଷ ଫଳଚାଷ ଆଦି ନାଁରେ କେତେ କ'ଣ ଜିନିଷ ଗାଁମାନଙ୍କୁ ଆସିଗଲା ।

ଅଳ୍ପ କେଇଦିନ ଭିତରେ ଗୋବିନ୍ଦପୁର ଗ୍ରାମପଞ୍ଚାୟତ ହସି ଉଠିଲା । ଲୋକମାନେ ଭାବିଲେ ଯାହା ହେଉ ସେମାନଙ୍କ ଦୁର୍ଦ୍ଦିନ ଘୁଞ୍ଚିଯାଇ ସୁଦିନ ଚାଲି ଆସିଲା ।

କିନ୍ତୁ ଗୋବିନ୍ଦପୁରର ସେହି ସୁଦିନ ବେଶିଦିନ ରହିଲାନି । ବନମାଳିପୁର ବ୍ଲକର ବି.ଡ଼ି.ଓ ବଦଳି ହୋଇ ଚାଲିଗଲେ ଆଉ ଏକ ବ୍ଲକକୁ । ତାଙ୍କ ସହିତ ପିତୃ ପ୍ରତିମ ଜିଲ୍ଲାପାଳ ବି ବଦଳି ହୋଇଯାଇ ତାଙ୍କ ସ୍ଥାନରେ ଆସିଲେ ଟୋକା ଅଫିସର ଜିଲ୍ଲାପାଳ ହୋଇ ।

ଏ ଯେଉଁ ନୂଆ ଜିଲ୍ଲାପାଳ ଓ ବି.ଡ଼ି.ଓ ଆସିଲେ ସେମାନେ ଗାଁର ଉନ୍ନତି କଥାକୁ କାନକୁ ନନେଇ ପୂର୍ବଭଳି କାଗଜ କଲମରେ ଗାଁର ଉନ୍ନତିକୁ ସୀମାବଦ୍ଧ କରାଇଦେଲେ ।

ଗାଁକୁ ଯେଉଁସବୁ ଉନ୍ନୟନ କାମରେ ଲାଗିଲା ଭଳି ସାମଗ୍ରୀ ଆସିଲା, ସେଗୁଡ଼ିକର ପୂର୍ବଭଳି ଗ୍ରାମ ଦର୍ଶନର ସୌଭାଗ୍ୟ ମିଳିଲାନି । ଯେଉଁଠାରୁ ଖର୍ଚ୍ଚ ହେଲା, ସେଇଠି ବନ୍ଦ ହୋଇ କାଗଜ କଲମରେ ଗାଁକୁ ଆସିଲା ।

ନୂଆ ଜିଲ୍ଲାପାଳ ଯିଏ ଆସିଲେ, ସେ ଖାଲି ଟୋକା ଅଫିସର ନୁହଁନ୍ତି, ଟୋକା ମାନଙ୍କର ସବୁ ଗୁଣ ତାଙ୍କର ପାଖରେ । ତିନି ଜିବାଲିଉର ଉପାସକ—ମାନେ ମଦ, ନାରୀ ଧନ ପ୍ରତି ତାଙ୍କର ଏକାନ୍ତ ଆଗ୍ରହ ।

ଜିଲ୍ଲାପାଳ ଯଦି ଏସବୁ ପ୍ରତି ଏତେ ଆଗ୍ରହୀ, ଅଧସ୍ତନ କର୍ମଚାରୀ ମାନେ ତାଙ୍କୁ ସେ ସବୁ ନ ଯୋଗାଇଲେ ସେମାନଙ୍କ ଚାକିରୀ ରହୁଛି କେଉଁଠି ? ସାହେବ ପୁଣି ସାଧାରଣ ଦେଶୀ ମଦ ଖାଆନ୍ତିନି, ଦାମିକା ବିଦେଶୀ ମାଲ ନ ଯୋଗାଇଲେ ତଳ କର୍ମଚାରୀଙ୍କ ଉପରେ ନାନାପ୍ରକାର ଚାଲିଗୁଲିଜ ଚାଲେ ।

ପ୍ରତିଦିନ ପକେଟକୁ କିଛି ଗରମ ଗରମ ଅର୍ଥ ନ ଆସିଲେ ସାହେବଙ୍କ ମଥା କାମକରେ ନାହିଁ । ସାହେବ ହେଡ଼କ୍ୱାର୍ଟରରେ ଥିଲେ ତାଙ୍କର ଦିଶିଖି ଉବଲିଉଟି ଦରକାର ହୁଏନି ସ୍ତ୍ରୀଙ୍କ ଭୟରେ । ଯେତେବେଳେ ଜିଲ୍ଲାର ବିଭିନ୍ନ ଅଞ୍ଚଳକୁ ଟୁର କରନ୍ତି, ଏହି ଉବଲିଉଟି ନହାତି ଦରକାର । ଲୋକେ କହନ୍ତି ସାହେବଙ୍କର ଏହି ନିଶା ମଦନିଶା ଠାରୁ ଅଧିକ ପ୍ରବଳ । ତାହାଁର ଯୋଗାଡ଼ କରିବା କିଛି ସହଜ କଥା ନୁହେଁ । ତଳ ଅଫିସରମାନେ ବହୁତ ଅର୍ଥ ବ୍ୟୟ କରି

ଟାଟା, କଲିକତା ଓ ଅନ୍ୟ ଆଉ ରୂପଜୀବିମାନଙ୍କୁ ଅଣାଇବାକୁ ବାଧ୍ୟ ହୁଅନ୍ତି । ଡ଼ାକବଙ୍ଗଳାରେ ସାହେବ ରହିଲେ ଚୌକସ ଖାନା ସାଙ୍ଗକୁ ଭଲ ମଦ, ତା ସାଙ୍ଗକୁ ଏ ଜିନିଷଟି ନହେଲେ ଚଳ • ଅଫିସରମାନଙ୍କ ଉପରେ ଯେଉଁ ଗାଳି ହୁଏ, ତାହା ଶୁଣି ହେବନି ।

ସାହେବଙ୍କ ମର୍ଜି ଅନୁସାରେ ନାନାଦି ଜିନିଷ ଯୋଗାଇବା ପାଇଁ ଅର୍ଥ ଦରକାର । ସେମାନେ ଏତେ ଅର୍ଥ ଆଣିବେ କେଉଁଠୁ ? ଗାଁକୁ ଆସୁଥିବା ଉନ୍ନୟନ ମୂଳକ ସାମଗ୍ରୀ ଗାଁକୁ ନ ଆସି, ଅନ୍ୟ ବାଟ ଦେଖନ୍ତି । ଲୋକଙ୍କୁ କୁହାଯାଏ କ'ଣନା ଉନ୍ନୟନ ପାଇଁ ସରକାରଙ୍କର ପାଣ୍ଠି ନାହିଁ ।

ପୁରୁଣା ଜିଲ୍ଲାପାଳ ଯିଏ ଥିଲେ, ସେ ଭାରି ପରୋପକାରୀ, ପ୍ରମୋସନ ପାଇ ଜିଲ୍ଲାପାଳ ହୋଇଥିଲେ । ତାଙ୍କର ଅତ୍ୟଧିକ ଧର୍ମ ଭୟ ଥିବାରୁ ସେ ଉନ୍ନୟନ ଅର୍ଥକୁ ଏ ଭଳି ହାରଫେର କରିବାକୁ ଘୃଣା କରନ୍ତି । ଯାହା ଟଙ୍କା ସରକାରରୁ ଆସୁଛି, ସେ କେମିତି ଠିକ୍ ବାଟରେ ଖରଚ ହେଉ ସେଥିପ୍ରତି ତାଙ୍କର କଡ଼ା ଦୃଷ୍ଟି । ସେ ଥିଲାବେଳେ ଲୋକମାନଙ୍କୁ ଶିକ୍ଷା ଦେଇ ଯେଉଁ ସଘନ କୃଷି କରାଇଥିଲେ ବର୍ତ୍ତମାନ ଏ ନୂଆ ଜିଲ୍ଲାପାଳ ସଘନ କୃଷି ପାଇଁ ଉନ୍ନତ ବିହନ, ସାର ଆଦି ସରକାରଙ୍କ ପକ୍ଷରୁ ଯାହା ଯୋଗାଯିବା କଥା ବନ୍ଦ କରି ଦେବାରୁ ଲୋକେ ବଡ଼ ହଇରାଣରେ ପଡ଼ିଗଲେ ।

ଗାଁ ଲୋକଙ୍କୁ ଓଲଟି କୁହାଗଲା ସେମାନେ ସେ ସବୁ ସାମଗ୍ରୀ ବଜାରରୁ କିଣି କୃଷିରେ ଲଗାନ୍ତୁ । ସରକାର ଆଉ ସାହାଯ୍ୟ ଦେଇ ପାରିବେ ନାହିଁ । ସେ ସବୁ ସାମଗ୍ରୀ ପୁଣି ବଜାରରେ ଅଭାବ । କଳାପୋତେଇ ଦେଇ କଳାବଜାରରେ କିଣି କୃଷିରେ ଲଗାଇବା ପାଇଁ ଶକ୍ତି କାହାର ? ଫଳରେ ଯେଉଁ ଯୋଜନା ପୂର୍ବ ଜିଲ୍ଲାପାଳ କାର୍ଯ୍ୟକାରୀ କରିବା ଫଳରେ ଗୋବର୍ଦ୍ଧନପୁର ଗାଁର ଉନ୍ନତି ହୋଇଥିଲା, ନୂଆ ଜିଲ୍ଲାପାଳ ସେହି ଯୋଜନାକୁ ବନ୍ଦ କରି ଦେବାରୁ ଗାଁର ଅବନତି ଆରମ୍ଭ ହୋଇଗଲା ।

ପୂର୍ବ ଅଫିସରମାନଙ୍କ ଅମଳରେ ଗାଁର ମାଛଚାଷ, ଫଳଚାଷ ଯାହା ହୋଇଥିଲା, ସେଥିରୁ ଆୟ ହେଉଥିବା ଅର୍ଥ ସରକାରଙ୍କ ଟ୍ରେଜେରୀକୁ ଯିବା ବାଟରେ ବି. ଡ଼ି. ଓଙ୍କ ପକେଟକୁ ଯାଇ ସେଠାରୁ ଜିଲ୍ଲାପାଳଙ୍କ ଖର୍ଚ୍ଚ ପାଇଁ ବାଟ

ଦେଖିଲା । ବ. ଓ୍. ଓ ନାନା ଉପାୟରେ ହାତ ଚକକଣ କରିବା ଦେଖି ଗ୍ରାମ-ସେବକ ଓ ଅନ୍ୟମାନେ କାହିଁକି ବସି ରହିବେ, ସେଥ୍ୟା ରୋଜଗାର ପନ୍ଥା ଯେତ୍ଥେ ଦେଖିଲେ ।

•

ଜିଲ୍ଲାପାଳ ନୂଆ ହୋଇ ଗୃର୍ଜ ନେବା ପରେ ଦିନେ ଟୁର୍ ପକାଇ ଥିଲେ ଗୋବିନ୍ଦପୁର ଗ୍ରାମ ପଞ୍ଚାୟତକୁ । ମହିଳା ସମିତିର ଉନ୍ନୟନ କାର୍ଯ୍ୟ ଦେଖୁଁ ଦେଖୁଁ ତାଙ୍କର ଦୃଷ୍ଟି ପଡ଼ିଗଲା ମହିଳା ସମିତିର ସେକ୍ରେଟେରି ବାସନ୍ତୀ ଉପରେ ।

ବାଃ, ଝିଅଟି ତ ବେଶ ସୁନ୍ଦରୀ, କର୍ମନିପୁଣା, ଅଫିସ କାମରେ ବେଶ ଦକ୍ଷ ! ଜିଲ୍ଲାପାଳ ଗସ୍ତ ଶେଷ କରି ଗାରୁ ଗୃଲଗଲେ ହେଁ ତାଙ୍କ ମାନସ ପଟରେ ରହିଗଲେ ବାସନ୍ତୀର ସେ ସୁନ୍ଦର ହସ ହସ ମୁହଁ । ଝିଅଟି ତାଙ୍କର ମାନସ ପଟକୁ ଏତେ ଆଚ୍ଛାଦିତ କରି ରଖିଲା ଯେ ସେ ତାଙ୍କ ବିବାହିତା ସ୍ତ୍ରୀ ପ୍ରତି ହତାଦର ଦେଖାଇବାକୁ ଆରମ୍ଭ କରି ଦେଲେ ।

ବ: ଓ: ଓଙ୍କୁ ଦିନେ ଡାକି ଚୁପ୍ ଚୁପ୍ ମନ୍ତ୍ରଣା କଲେ ଝିଅଟି କେମିତି ତାଙ୍କ ଅକ୍ତିଆରକୁ ଗୃଲି ଆସିବ । ସାହେବଙ୍କ ପାପ ଦୃଷ୍ଟି ଯେତେବେଳେ ଝିଅଟି ଉପରେ ପଡ଼ିଲାଣି, ସେମାନେ ଯଦି ସେତକ ଯୋଗାଡ଼ କରି ନ ଦେଉଛନ୍ତି, ତେବେ ସେମାନଙ୍କ ଗୃକିରି ଟଳମଳ ହେବା ଉପରେ ।

ସାହେବ ରଗିଗଲେ କ'ଣ ନା କ'ଣ ଲେଖି ପଞ୍ଜିକାରେ ଲେଖିଦେବେ, ସବୁଦିନ ପାଇଁ ସେମାନଙ୍କ ପ୍ରମୋସନ ବନ୍ଦ ହୋଇଯିବ । ବ, ଓ୍. ଓ ମନେ ମନେ ଯୋଜନା କଲେ ବାସନ୍ତୀକୁ ନେଇ କେମିତି ଜିଲାପାଳଙ୍କ ପାଖରେ ଜୁଟାଇ ଦେବେ ।

ବାସନ୍ତୀ ଭଲ ଘରର ଝିଅ । ବାପା ତାର ଏକ ଉଚ୍ଚ ଖାନଦାନୀ ବୁନିୟାଦି କରଣ ବଂଶ ସମ୍ଭୂତ । ସେମାନେ ସିନା ଅବସ୍ଥା ଚକ୍ରରେ ପଡ଼ି ଗରିବ ହୋଇ ଯାଇଛନ୍ତି ନଚେତ୍ ସେମାନେ ଏକ ସମୟରେ ସିଂହଭୂମି ଜିଲାର ଉଚ୍ଚ କରଣ ଜମିଦାର ବଂଶର ଦାୟାଦ ଥିଲେ । ତେଣୁ ତାକୁ କେମିତି ଫାଶରେ ପକାଇ ଜିଲାପାଳଙ୍କ ପାଖକୁ ନେବେ ସେଇ ହେଲା ସବୁଠାରୁ ବଡ଼ ଚିନ୍ତା ।

ବହୁ ଚିନ୍ତା ପରେ ଦିନେ ତାଙ୍କ ଯୋଜନା କାମ ଦେବ ବୋଲି ଜଣାପଡ଼ିଲା । ମହିଳା ସମିତିର ଅର୍ଥ ଆତ୍ମସାତ କରିଥିବା ଅଭିଯୋଗରେ ତାକୁ ଆରେଷ୍ଟ

କରିବା ବନ୍ଦୋବସ୍ତ କରିଦେଲେ ଯିଏଅଛି ସେମାନଙ୍କ ହାତକୁ ଚାଲି ଆସିବ । ସେଥି-ପାଇଁ ଗ୍ରାମସେବକା ଗାଧିକାକୁ ହାତ କରି ଏକ ଜାଲ ବଛାଇବା ଠିକ୍ ହେଲା । ଏହି ଯୋଜନାଟି କଥା ଜିଲ୍ଲାପାଳଙ୍କୁ ଜଣାଇ ତାଙ୍କ ସମ୍ମତି ଅଣାଗଲା ।

•

ବ୍ଲକରୁ ବିଭିନ୍ନ ଉନ୍ନୟନ ପାଇଁ ଯେଉଁ ଅର୍ଥ ମହିଳା ସମିତିକୁ ଆସିଛି, ତାକୁ ବଦଳା ବଦଳି କରି ବ୍ଲକର ରେକର୍ଡକୁ ବଦଳାଇ ଦିଆଗଲା । ବ୍ଲକରୁ ଆସିଥିବା ଟଙ୍କା ଓ ମହିଳା ସମିତିରେ ଖର୍ଚ୍ଚ ହୋଇଥିବା ଟଙ୍କା ଭିତରେ ପାର୍ଥକ୍ୟ ରଖାଗଲା ଅଠର ଶହ ଟଙ୍କା ।

ବି. ଡି. ଓ ଅଫିସରୁ ଯାହା ଟଙ୍କା ଆସିଛି, ମହିଳା ସମିତି ହିସାବରେ କମ୍ ଦେଖାଇ ମହିଳା ସମିତିର ସେକ୍ରେଟେରୀ ଅଠରଶହ ଟଙ୍କା ଆତ୍ମସାତ କରି-ଛନ୍ତି ବୋଲି କାଗଜ କଲମରେ ଦର୍ଶାଗଲା । ବି. ଡି. ଓଙ୍କର ଏହି ଅଭିଯୋଗ କେତେଦୂର ସତ ତାହା ତନଖି କରିବେ ସ୍ୱୟଂ ଜିଲ୍ଲାପାଳ । ତେଣୁ ମହିଳା ସମିତି ସେକ୍ରେଟେରୀ ନିଜ କାଗଜପତ୍ର, ଖାତା ଧରି ନିକଟସ୍ଥ ଡାକବଙ୍ଗଳାକୁ ଯାଇ ଜିଲ୍ଲାପାଳଙ୍କୁ ସାକ୍ଷାତ କରିବା ପାଇଁ ଆଦେଶ ଆସିଗଲା ।

ଅର୍ଥ ଆତ୍ମସାତ ଓ ଜିଲ୍ଲାପାଳଙ୍କୁ ଡାକ ବଙ୍ଗଳାରେ ସାକ୍ଷାତ କରିବା ଚିଠି ଦେଖି ବାସନ୍ତୀ ଗୁମ୍‌ଆ । ଟଙ୍କା ଆତ୍ମସାତ ପରିମାଣ କିଛି କମ ନୁହେଁ । ଦୁଇ ହଜାର ଟଙ୍କା ପାଖାପାଖି । ବାସନ୍ତୀ ନାଁରେ ଏହି ଅପବାଦ ଯିଏ ଶୁଣିଲା, ସିଏ କାନରେ ହାତ ଦେଲା । ଗାଁର ବୁଢ଼ା ବୁଢ଼ୀମାନେ ମୁଣ୍ଡରେ ହାତ ଦେଇ କହିଲେ, ହାୟ ଭଗବାନ, ଧର୍ମ ଦେବତା କ'ଣ କୁଆଡ଼େ ଚାଲିଗଲେ ? କି ମିଛ ଅପବାଦ ଦିଆଯାଉଛି ନାରେ ?

ପଞ୍ଚାୟତ ସମିତି ଚେୟାରମେନ ଓ ତାର ବାପା ଯାଇ ମହିଳା ସମିତିର ହିସାବ ପତ୍ର ତନଖି କଲେ । କାହିଁ କେଉଁଠି ତ ଟଙ୍କା ଆତ୍ମସାତର କିଛି ପ୍ରମାଣ ମିଳୁନି । ଯାହା ଟଙ୍କା ଆସିଥିଲା ଠିକ୍ ରୂପେ ଖରଚହୋଇଛି । ଖର୍ଚ୍ଚର ହିସାବ ଠିକ୍ ରଖାଯାଇଛି । ଟଙ୍କା ଆତ୍ମସାତର ଅଭିଯୋଗ ଆସିଲା କେଉଁଠୁ ?

ହରିବାବୁ ଏ ବିଷୟରେ ଅଧିକ ଜାଣିବାକୁ ବନମାଳିପୁର ବ୍ଲକକୁ ଦୌଡ଼ିଲେ । ବି.ଡି.ଓ. ସେଠି ନାହାନ୍ତି, ଜିଲ୍ଲା ହେଡ୍‌କ୍ୱାଟରକୁ ଯାଇଛନ୍ତି । ବଡ଼

ଅସୁବିଧା ହେଲା, କିଛି ଜାଣିପାରୁ ନ ଥାନ୍ତି କ'ଣ କରିବେ । ଜିଲ୍ଲାପାଳଙ୍କ ଚିଠି ଏଣେ ଅନ୍ୟଥା କରି ହେବନି ।

ତେଣୁ ଅନନ୍ୟୋପାୟ ହୋଇ ବାସନ୍ତୀ କାଗଜପତ୍ର ଧରି ଡାକବଙ୍ଗଳାକୁ ଗଲା ଜିଲ୍ଲାପାଳଙ୍କୁ ହିସାବ ପତ୍ର ବୁଝାଇଦେବା ପାଇଁ । ସେ ଯାଇ ଡାକବଙ୍ଗଳାରେ ପହଞ୍ଚିଲା ବେଳକୁ ଜିଲ୍ଲାପାଳ ମଧ୍ୟାହ୍ନ ଭୋଜନ ସାରି ଶୋଇଥାନ୍ତି । ତାକୁ ବାରଣ୍ଡାରେ ଅପେକ୍ଷା କରିବା ପାଇଁ ଆଦେଶ ଆସିଲା । ବଡ଼ ମନ କଷ୍ଟରେ ବସିଥାଏ ବାସନ୍ତୀ । କି ଦୁର୍ଯୋଗ, ସେ ଏତେ ସାବଧାନ ହୋଇ ହିସାବ ପତ୍ର ରଖି ରଖି ତା' ନାଁରେ ଅର୍ଥ ଆତ୍ମସାତ ଅଭିଯୋଗ ?

ଜିଲ୍ଲାପାଳ ଉଠୁ ଉଠୁ ସନ୍ଧ୍ୟା ପାଞ୍ଚଟା । ମହିଳା ସମିତି ସେକ୍ରେଟେରୀ ବାସନ୍ତୀ ମହାନ୍ତି ତାଙ୍କୁ ଦେଖା କରିବା ପାଇଁ ଅପେକ୍ଷା କରିଛି ବୋଲି ଜିଲ୍ଲାପାଳ ଉଠିବା ମାତ୍ରେ ତାଙ୍କ ଚପରାଶୀ ଜଣାଇଦେଲା । ଜିଲ୍ଲାପାଳ ମନେ ମନେ ଭାରି ଖୁସି ହୋଇଗଲେ ।

ଯାହା ହେଉ ଝିଅଟା ଏଥର ଜାଲରେ ପଡ଼ିଛି, ଆଉ ଯିବ କୁଆଡ଼େ ? ବି. ଡି. ଓ ଯାଇଛନ୍ତି ଅନ୍ୟ ଉଦ୍ଦେଶ୍ୟରେ ବନ୍ଦୋବସ୍ତ ପାଇଁ । ଡାକବଙ୍ଗଳାର ସାମନା ପଟେ ନ ଆସି ବି ଡି ଓ ପଛପଟେ ସାହେବଙ୍କ ପାଇଁ ଭଲ ଭଲ ମଦ ଆଣି ପହଞ୍ଚାଇ ଦେଲେ । ଜିଲ୍ଲାପାଳଙ୍କ ନିର୍ଦ୍ଦେଶରେ ପାଖ ଥାନାକୁ ଖବର ଦିଆ ଯାଇଥାଏ, ଝିଅଟିକୁ ଆରେଷ୍ଟ କରି ନେଇ ହାଜତରେ ପକାଇଦେବାପାଇଁ । ରାତି ବାରଟାରେ ହାଜତରୁ ମୁକୁଳାଇ ସାହେବଙ୍କ ଗାଡ଼ିରେ ଡାକବଙ୍ଗଳାକୁ ଅଣାଯିବ ।

ବାସନ୍ତୀ ବାରଣ୍ଡାରେ ଖାତା ପତ୍ର ଧରି ବସିଛି । କୋଠରୀ ଭିତରେ ଜିଲ୍ଲାପାଳ ଅତ୍ୟଧିକ ଖୁସି ହୋଇ ମଦ ପିଇବାରେ ଲାଗିଥାନ୍ତି । ଗିଲାସ ପରେ ଗିଲାସ ଢଳା ଚାଲିଛି ।

ଏହି ସମୟରେ ହଠାତ୍ ଦକ୍ଷିଣ ଡିଭିଜନର କମିସନର ସାହେବଙ୍କ ଗାଡ଼ି ଆସି ରହିଲା ଡାକବଙ୍ଗଳା ସାମନାରେ । ଗାଡ଼ିରୁ ଓହ୍ଲାଇଲେ କମିସନର ଭେଙ୍କଟରମନ ସାହେବ । ବାରଣ୍ଡାରେ ଝିଅଟିକୁ ଦେଖି ତ ପାଖକୁ ଚାଲିଆସିଲେ । ବାସନ୍ତୀ କମିସନର ସାହେବଙ୍କୁ ଦେଖି ଠିଆ ହୋଇପଡ଼ି ନମସ୍କାର ଜଣାଇଲା ।

କମିସନର ସାହେବ ବାସନ୍ତୀକୁ ଆଗରୁ ଚିହ୍ନିଥିଲେ । ବାସନ୍ତୀ ସମ୍ବନ୍ଧରେ ତାଙ୍କ ଧାରଣା ଖୁବ୍ ଭଲ । ଝିଅଟିର କାର୍ଯ୍ୟଦକ୍ଷତା ଓ ସଚ୍ଚୋଟ ପଣିଆ ଦେଖି ତାକୁ ଯୌବନ ସଭାରେ କେତେ ପ୍ରଶଂସା କରି ନଥିଲେ ସେ ?

•

ଝିଅଟି ଆସିବାର କାରଣ ଜଣାଇଲା । ତା ନାଁରେ ଅର୍ଥ ଆତ୍ମସାତ ଅଭିଯୋଗର କାଗଜ ଦେଖାଇଲା । ଜିଲ୍ଲାପାଳଙ୍କ ଅଫିସରୁ ଝିଅଟି ନାଁରେ ଏପରି ଅଭିଯୋଗ ଦେଖି ଆଶ୍ଚର୍ଯ୍ୟ ହେଲେ ଭେଙ୍କଟରମଣ । ଏଡ଼ିକ ଗୋଟିଆ ସରଳା ଝିଅଟେ ଅଠରଶହ ଟଙ୍କା ଆତ୍ମସାତ କରିଛି ବୋଲି ତାଙ୍କର ମୋଟେ ବିଶ୍ୱାସ ହେଲାନି । ତାଙ୍କୁ ଜଣାପଡ଼ିଲା ଏହା ଭିତରେ କେଉଁଠି କିଛି ଗୋଳମାଳ ରହିଯାଇଛି । ଅନ୍ୟ କିଏ କେଉଁଠି ଟଙ୍କା ମାରିଦେଇ ସରଳା ଝିଅଟି ମୁଣ୍ଡରେ ଅଠା ବୋଳିଦେବାର ଅପଚେଷ୍ଟା ହୋଇଛି ।

ଝିଅଟିକୁ ଦେଖି କମିସନର ସାହେବ ନରମ ଗଳାରେ କହିଲେ !! "ତୁ ମା ଏଥିପାଇଁ ଏତେବାଟ ଧାଇଁ ଆସିଛୁ ? ଜିଲ୍ଲାପାଳତ ତୁମ ମହିଳା ସମିତି ଅଫିସକୁ ଯାଇ ତଦନ୍ତ କରି ଆସିପାରିଥାନ୍ତେ । ବର୍ତ୍ତମାନ ଆସି ସନ୍ଧ୍ୟା ହେଲାଣି, ତୋତେ ଏବୁଟିଆ ଡ଼କାଇଆଣି ଠିକ କରିଯାଇନି ମା । ହେଉ ତୁ ବସ ମା, ମୁଁ ବୁଝୁଛି କଥା କ'ଣ ହୋଇଛି ।"

ଏତିକ କହି କମିସନର ସାହେବ, ଜିଲ୍ଲାପାଳଙ୍କ ନାଁ ଧରି ଡ଼ାକି ଡ଼ାକି ତାଙ୍କ ରୁମ୍ ଭିତରକୁ ପଶିଗଲେ । ସେତେବେଳେ ଜିଲ୍ଲାପାଳ ଗିଲାସ ପରେ ଗିଲାସ ପକାଇ ଅପେକ୍ଷା ମାଣା ମିଳନ ସମୟ ପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ । ଜିଲ୍ଲାପାଳଙ୍କୁ ମଦ୍ୟପାନ କରୁଥିବା ଦେଖି କମିସନର ସାହେବ ଫେରିଆସି ନିଜ କୋଠରୀକୁ ଚାଲିଗଲେ ।

ଜିଲ୍ଲାପାଳ କମିସନରଙ୍କୁ ଦେଖି ଡ଼ରରେ ତାଙ୍କ ପାଟି ଆଁଫାଆଁଫା ମାରିଗଲାଣି । ଟେବୁଲ ଉପରେ ଥିବା ମଦ ବୋତଲ ଗିଲାସକୁ ଲୁଚାଇଦେଇ ମୁହଁରେ ମସଲା ପକାଇ କମିସନରଙ୍କୁ ସାକ୍ଷାତ କରିବା ପାଇଁ ତାଙ୍କ ରୁମକୁ ଗଲେ ।

କମିସନର ସାହେବ ସେତେବେଳେ ଦେହରୁ ପୋଷାକପତ୍ର କାଢ଼ୁଥାନ୍ତି । ଜିଲ୍ଲାପାଳ ତାଙ୍କ ରୁମକୁ ପଶିଯାଇ ତାଙ୍କୁ ସଲାମ ପକାଇବା ଦେଖି କମିସନର

ସାହେବ କହିଲେ "ଦେଖ ମିଷ୍ଟର ଓଝା, ତୁମେ ସେ ମହୁଲା ସମିତିର ସେକ୍ରେଟେରୀ ସେହି ଝିଅଟିକୁ କଣ ପାଇଁ ଡ଼ାକବଙ୍ଗଳାକୁ ଡ଼କାଇଆଣିଛ ?"

"ସାର୍, ତା ନାଁରେ ଟଙ୍କା ଆତ୍ମସାତର ଅଭିଯୋଗ । ମହୁଲା ସମିତିର ଅଠରଶହ ଟଙ୍କା ସେ ପୂର୍ବ ବି.ଡି.ଓଙ୍କ ସଲାସୂତରରେ ଆତ୍ମସାତ କରିଥିବା ପ୍ରମାଣ ଆମ କାଗଜପତ୍ରରୁ ମିଳୁଛି ।"

"ଏତେ ଗ୍ରେଟ ଝିଅଟେ, ଏତେଗୁଡ଼ାଏ ଟଙ୍କା ଆତ୍ମସାତ କରିଛି ବୋଲି ତୁମର କଣ ବିଶ୍ୱାସ ହେଉଛି ମିଷ୍ଟର ଓଝା ?

"ହଁ, ସାର୍, ନହେବ କାହିଁକି ? ତା ବାପା ଗାଁର ଏକ ଶିକ୍ଷକ । ଏକ ବଡ଼ ଟାଉଟର । ପୂର୍ବ ବି.ଡ଼ି.ଓ.ଙ୍କ ସଲାସୂତରରେ ଟଙ୍କା ହେରଫେର ହୋଇ ଆତ୍ମସାତ ହେବା କିଛି ଅସମ୍ଭବ ନୁହେଁ । ଟାଉଟର ବାପ ସେଥିପାଇଁ ବାଟ ଦେଖାଇଥିବ ଓ ତାକୁ ସାହସ ଦେଇଥିବ ।

"ଦେଖ ମିଷ୍ଟର ଓଝା, ମୁଁ ଏହି ଝିଅଟିକୁ ଭଲ ଭାବରେ ଜାଣେ । ତା ବାପାକୁ ମଧ୍ୟ ଭଲଭାବରେ ଜାଣେ । ପୂର୍ବ ବି. ଡି. ଓ: ମଧ୍ୟ ମୋର ଭଲ ଜଣାଶୁଣା । ତୁମେ ଏ ଜିଲ୍ଲାକୁ ଏବେ ଆସିଛ । ଏହି ଜିଲ୍ଲା ମୋ ଅଧିନରେ ଅଛି ଗତ ତିନିବର୍ଷ ଧରି । ଏହି ଜିଲ୍ଲାରେ କେଉଁଠି କି କାମ ହେଉଛି ମୋତେ ଭଲ ଭାବରେ ଜଣା । ପୂର୍ବ ବି.ଡ଼ି.ଓ ଓ ଏହି ଝିଅଟି ସଲାସୂତର ହୋଇ ଟଙ୍କା ଖାଇଛନ୍ତି ବୋଲି ତୁମେ କିଛି ପ୍ରମାଣ ପାଇଛ ?

"ହିଁ ସାର୍, ସବୁ ପ୍ରମାଣ ମୋଠାରେ ଅଛି । ଆପଣ ଯଦି ଚାହିଁବେ, ସବୁ ଦେଖାଇଦେବି ।

'ହେଉ ମିଷ୍ଟର ଓଝା, ତୁମ କାଗଜପତ୍ର ମୋଠାକୁ ଦେଇ ଦିଅ । ବାରଣ୍ଡାକୁ ଚାଲିଯାଇ ଝିଅଟି ପାଖରୁ ସବୁ ଖାତାପତ୍ର ନିଜେ କମିସନର ସାହେବ ନେଇନେଲେ । ତାପରେ କହିଲେ, 'ଦେଖ ଓଝା, ସନ୍ଧ୍ୟା ହୋଇ ଆସିଲାଣି । ଝିଅଟିକୁ ବର୍ତ୍ତମାନ ତା ଘରକୁ ବିଦା କରିଦିଅ । ଏତେ ଗ୍ରେଟ ଝିଅଟେ, ତା' ବାପ ମା ତାପାଇ କେତେ ବ୍ୟସ୍ତ ହେଉଥିବେ । ମୁଁ ତମର ଓ ତାର କାଗଜପତ୍ର ରଖି ନେଉଛି, ଆଜି ରାତିରେ ତଥାଙ୍କର ଦେଖିବି, ତା ବିରୁଦ୍ଧରେ ହୋଇଥିବା ଅଭିଯୋଗ କେତେ ଦୂର ସତ ।

"ତୁମର ଡ୍ରାଇଭରରେ ଅଛୁ ମିଷ୍ଟର ଓଝା ? ବ.ଡ଼.ଓଙ୍କୁ ଡ଼ାକ, ସେ ତୁମ ଗାଡ଼ିରେ ଏହି ଝିଅଟିକୁ ନେଇ ତା' ଘରେ ଛାଡ଼ିଦେଇ ଆସୁ ।

ଏତକ କହି ପର ମୁହୂର୍ତ୍ତରେ କହିଲେ, "ନା ନା ଥାଉ ଥାଉ, ମୋ ଡ୍ରାଇଭର ଝିଅଟିକୁ ନେଇ ଛାଡ଼ି ଦେଇ ଆସିବ । ସେ ଗ୍ରାମସେବକାକୁ ଡ଼ାକ, ସେ ଝିଅଟି ସାଙ୍ଗରେ ଯାଉ ।

"ଗ୍ରାମସେବକା ତ ଏଠି ନାହାଁନ୍ତି ସାର୍ । ବ. ଡ଼. ଓ ବ ତ ଆସିନି ।"

ମୁଁ ଡ଼ାକବଙ୍ଗଳା ଗେଟରେ ପଶିଲା ବେଳେ ଦେଖିଛୁ, ସେମାନେ ମୋ ଗାଡ଼ିକୁ ଦେଖି ଡ଼ାକବଙ୍ଗଳାର ପଛପଟକୁ ଚାଲିଯାଇଛନ୍ତି । ବ. ଡ଼. ଓ. ସାଙ୍ଗରେ ସେ ଡ଼େଙ୍ଗି ହୋଇ ଗ୍ରାମସେବକାକୁ ମୁଁ ପଶିଲା ବେଳେ ଦେଖିଛୁ । ନିଜ ଡ୍ରାଇ-ଭରକୁ ଡ଼ାକି କହିଲେ, "ଗଲୁ ସେ ଗ୍ରାମସେବକାକୁ ଡ଼ାକିଆଣ । ସେ ତୋ ସହିତ ଏହି ଝିଅଟିକୁ ନେଇ ତା' ଘରେ ଛାଡ଼ି ଦେଇ ଆସିବ ।

ସବି ଭୋଜନ ସାର କମିଶନର ସାହେବ, ଜିଲ୍ଲାପାଳଙ୍କ ଫାଇଲ ଓ ମହିଳା ସମିତି କାଗଜପତ୍ର ଭଲ ଭାବରେ ତନଖି କଲେ । ଦେଖିଲେ ଜିଲ୍ଲାପାଳଙ୍କ ଫାଇଲରେ ମହିଳା ସମିତିକୁ ଆସିଥିବା ଟଙ୍କାର ପରିମାଣ କଟା ହୋଇ ବଢ଼ା ହୋଇଛୁ । କଟା ହେବା ଟଙ୍କାର ପରିମାଣ ଓ ମହିଳା ସମିତି ଖାତାରେ ମିଳି-ଥିବା ଟଙ୍କାର ପରିମାଣ ସମାନ ଅଛୁ । ଝିଅଟିକୁ ହରଣ କରିବା ପାଇଁ ଉଦ୍ଦେଶ୍ୟ ମୂଳକ ଭାବରେ କାଗଜ ପତ୍ରରେ ଗୋଳମାଳ କରି କୌଣସି ଅସତ୍ ଉଦ୍ଦେଶ୍ୟ ଚରିତାର୍ଥ ପାଇଁ ଝିଅଟିକୁ ଜବରଦସ୍ତି ଡ଼ାକବଙ୍ଗଳାକୁ ଡ଼କାଇ ଅଣା ଯାଇଛୁ ବୋଲି ଏଥିରୁ ତାଙ୍କର ସ୍ପଷ୍ଟ ଧାରଣା ହେଲା ।

କମିସନର ସାହେବ ଜିଲ୍ଲାପାଳ ପ୍ରେମନାଥ ଓଝାଙ୍କୁ ଭଲ ଭାବରେ ଜାଣନ୍ତି । ସେ ଏହିଭଳି ମିଛ ଅଭିଯୋଗ କରିବାରେ ଧୁରନ୍ଧର । ତାଙ୍କ ଅସତ୍ ଚରିତ୍ର ପାଇଁ ସେ ସବୁଆଡ଼େ ନିନ୍ଦିତ । ତାଙ୍କ ଭଳି ମଦୁଆ, ମାତାଲ, ବ୍ୟଭି-ଚାରୀ, ଅର୍ଥଲୋଭୀ ଅଫିସର ସେ ତାଙ୍କ ଜୀବନ କାଳ ଭିତରେ ଦେଖି ନାହାନ୍ତି । ଝିଅଟିକୁ ଧର୍ଷଣ କରିବା ଅଭିପ୍ରାୟରେ ସେ ଏଭଳି ମିଥ୍ୟା ଅଭିଯୋଗ କରି ଡ଼ାକବଙ୍ଗଳାକୁ ଡ଼କାଇ ଆଣିଥିବା ଉଦ୍ଦେଶ୍ୟ ତାଙ୍କୁ ଜଳ ଜଳ ଦିଶିଲା ।

ସେ ଚିଠିକୁ ହାତରେ ମିଷ୍ଟର ଓଝାଙ୍କୁ ଡ଼କାଇ ଆଣି କହିଲେ, "ଦେଖ ମିଷ୍ଟର ଓଝା ମୁଁ ତୁମ କାଗଜ ଓ ମହିଳା ସମିତି କାଗଜକୁ ଭଲ ଭାବରେ ମିଳାଇ ଦେଖି ସାରିଲଣି । କେଉଁଠି ସେହି ଝିଅଟି ଟଙ୍କା ଆତ୍ମସାତ କରିଥିବାର ପ୍ରମାଣ ମିଳୁନ ।

ତାକୁ ମିଛରେ ହଇରାଣ କରିବା ପାଇଁ ତୁମ ଅଫିସର କାଗଜ ପତ୍ର ଉପରେ କଟା ଯାଇ ଅଧିକ ଟଂକା ଲେଖା ଯାଇଛି । ଏ ଅଧିକ ଟଂକା କୁଆଡ଼ୁ ଆସିଲ, ତାର ପ୍ରମାଣ କିଛି ନାହିଁ । ଏ ସବୁ ଉଦ୍ଦେଶ୍ୟ ମୂଳକ ଭାବରେ ଝିଅଟିକୁ ହଇରାଣ କରିବା ପାଇଁ କରାଯାଇଛି । ବହୁ ଚିନ୍ତା କରି ତୁମେ ଝିଅଟିକୁ ଖାପଟରେ ପକାଇ ତା' ଠାରୁ କିଛି ଫାଇଦା ହାସଲ ପାଇଁ ଏ ତୁମର ଏକ ଚାଲବାଜ । ବର୍ତ୍ତମାନ ମୁଁ ତୁମର ପ୍ରକୃତ ଉଦ୍ଦେଶ୍ୟ ଜାଣି ପାରିଲଣି ।'

"ଦେଖ, ପ୍ରେମନାଥ, ତୁମ ବିରୁଦ୍ଧରେ ମୋ ଠାକୁ ବହୁ ଅଭିଯୋଗ ଆସିଲଣି । ତୁମେ ଯୁବକ, ପୁଣି ବିବାହିତ । ତୁମର ସ୍ତ୍ରୀ ଅଛନ୍ତି । ତୁମେ ଏଭଳି ଅବସ୍ଥାରେ ଅନ୍ୟ ଝିଅ ବୋହୂଂକ ଆଡ଼କୁ ପାପ ଦୃଷ୍ଟି ପକାଇବା ଉଚିତ ନୁହେଁ ।

ଏମିତି ଭାବରେ ଜାଲ ଖେଳାଇ ନିରୀହ ଝିଅ ବୋହୂମାନଙ୍କୁ କୁପଥକୁ ଟାଣି ଆଣି ତୁମର ଯୌନ ତୃଷ୍ଣା ମେଣ୍ଟାଇବା ଅତ୍ୟନ୍ତ ଘୃଣ୍ୟ । ମୁଁ ଲଜ୍ଜିତ ତୁମ ଭଳି ଜଣେ ଦାୟିତ୍ୱ ସମ୍ପନ୍ନ ଅଫିସର ଏତେ ତଳକୁ ଖସି ଯାଇପାରେ ବୋଲି ।

ଏହା ତୁମର ପ୍ରଥମ ଥର ଚେଷ୍ଟା ହୋଇଥିଲେ, ତୁମକୁ ମୁଁ ଛାଡ଼ି ଦେଇଥାନ୍ତି । ଏଥିପୂର୍ବରୁ ତୁମ ବହୁ ଅଫିସରଙ୍କୁ ଖାପଟରେ ପକାଇ, ପ୍ରମୋସନର ନାନା ମିଥ୍ୟା ପ୍ରତିଶ୍ରୁତି ଦେଇ, କେତେ ସ୍ଥାନରେ ଧମକ ଚମକ ଦେଇ ସେମାନଙ୍କ ଉପରୁ ଫାଇଦା ଉଠାଇଛ । ତୁମେ ଆମ ଶାସନର ଏକ କଳଙ୍କ । ତୁମେ ଯେ ବିଶ୍ୱାସୀ ଅଫିସର ନୁହଁ, ଏହା ମୁଁ ତୁମର ଚରିତ୍ର ପଞ୍ଜିକାରେ ଏଥର ଲେଖିବାକୁ ବାଧ୍ୟ ହେବି । ତୁମେ ମୋ ଡିଭିଜନରୁ ଅନ୍ୟତ୍ର, କେମିତି ବଦଳି ହୁଅ, ସରକାରଙ୍କୁ ଲେଖିବି ।

× × ×

ରେଭନ୍ୟୁ ମିନିଷ୍ଟରଙ୍କ ଠାରୁ ଡାକରା ପାଇ କମିସନର ଭେଙ୍କଟରମଣ ତାଙ୍କୁ ରାଞ୍ଚି ସାର୍କିଟ୍ ହାଉସରେ ସାକ୍ଷାତ କଲେ । କମିସନରଙ୍କୁ ଦେଖି ମନ୍ତ୍ରୀ କହିଲେ, "ଦେଖନ୍ତୁ ମିଷ୍ଟର ଭେଙ୍କଟରମଣ, ଆପଣ ସିଂହଭୂମ ଜିଲ୍ଲାପାଳ ମିଷ୍ଟର ପ୍ରେମନାଥ ଓଝାଙ୍କ ନାଁରେ ଏତେଗୁଡ଼ାଏ କଅଣ ଲେଖିଛନ୍ତି ? ତାଙ୍କୁ ସେ ଜିଲ୍ଲାରୁ ବଦଳି କରିବା ପାଇଁ ସୁପାରିଶ କରିଛନ୍ତି କାହିଁକି ?"

"ହଁ, ସାର୍, ସେ ବିଶ୍ୱାସଭାଜନ ହେଲାଭଳି ଅଫିସର ନୁହଁନ୍ତି । ତାଙ୍କୁ ମୁଁ ସିଂହଭୂମ ଜିଲ୍ଲାରେ ରଖିବାକୁ ରାଜି ନୁହେଁ । ଖାଲି ସିଂହଭୂମି କାହିଁକି, ସେତ କୌଣସି ଜିଲ୍ଲାରେ ରହିବା ଲୋକ ନୁହଁନ୍ତି । ସେଭଳି ମଦ୍ୟପୀ, ବ୍ୟଭିଚାରୀ ଲାଞ୍ଚଖୋର ଅଫିସର ଜିଲ୍ଲା ମହକୁମାରେ ରହିଲେ ସରକାରଙ୍କର ବଦନାମ ହେବ । ଆପଣ ତାଙ୍କୁ ସେକ୍ରେଟେରିଏଟକୁ ନେଇଯାଆନ୍ତୁ, ବା ଅନ୍ୟତ୍ର ନେଇ ଯାଆନ୍ତୁ, ମୋ ଡିଭିଜନରେ ରଖନ୍ତୁ ନାହିଁ । ଯେଉଁମାନେ ସାଧୁ ଅଫିସର, ଲମ୍ପଟୀ, ବ୍ୟଭିଚାରୀ ନୁହଁନ୍ତି, ଯେଉଁମାନେ ଲୋକମାନଙ୍କ ସହିତ ଭଲ ବ୍ୟବହାର କରିପାରିବେ, ସେହିଭଳି ଲୋକଙ୍କୁ ମୁଁ ଜିଲ୍ଲାପାଳ କରି ରଖିବାକୁ ଚାହେଁ । ମିଷ୍ଟର ଓଝା କୌଣସି ଜିଲ୍ଲାରେ ରହିବା ଭଳି ଅଫିସର ନୁହଁନ୍ତି ।"

କିନ୍ତୁ ଆପଣ ଜାଣୁନାହାନ୍ତି ମିଷ୍ଟର ଭେଙ୍କଟରମଣ, ସେ ଜଣେ ଖବ୍ ଦକ୍ଷ ଅଫିସର । ସେ ସିଂହଭୂମ ଜିଲ୍ଲାରେ ରହିଲା ଭିତରେ ବହୁ ଉନ୍ନୟନ କାର୍ଯ୍ୟରେ କୃତିତ୍ୱ ଅର୍ଜ୍ଜନ କରିଛନ୍ତି ।

ଆପଣ ଭୁଲ ରିପୋର୍ଟ ପାଇଛନ୍ତି ସାର୍ । ମିଷ୍ଟର ଓଝା ସିଂହଭୂମ ଜିଲ୍ଲାକୁ ଗଲାଦିନ ଠାରୁ ତାଙ୍କ ସହିତ କେତେଜଣ ଦୁର୍ନୀତିଗ୍ରସ୍ତ ବି.ଡ଼ି.ଓ ମିଶି ବ୍ଲକର ଟଙ୍କାପଇସା ତୋଷରପାତ ଠାରୁ ଆରମ୍ଭକରି ନାରୀହରଣ, ନାରୀ ଧର୍ଷଣ ପର୍ଯ୍ୟନ୍ତ କେତେ ଅମଣିଷ କାମ ଯେ କରିଛନ୍ତି, ତାର କଳନା ନାହିଁ । ମୁଁ ଜାଣେ ନିଜ ଜିଲ୍ଲାରୁ ସେଟାଆଖ୍ୟା ପାର୍ଟି ଉଠାଇ ଆପଣଙ୍କ ଦଳର ଭୋଟ ପାର୍ଟିକୁ ଦେଇଛନ୍ତି । ଯେତିକି ଦେଇଛନ୍ତି, ତା'ର ବହୁ ଗୁଣ ସେ ନିଜେ ଆତ୍ମ-ସାତ କରିଛନ୍ତି । ସେ ପାର୍ଟି ଯେଭଳି ଭାବ‌ରେ ସଂଗ୍ରହ କରା ଯାଇଛି, ଯଦି ଜଣା ପଡ଼ିଯାଏ, ତେବେ ଆପଣଙ୍କ ଦଳ ନିନ୍ଦିତ ହେବ ସାର୍ ।"

"ସେ କେମିତି ପାର୍ଟି ସଂଗ୍ରହ କଲେ, ତା ଭିତରକୁ ମୁଁ ଯିବାକୁ ଚାହେଁନା ମିଷ୍ଟର ଭେଙ୍କଟ ରମଣ । କିନ୍ତୁ ସେ ଜଣେ ଯେ ଖୁବ୍ ଦକ୍ଷ କାମିକା

ଲୋକ ଏହା ମୋର ବିଶ୍ୱାସ । ସେଭଳି ଲୋକ ଜିଲ୍ଲା ମହକୁମାରୁ ଅନ୍ୟତ୍ର ପଠାଯିବା କଥା ନୁହେଁ ! ମିଷ୍ଟର ଓଝାଙ୍କ ବିରୁଦ୍ଧରେ ଆପଣ ଯେଉଁ ସବୁ ଅଭିଯୋଗ କରିଛନ୍ତି, ତାକୁ ପ୍ରତ୍ୟାହାର କରି ନେଲେ ମୁଁ ଖୁବ୍ ଖୁସି ହୁଅନ୍ତି ।"

"ପ୍ରତ୍ୟାହାର କରିବା ପୂର୍ବରୁ ଆପଣ ମୋତେ ଯଦି ଏଠାରୁ ବିଦାୟ କରି ଦିଅନ୍ତି, ତେବେ ମୁଁ ଖୁବ୍ ଖୁସି ହୁଅନ୍ତି ସାର୍ । ଗତ ତିନିମାସ ହେଲା ମୋର ବଦଳି ବଦଳି ଆଦେଶ ଆସିଲାଣି । ଆପଣ ତା' ଉପରେ କିଛି କାର୍ଯ୍ୟାନୁଷ୍ଠାନ କରି ନାହାନ୍ତି ସାର୍ । ବର୍ତ୍ତମାନ ଯଦି ତା' ଉପରେ କିଛି କାର୍ଯ୍ୟାନୁଷ୍ଠାନ କରି ମୋତେ ବଦଳି ପଠାଇ ଦିଅନ୍ତି, ମୁଁ ଖୁବ୍ ଖୁସି ହୁଅନ୍ତି ସାର୍ ।"

"ଆପଣମାନଙ୍କ ଭଳି ଦକ୍ଷ ପୁରୁଣା ଅଫିସରଙ୍କୁ ଛାଡ଼ି ଦେଲେ ଆମ ଶାସନ ଚାଲିବ କେମିତି ?

"ଅଜ୍ଞା, ବହୁ ଦକ୍ଷ ଅଫିସର ପାଇଯିବେ ଆପଣ । ମୁଁ ବହୁ ଦିନ ହେଲା ଏହି ରାଜ୍ୟରେ ରହିଲାଣି । ମୋତେ ଆପଣ ଦୟାକରି ଏଠୁଁ ବିଦାୟ କରି-ଦେଲେ ମୁଁ ଖୁବ୍ ଖୁସି ହୁଅନ୍ତି ସାର୍ ।"

"ହେଉ, ମୋତେ ଚିନ୍ତା କରିବାକୁ ଦିଅନ୍ତୁ, ମିଷ୍ଟର ଭେଙ୍କଟ ରମଣ । ମୁଁ ପରେ ମୋ ସିଦ୍ଧାନ୍ତ ଜଣାଇବି ।"

× × ×

ମଧୁପୁର ଡାକବଙ୍ଗଳାରେ ଜିଲ୍ଲା ମାଜିଷ୍ଟ୍ରେଟ ମିଷ୍ଟର ଓଝାଙ୍କ ଡେରା ପଡ଼ିଛି । ସେହି ଡାକବଙ୍ଗଳାରେ ଜିଲ୍ଲାପାଳ ଓ ବି.ଡ଼ି.ଓ. ମଦ ଖାଇବାରେ ବ୍ୟସ୍ତ । ମଦ ପରଶୁଥାଏ ସୁନ୍ଦରୀ ମେନକା । ମଦରେ ମଜଗୁଲ ହୋଇ ଜିଲ୍ଲାପାଳ କହୁ-ଥାନ୍ତି "ଶଳା କମିସନରଟା ଏ ରାଜ୍ୟରୁ ଯାଇଛି, ଶଳା ଭଲ ହୋଇଛି । ଶଳାଟା ମୋତେ ଧର୍ମବାଣୀ ଶୁଣାଉଥିଲା । ସେଇ ଶଳାଟା ଯୋଗୁଁ ସେ ଦିନ ସେ ଝିଅଟା ମୋ ହାବୁଡ଼ରୁ ଖସି ଗଲା ନା ? ଶଳାଟା ଯାଇଛି ନା ମୋ କଣ୍ଟା ଯାଇଛି ।"

"ହଁ ସେ ଝିଅଟାକୁ କ'ଣ ଆଉ ଥରେ ଏଠିକି ଆଣି ହେବନି ? ଶଳା ମାଲ ଖଣ୍ଡେ । ଶଳା, ମୋତେ ଧର୍ମବାଣୀ ଶୁଣାଉଥିଲା । "ଆପଣ ବିବାହିତ,

ଆପଣଙ୍କ ସ୍ତ୍ରୀ ଅଛନ୍ତି ।" ଆରେ ଶଳା, ମୋର ସ୍ତ୍ରୀ ଅଛି, ହଁ ଅଛି—ନିଶ୍ଚୟ ଅଛି, ଆରେ ଶଳା ଅଲବତ ଅଛି । ସେ ଅଛି ଘର ପାଇଁ । ଆଉ ଏଠିକା ପାଇଁ କଣ ସେ ଘର ଛାଡ଼ି ଏଠାକୁ ଆସିବ ? ଶଳାଟା ଗୃହପାଣିଖିଆ, କ'ଣ ଏତକ ଜାଣିଛି, ଘର ପାଇଁ ଘର ମାଲ, ବାହାର ପାଇଁ ବାହାର ମାଲ । ଶଳାଟାକୁ କଏ ଆଇ.ଏ.ଏସ. କରିଥିଲା କେଜାଣି ? ଶଳାଟା ଏତକ ଜାଣିନାହିଁ । ଆଇ.ଏ.ଏସ. କୁଳର ଶଳାଟା ବଡ କଳଙ୍କ ।

ମେନକା ହାତରୁ ମଦ ନେଇଁ ନେଇଁ କହିଲେ, "ଦେଖ ବି.ଡି.ଓ ସେ ଝିଅଟାକୁ କ'ଣ ଆଉ ଆଣି ହେବନି, ଆଉ ଗୋଟାଏ ଜାଲ ବିଛାଅନା ! ଶଳା, ତା' ନାଁରେ ଯେଉଁ ଅଭିଯୋଗଟା ଥିଲା, ସେ ଅଭିଯୋଗଟାକୁ ଫଇସଲା କରି ଲେଖିଦେଇ ଯାଇଛି, ଝିଅଟା ନିର୍ଦ୍ଦୋଷ ।"

"ନାଇଁ, ଆଜ୍ଞା, ସେ ଝିଅଟାକୁ ଆଉ ଆଣି ହେବନି ? ସେ ବର୍ତ୍ତମାନ ମହିଳା ସମିତି ସେକ୍ରେଟେରୀ ପଦ ଛାଡ଼ି ଦେଇଛି । ଆମ ଜାଲଟା କେମିତି କେଜାଣି ସେହି ପଞ୍ଚାୟତରେ ପ୍ରଚାରିତ ହୋଇ ଯାଇଛି । ମୁଁ ସେଠାକୁ ଗଲା ବେଳକୁ ଲୋକେ ମୋତେ ସନ୍ଦେହ ଦୃଷ୍ଟିରେ ଦେଖୁଛନ୍ତି । ମେନକାକୁ ସେମାନେ ମୋଟେ ବିଶ୍ୱାସ କରୁ ନାହାନ୍ତି । ସେମାନଙ୍କ ଭାଷାରେ ମେନକା ଆଉ ମୁଁ ହେଉଛୁଁ ଆପଣଙ୍କର ଦଲାଲ ।"

"ସେହି ଝିଅଟାକୁ ପୋଲିସ ସାହାଯ୍ୟରେ ହରଣଚାଲ କରି ଆଣିଲେ କେମିତି ହୁଅନ୍ତା ? ନଚେତ୍ ଚୋରି ଅଭିଯୋଗରେ ଆରେଷ୍ଟ କରି ଥାନା ହାଜତକୁ କ'ଣ ଆଣି ହେବନି ? ଥାନା ଅଫିସର ସହିତ ପରାମର୍ଶ କରିଥିଲ ? ସେ କ'ଣ କହୁଛି ?"

ସେମାନେ କେହି ଧରା ଛୁଆଁ ଦେଉ ନାହାନ୍ତି ସାର୍ । ତା ଛଡା ସେହି ପଞ୍ଚାୟତର ଲୋକମାନେ ଏକ ମେଳ ହୋଇ ଆମ ବିରୁଦ୍ଧରେ ଲାଗିଛନ୍ତି ସାର୍ । ବିହନ, ସାର, ଚିନି ନେଇ ଆମର ଯେଉଁ ସବୁ ଚୋରି କାରବାର ସେମାନେ ପଦାକୁ ବାହାର କରିବା ପାଇଁ ଲାଗିପଡ଼ିଛନ୍ତି । ତା ଛଡ଼ା ସରକାରଙ୍କ ବିରୁଦ୍ଧ ଦଳ ସେମାନଙ୍କୁ ଉସକାଉଛନ୍ତି । ଆମର ସମସ୍ତ କାର୍ଯ୍ୟାବଳୀକୁ ସେମାନେ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟିକୁ ଆଣିବାକୁ ଚେଷ୍ଟା କରୁଛନ୍ତି ।"

"ଟଙ୍କା ଦେଇ ସେମାନଙ୍କ ମୁହଁ କ'ଣ ବନ୍ଦ କରିପାରୁ ନାହିଁ ? ସେଥିପାଇଁ ଯେତେ ଟଙ୍କା ଦରକାର ମୁଁ ଯୋଗାଇଦେବି । ଅନ୍ୟ ବ୍ଲକର କିଛି କିଛି ଗ୍ରାଣ୍ଟ ଏ ବ୍ଲକକୁ ପଠାଇଦେଲେ ତୁମର ଏ ଦିଗରେ ଖରଚ କରିବାକୁ କିଛି ଅଭାବ ରହିବ ନାହିଁ । କଳେ, ବଳେ, କୌଶଳେ ଆମ ବିରୋଧୀ ଲୋକ ଗୁଡ଼ାକୁ ହାତ କରିବାକୁ ଚେଷ୍ଟା କର ।"

"ମୁଁ ସେ ଦିଗରେ ପ୍ରାଣପଣେ ଚେଷ୍ଟା ଲଗାଇଛି ସାର୍ । ଆପଣ ନିଶ୍ଚିନ୍ତ ରୁହନ୍ତୁ, ଆପଣଙ୍କ ଉପରକୁ କିଛି ବିପଦ ଆସିବ ନାହିଁ । ତାହେଲେ ମୁଁ ଆସୁଛି ସାର । ମେନକା ଆଜ ଏଠ ରହୁ । କାଲେ ଗାଡ଼ିରେ କିଛି ।"

ଦିନକୁ ଦିନ ଗୋବିନ୍ଦପୁର ବ୍ଲକରେ ଜନ ଅସନ୍ତୋଷ ବଢ଼ିବାକୁ ଲାଗିଲା । ଗ୍ରାମମାନଙ୍କୁ ଯାହା ଗ୍ରାଣ୍ଟ ଆସିଲା, ତାହା ବ୍ଲକ ଦପ୍ତରରେ ରହିଗଲା । ଗ୍ରାମବାସୀଙ୍କ ଉନ୍ନତି ପାଇଁ କିଛି ଖର୍ଚ୍ଚ ହେଲା ନାହିଁ । ପୋଖରୀରୁ ମାଛ ମରି ହେଉଛି, ଆମ୍ବ ଗଛରୁ ଆମ୍ବ ତୋଳା ହେଉଛି, ନଡ଼ିଆ ଗଛରୁ ନଡ଼ିଆ ତୋଳା-ହେଉଛି, ସେସବୁ ବିକ୍ରୀ ହୋଇ ସରକାରଙ୍କ ଟ୍ରେଜେରୀକୁ ଯାଉଛି ବୋଲି ଲୋକଙ୍କୁ କୁହାଯାଉଛି, କିନ୍ତୁ ଯାଉଛି ଅନ୍ୟ ଆଡ଼େ ।

ଏହି ସବୁ ଯଥେଚ୍ଛାଚାରିତା ଫଳରେ ଗ୍ରାମପଞ୍ଚାୟତ ଆଉ କାମ କରୁନି । ପୂର୍ବ ବି.ଡ଼ି.ଓ ଙ୍କ ସମୟରେ ଯାହା ସବୁ ଉନ୍ନୟନ ମୂଳକ କାମ କରାଯାଇଥିଲା, ସେ ସବୁ ଏହି ବି.ଡ଼ି.ଓ ଙ୍କ ଅମଳରେ ନଷ୍ଟ ଭ୍ରଷ୍ଟ ହେବାକୁ ବସିଲାଣି ।

ସରକାରଙ୍କ ସାହାଯ୍ୟ ଅଭାବରୁ କୃଷି ସବୁ ଉଜୁଡ଼ି ଗଲାଣି । ମହାଜନ ଓ ଜମି ମାଲିକମାନଙ୍କ ଅତ୍ୟାଚାର ଦିନକୁ ଦିନ ବଢ଼ି ବଢ଼ି ଚାଲିଛି ।

ଆଗରୁ ଯାହା ଦୁଇଦିନ ତିନିଦିନ ମଧ୍ୟରେ ଥରେ ଚୁଲି ଜଳୁଥିଲା, ଆଜିକାଲି ଗାଁ ଲୋକମାନଙ୍କର ସାତ ଦିନରେ ବି ଥରେ ଚୁଲ୍ଲୀ ଜଳୁନି । ବାସନ୍ତୀ ଇସ୍ତଫା ଦେବା ଦିନ ଠାରୁ ମହିଳା ସମିତିର ଘର ଭାଙ୍ଗି ଗଲାଣି । ସ୍କୁଲ ଅବସ୍ଥା ତଥୈବଚ । ହରିବାବୁ ଦୌଡ଼ା ଦୌଡ଼ି କରି ଘରକୁ ଘର ଯାଇ ଡାକହାକ ଯାହା ସ୍କୁଲଟିକୁ ଚଳାଇଥିଲେ । ସ୍କୁଲ ଘର ଛପର ଅଭାବରୁ ଭାଙ୍ଗି ଯିବା ଉପରେ । ଇତି ମଧ୍ୟରେ ପୁଣି ହରିବାବୁଙ୍କ ବଦଳି ହୋଇଗଲାଣି । ହରିବାବୁଙ୍କ ଭଳି ନୀତିବାନ ଶିକ୍ଷକଙ୍କ ବଦଳି ଯୋଗୁଁ ସ୍କୁଲଟି ପୁରାପୁରି ବନ୍ଦ ହୋଇଯାଇଛି ।

ଗାଁର ଅବସ୍ଥା ଦିନକୁ ଦିନ ଯେତିକି ଖରାପ ହେଉଥାଏ, ବିରୁଦ୍ଧ ଦଳର ରାଜନୈତିକ ନେତାମାନେ ସେତେ ଗାଁକୁ ଆସିବା ଆରମ୍ଭ କରି ଦେଇଥାନ୍ତି । ଗାଁର ଏହି ଦୁରବସ୍ଥାରୁ ଫାଇଦା ଉଠାଇ ବର୍ତ୍ତମାନର ସରକାରକୁ ଦୁର୍ନାମ କରିବା ସେମାନଙ୍କ ଇଚ୍ଛା ।

କିନ୍ତୁ ଗାଁ ଲୋକେ ଇତି ମଧ୍ୟରେ ସବୁ ରାଜନୈତିକ ଦଳକୁ ଚିହ୍ନି-ଗଲେଣି । ସବୁ ଦଳ ଫାଇଦା ଉଠାଇଲାବାଲା । ଲୋକଙ୍କ ଅବସ୍ଥା ସୁଧାରିବା ବାଲା କେହି ନୁହନ୍ତି । ସମସ୍ତେ କୁମ୍ଭୀର କାନ୍ଦଣା କାନ୍ଦିବାରେ ଧୂରନ୍ଧର ।

ଦିନକୁ ଦିନ ଲୋକଙ୍କ ଅବସ୍ଥା ଯେତିକି ଖରାପ ହେଉଥାଏ, ସେମାନେ ରାଜନୈତିକ ଦଳମାନଙ୍କର ସେତିକି ବିରୋଧୀ ହେଉଥାନ୍ତି । ସେମାନେ ବୁଝି ଗଲେଣି ସେମାନଙ୍କ ଦୁରବସ୍ଥା ପାଇଁ ସରକାରୀ ଅଫିସରମାନେ ଯେତିକି ଦାୟୀ ଏହି ରକ୍ତ ଶୋଷକ ରାଜନୈତିକ ଦଲାଲ ସେମାନଂକ ଠାରୁ କମ୍ ଦାୟୀ ନୁହଁନ୍ତି । ଗୋବିନ୍ଦପୁର ଗାଁକୁ ଯଦି କୌଣସି ରାଜନୈତିକ ଦଳ କର୍ମୀ ଆସନ୍ତି, ତେବେ ଗାଁର ଲୋକେ ସେମାନଙ୍କୁ ଆଉ ଆଖିରେ ଅନାନ୍ତି ନାହିଁ । ସେମାନେ ଜାଣି-ସାରିଲେଣି ଏ ଗୁଡାକ ପୁରାପୁରି ଦଲାଲ । ସମସ୍ତେ ପାଟିରେ ପକାଇଲାବାଲା, କିଛି କାମ କଲାବାଲା ନୁହନ୍ତି ।

## ( ତିନି )

ବିନୋବାଜୀ ତାଂକ ଭୂଦାନ ପଦଯାତ୍ରା ବେଳେ ଗୋବିନ୍ଦପୁର ଗ୍ରାମ-ପଞ୍ଚାୟତଠାରେ ପାଖ ସ୍କୁଲ ପଡ଼ିଆରେ ଭାଷଣ ଦେଲେ । ସେ ଗାଁର ଲୋକ-ମାନଙ୍କୁ ଭୂଦାନ ଯଜ୍ଞ ଓ ଗ୍ରାମଦାନର ଉପକାରିତା ଓ ମହତ୍ତ୍ୱ କଥା ବୁଝାଇଲେ । ଗାଁ ଲୋକମାନଂକ ଅବସ୍ଥା ସୁଧୁରିବା ପାଇଁ ଆଉ କୌଣସି ବ୍ୟବସ୍ଥା ନାହିଁ, ଗ୍ରାମଦାନ ହିଁ ଏକମାତ୍ର ବ୍ୟବସ୍ଥା ।

ଲୋକମାନେ ଗ୍ରାମଦାନ କଲେ ସେମାନଂକ ଅବସ୍ଥା କେମିତି ସୁଧୁରିବ ପୂର୍ବର ସୁସ୍ଥ ବାତାବରଣ କେମିତି ଫେରି ଆସିବ ସେ ବୁଝାଇଲେ ।

ଗ୍ରାମଦାନ କରିଥିବା ଗାଁରେ କେହି ଧନୀ ଦରିଦ୍ର ରହିବେନି । ସମସ୍ତେ ଖଟି ଗାଁର ଉନ୍ନୟନ କରିବେ । ଏହି ଗାଁରେ ଜମିର ମାଲିକାନା ବ୍ୟକ୍ତି ବିଶେଷଂକର ରହିବନି । ଗାଁର ସମସ୍ତ କୃଷି ଜମି ଓ ଅନ୍ୟ ଜମିର ମାଲିକ ହେବେ ସାରା ଗ୍ରାମବାସୀ ।

ଗ୍ରାମରେ ଯାହା ଉତ୍ପାଦନ ହେବ, ତା'କୁ ଭୋଗକରିବେ ସମସ୍ତ ଗ୍ରାମ-ବାସୀ ସମାନ ଭାବରେ । ପ୍ରତ୍ୟେକ ଗ୍ରାମବାସୀଙ୍କର ସୁଖଦୁଃଖ ସାରା ଗ୍ରାମର ସୁଖ ଦୁଃଖ ସହିତ ସାମିଲ ହୋଇଯିବ । କୌଣସି ଜଣେ ଲୋକର ଯଦି ବ୍ୟକ୍ତିଗତ ସମସ୍ୟା ଉପୁଜେ, ତେବେ ସେ ସମସ୍ୟା ସେହି ଗାଁର ବୋଲି ଧରିବାକୁ ପଡ଼ିବ ।

ମହାତ୍ମାଜୀ ଯାହା କହିଥିଲେ ଗାଁ ଗହଳର ଉନ୍ନୟନହିଁ ଦେଶ ତଥା ଜାତିର ପ୍ରକୃତ ଉନ୍ନୟନ, ତାହା ଉପରେ ଜୋର ନ ଦେଲେ ଆମ ଦେଶ ଉନ୍ନତି ପଥରେ ଆଗେଇ ପାରିବନି । ଗାଁ ଗହଳର ଉନ୍ନତି ନ ହେଲେ ଦେଶର ଉନ୍ନତି ପୁରାପୁରି ଅସମ୍ଭବ ।

ଜନସେବା ଠାରୁ ବଡ ସେବା ପୃଥିବୀରେ ନାହିଁ । ଯେଉଁମାନେ ସେମାନଙ୍କ ଅର୍ଜିତ ଧନ ସମ୍ପତ୍ତି ଏହି ଗାଁର ଉନ୍ନତି କଲ୍ପେ ଦାନ କରିବେ, ସେମାନଙ୍କ ଠାରୁ ବଡ଼ ପୁଣ୍ୟାତ୍ମା ଏହି ସାରା ବିଶ୍ବରେ ଆଉ କେହି ନାହିଁ ।

ବିନୋବାଜୀ ସିନା ଭାଷଣ ଦେଇ ଚାଲିଗଲେ, ତାଙ୍କ ଭାଷଣର ସାର କଥା ଲୋକଙ୍କ ହୃଦୟରେ ଗାରି ହୋଇ ରହିଗଲା । ଜନସେବାହିଁ ଭଗବତ ସେବା, ଭୂଦାନହିଁ ଭଗବତ ଦାନ । ଗ୍ରାମଦାନହିଁ ଶ୍ରେଷ୍ଠତମ ଦାନ । ଲୋକମାନଙ୍କ ଭିତରେ ଏହି ଗ୍ରାମଦାନ ନେଇ ନାନା ଆଲୋଚନା ଚାଲିଲା ।

ଗ୍ରାମବାସୀମାନେ ଦେଖିଲେ ସେମାନଙ୍କ ଅବସ୍ଥା ଦିନକୁ ଦିନ ରସାତଳକୁ ଯାଉଛି । ଗାଁର ଜମିରୁ କିଛି ଉତ୍ପାଦନ ହେବାକୁ ନାହିଁ । ଲୋକେ ଡ଼ହଳ ବିକଳରେ ଆଉ କେତେ ଦିନ ପଡ଼ି ରହିବେ ? ଯଦି ଏହି ଅବହେଳିତ ଗ୍ରାମଗୁଡ଼ିକୁ ବିନୋବାଜୀଙ୍କୁ ଦାନ କରି ଦିଆଯାଏ, ତେବେ ସେ ତାଙ୍କ ଗ୍ରାମଦାନ ହୁଏତ ଖାତିରେ ଏହାର ସ୍ଥାୟୀ ଉନ୍ନୟନ ପାଇଁ କିଛି କରି ପାରନ୍ତି । ବିନୋବାଜୀଙ୍କ ଆଶୀର୍ବାଦ ପାଇଲେ ହୁଏତ ଏହି ଗାଁଗୁଡ଼ିକର ଭାଗ୍ୟ ଦିନେ ବଦଳି ଯାଇପାରେ ।

ଏହା ନିଶ୍ଚିତ ଯେ ସରକାରଙ୍କ ପକ୍ଷରୁ ଗାଁର କିଛି ଉନ୍ନତି ସମ୍ଭବପର ନୁହେଁ । ଇଏ ସରକାର ଯାଇ ଆଉ ଯେଉଁ ସରକାର ଆସିଲେ ମଧ୍ୟ ଅବସ୍ଥା ସୁଧୁରିବ ନାହିଁ । ସେଇପରି ହିଁ ରହିଥିବ ।

କଥାରେ ଅଛି ସବୁ ଚୁଲି ମୁହଁ ପଶ୍ଚିମକୁ । ସବୁ ରାଜନୈତିକ ଦଳ ସମାନ । ସମସ୍ତେ ଗରିବଙ୍କୁ ଶୋଷିଲା ବାଲା । ଗରିବଙ୍କ ଉନ୍ନତି ପାଇଁ କାହାରି ଦରଜ ନାହିଁ । ନେତା ହେବାକ୍ଷଣି ତ ନିଜ ଖାଇବା ଆରମ୍ଭ କରି ଦେଲେ, ଦେଶର ଉନ୍ନତି ହେବ କେଉଁଠୁ ?

ବିନେ ଗୋବିନ୍ଦପୁର ଗ୍ରାମ ପଞ୍ଚାୟତରେ ସାତ ଆଠ ଖଣ୍ଡ ଗାଁର ଲୋକେ ମିଳିତ ହୋଇ ଏକ ସଭା କଲେ । ସେହି ସଭାରେ ବହୁ ଆଲୋଚନା ପରେ ନିର୍ଦ୍ଧାର୍ଯ୍ୟ ହେଲା ଯେ ଏହି ଗାଁର ସବୁ ଲୋକେ ସେମାନଙ୍କ ସମସ୍ତ ଜମି ଓ ଘର ଉପରକୁ ଗ୍ରାମଦାନ ଆଇନରେ ବିନୋବାଜୀଙ୍କୁ ଦାନ କରି ଦେବେ । ତତ୍ ପରେ ସେ ଯେଉଁ ପନ୍ଥାରେ ଏହାର ଉନ୍ନୟନ ଚାହିଁବେ, ସେମାନେ ସେଥିରେ ସହଯୋଗ କରି କାର୍ଯ୍ୟ କରିବେ ।

ସଭାରେ ସିନା ସ୍ଥିର ହୋଇଗଲା, ଏହି ସାତ ଆଠ ଖଣ୍ଡି ଗାଁ ବିନୋ-ବାଜୀଙ୍କୁ ଗ୍ରାମଦାନ ଆଇନରେ ଦାନ କରି ଦିଆଯିବ, କିନ୍ତୁ ଗାଁର ଜମି ମାଲିକ ଓ ମହାଜନମାନେ । ଏହି ସିଦ୍ଧାନ୍ତ ବେଳେ ସେହି ସଭାରେ ସେମାନେ ଉପସ୍ଥିତ ନ ଥିଲେ । ଗାଁ ଲୋକଙ୍କ ସର୍ବସମ୍ମତ ସିଦ୍ଧାନ୍ତ ଯେତେବେଳେ ସେମାନଙ୍କୁ ଜଣାଇ ସେମାନେ କହିଲେ "ତୁମ୍ଭେମାନେ ଦେଇ ଦିଅ । ଆମେ ଆମ ସମ୍ପତ୍ତି ଦେବୁ ଦିଆଗଲା, ନାହିଁ ।" ଗାଁର ଶତକଡ଼ା ଅଶୀ ଭାଗ ଜମି ଏମାନଙ୍କ ଅକ୍ତିଆରରେ, ସେମାନେ ଯଦି ସେମାନଙ୍କ ଜମି ଦାନ ନ କରିବେ, ତେବେ ଗ୍ରାମଦାନ ହୋଇପାରିବ କେମିତି ?

ଗ୍ରାମଦାନ ସପକ୍ଷରେ ଥିବା ମୁଖିଆ ମୁଖିଆ, ଲୋକମାନେ ଯାଇ ସେମାନଙ୍କୁ ବୁଝାଇଲେ । ସେମାନେ ଯଦି ଗ୍ରାମବାସୀଙ୍କ ସହିତ ମିଳିତ ନ ହୋଇ ଏହି ସିଦ୍ଧାନ୍ତକୁ ଗ୍ରହଣ ନ କରନ୍ତି, ସେମାନଙ୍କ ଜମି ସେମାନେ କାହାକୁ ନେଇ ଚାଷ କରିବେ ?

ଅଧିକାଂଶ ଜମି ମାଲିକ ଓ ମହାଜନମାନେ ନାନା ଅନ୍ୟାୟ ଭାବରେ ଗ୍ରାମବାସୀଙ୍କ ଜମିକୁ ମାଡ଼ି ବସିଥାନ୍ତି । ମହାଜନର ଟଙ୍କା ପରିଶୋଧ ହୋଇଥିଲେ ବି ତା ଖାତାରେ କିଛି ଲେଖା ନ ହୋଇ ଋଣ ଗଡ଼ି ଚାଲିଥାଏ ।

ଧୀରେ ଧୀରେ ଗାଁ ମହାଜନ ଓ ଜମି ମାଲିକମାନଙ୍କ ବିରୋଧରେ ବିଦ୍ରୋହ ତେଜି ଉଠିଲା । ଏହି ସମୟରେ ଗାଁର ବଡ଼ ମହାଜନଙ୍କୁ ବିନା ଲାଇସେନ୍ସରେ ମହାଜନୀ କାରବାର ଚଳାଇଥିବାରୁ ପୋଲିସ ତରଫରୁ ଆରେଷ୍ଟ କରି ନିଆଗଲା । ଇନକମ୍ ଟିକ୍ସ ଅଫିସରମାନେ ଆସି ତାଙ୍କ ଘର ଖାନତଲାସ କରି ତାଙ୍କର ସମସ୍ତ ସମ୍ପତ୍ତିକୁ ବାଜ୍ୟାପ୍ତ କରି ଦେଲେ । ବହୁ କଷ୍ଟରେ ଓକିଲଙ୍କୁ ଧରି ସେ କରି ବହୁତ ଜାମିନରେ ଛୁଟି ପାଇଲା ।

ଗାଁ ଲୋକମାନେ ଯଦି ବର୍ତ୍ତମାନ ତା' ବିରୋଧରେ ଯାଆନ୍ତି, ତେବେ ସେ ଦୋଷୀ ସାବ୍ୟସ୍ତ ହୋଇ ଜେଲ ଦଣ୍ଡ ଭୋଗିପାରେ । ତେଣୁ ସେହି ଭୟରେ ବାଧ୍ୟ ହୋଇ ସମସ୍ତ ଜମିକୁ ବିନୋବାଜୀଙ୍କୁ ଦାନ କରି ଦେବାକୁ ସ୍ୱୀକାର କଲା ।

ବଡ଼ ବଡ଼ ଜମି ମାଲିକମାନେ ଦେଖିଲେ ସେମାନେ ଯଦି ଗ୍ରାମବାସୀଙ୍କ ସହିତ ନ ମିଶି ଅଲଗା ହୋଇ ରହି ଯାଉଛନ୍ତି, ଏହି ଜମି ପାଇଁ ଦିନେ ଯଦି ରକ୍ତାକ୍ତ ବିପ୍ଳବ ହୁଏ, ତେବେ ସେମାନଙ୍କ ବଂଶ ସିନା ନିପାତ ହୋଇଯିବ, ଏହି ଜମିକୁ ଭୋଗ ଦଖଲ କରିବାକୁ କେହି ନ ଥିବେ ।

ଗ୍ରାମବାସୀମାନେ ଯେତେବେଳେ ସେମାନଙ୍କୁ ବୁଝାଇ ଦେଲେ ଜଳ ଓ ବାୟୁ ଉପରେ ଯେମିତି ସମସ୍ତଙ୍କର ସମାନ ଅଧିକାର ରହିଛି, କେହି ଏହାକୁ ନିଜର ବୋଲି ଅଟକାଇ ରଖି ପାରୁନ, ଜମି ମଧ୍ୟ ସେହି ଭଳି ସମସ୍ତଙ୍କର । ଜଳ, ବାୟୁ ଭଳି ଜମି ଭଗବାନଙ୍କ ସୃଷ୍ଟି । ଏହା ଉପରେ ସମସ୍ତଂକର ସମାନ ଅଧିକାର ରହିବା କଥା ।

ସେମାନେ ସମସ୍ତେ ବୁଝିଗଲେ । ଗାଁ ଉଚ୍ଛନ୍ନ ହେବା ଉପରେ, ଜମିରୁ କ'ଣ ବା ଲାଭ ମିଳୁଛି ? ଏହାକୁ ଆବୋରି ଧରି ଲାଭ କଅଣ ?

ଗୋବିନ୍ଦପୁର ଗ୍ରାମ ପଞ୍ଚାୟତର ଆଠ ଖଣ୍ଡି ଗାଁ ଏକ ମତ ହୋଇ ସେମାନଂକ ଗାଁକୁ ବିନୋବାଜୀଂକ ଗ୍ରାମଦାନ ସଂସ୍ଥାକୁ ଦାନ କରି ଦେଲେ । ବିନୋବାଜୀଙ୍କ ଲୋକମାନେ ଆସି ଏହାକୁ ସରକାରଙ୍କ ରେଜିଷ୍ଟ୍ରି-ଖାନାରେ ଗ୍ରାମଦାନ ସଂସ୍ଥା ନାଁରେ କରିନେଲେ । ଏହି ଗାଁର ସବୁ ଜମିର ମାଲିକ ହେଲେ ସମସ୍ତ ଗ୍ରାମବାସୀ । କାହାରି କିଛି ବ୍ୟକ୍ତିଗତ ଜମି ବୋଲି କିଛି ରହିଲା ନାହିଁ ।



## ( ଚାରି )

ବିନୋବାଜୀଙ୍କ ପ୍ରଧାନ ଶିଷ୍ୟ ରାଧେଶ୍ୟାମଜୀ ରାଞ୍ଚି ସହରରେ ଏକ ବିରାଟ ପଡ଼ିଆରେ ଭୂଦାନ ଓ ଗ୍ରାମଦାନ ନୀତି ଉପରେ ଭାଷଣ ଦେଇ ନିଜ କ୍ୟାମ୍ପକୁ ଫେରି ଆସିଲା ବେଳକୁ ତାଙ୍କୁ ସାକ୍ଷାତ୍ କରିବା ପାଇଁ ଅପେକ୍ଷା କରିଥାନ୍ତି ପାଟନା ସାଏନ୍ସ କଲେଜର ବିଲାତ ଓ ଆମେରିକା ଫେରନ୍ତା ପ୍ରସିଦ୍ଧ ବୈଜ୍ଞାନିକ ଡକ୍ଟର ଅମରେଶ ଚନ୍ଦ୍ର ଦାସ । ଏତେ ବଡ଼ ବୈଜ୍ଞାନିକ କ'ଣ ପାଇଁ ତାଙ୍କ ଦର୍ଶନାଭିଳାଷୀ ଭାବି ଠିକ୍ କରି ପାରିଲେ ନି । ରାଧେଶ୍ୟାମଜୀ କିଛି ସମୟ ପରେ ତାଙ୍କୁ ତାଙ୍କ କୋଠରୀକୁ ଡ଼କାଇଲେ ।

ଅମରେଶ ରାଧେଶ୍ୟାମଜୀଙ୍କୁ ନମସ୍କାର ଜଣାଇ ତାଙ୍କ ସାମନା ସତରଞ୍ଜିରେ ବସିଲେ । ରାଧେଶ୍ୟାମଙ୍କ ପଛକୁ ବିନୋବାଙ୍କ ପ୍ରଧାନ ପ୍ରଧାନ ସହଚର ଭରତ ରାମଜୀ, ରତନ ଲାଲ୍ଜୀ, ଗୋବର୍ଦ୍ଧନ ପାଣ୍ଡେ ଆଦି ବସିଥାନ୍ତି । ଅମରେଶଙ୍କୁ ଦେଖି ଅଳ୍ପ ହସି ହସି ରାଧେଶ୍ୟାମଜୀ ପଚାରିଲେ, "କୁହନ୍ତୁ ଡକ୍ଟର ସାହେବ ଆପଣଙ୍କ ଗବେଷଣା କେମିତି ଚାଲିଛି ? ଆପଣଙ୍କ ଗବେଷଣା ଦ୍ୱାରା ଆମ ଜନତା କ'ଣ ଉପକାର ପାଉଛି, କହନ୍ତୁ ଡକ୍ଟର ଜୀ ।"

ଅମରେଶ ଆସିଥିଲେ ରାଧେଶ୍ୟାମଜୀଙ୍କ ପାଖରୁ ଭୂଦାନ ଓ ଗ୍ରାମଦାନ ସମ୍ପର୍କରେ କିଛି ନୂଆ କଥା ଶୁଣିବେ । ତା ପରିବର୍ତ୍ତରେ ରାଧେଶ୍ୟାମଜୀ କ'ଣ ତାଙ୍କୁ ଓଲଟି ତା ଗବେଷଣା କଥା ପଚାରିଲେଣି ? ବଡ଼ ଆଶ୍ଚର୍ଯ୍ୟ ହେଲେ ଅମରେଶ ।

'ନାଇଁ, ଆଜ୍ଞା, ମୋ ଗବେଷଣା ଠିକ୍ ଚାଲିଛି । ମୋ ଗବେଷଣା ଦ୍ୱାରା ଆମ ଦେଶର ଜନତା ସେମିତି ଭାବରେ ଉପକୃତ ହେଉ ନାହାନ୍ତି । ଏହି ଗବେଷଣା ବଳରେ ମୁଁ ଓ ମୋ ଗବେଷଣା କରୁଥିବା ଛାତ୍ର ଛାତ୍ରୀ-ମାନେ କେବଳ ଯାହା ଉପକୃତ ହେଉଛୁ । ମୋ ଗବେଷଣାତ୍ମକ ପ୍ରବନ୍ଧର ସଂଖ୍ୟା ବଢ଼ି ଚାଲିଛି ଓ ପି.ଏଚ୍.ଡ଼ି ପାଉଥିବା ଛାତ୍ରଙ୍କ ସଂଖ୍ୟା ବଢ଼ି ଚାଲିଛି । ପି, ଏଇଚ୍.ଡି. ପାଉଥିବା ଛାତ୍ରମାନେ ସେମାନଙ୍କ ନୂତନ ଡିଗ୍ରୀ ଦ୍ୱାରା ସରକାର ବା ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ଭଲ ଭଲ ଚାକିରି ଯାହା ପାଉଛନ୍ତି, ଫଳରେ ସେମାନଙ୍କ ସ୍ୱାର୍ଥର ଯାହା ଉନ୍ନତି ଘଟୁଛି ଏତିକି । ଦେଶର ସେମିତି କିଛି ଉନ୍ନତି ହେଉନି ।"

"ଦେଖନ୍ତୁ ଡ଼କ୍ଟର ସାହେବ, ଆପଣମାନଙ୍କ ଗବେଷଣାରେ ଆମ ଦେଶ ଖର୍ଚ୍ଚ କରୁଛି ଲକ୍ଷଲକ୍ଷ ଟଙ୍କା, ସେଥିରେ ମାତ୍ର କ'ଣ ଏହି କେତେଜଣ ଉପକୃତ ହେଉଛନ୍ତି ? ଦେଶର ଶହ ଶହ ଲୋକ ଦରିଦ୍ର ଅବସ୍ଥାରେ ଥିଲାବେଳେ ଦେଶର ରାଜସ୍ୱ ମାତ୍ର ଏହି କେଇଜଣଙ୍କ ସ୍ୱାର୍ଥରେ କ'ଣ ଲାଗିବା ଉଚିତ ?"

ନାଇଁ ଆଜ୍ଞା, ଏହା ହେବା ମୋଟେ ଉଚିତ ନୁହେଁ । ସେ ଦୃଷ୍ଟିରୁ ମୁଁ ଆପଣଙ୍କ ସହିତ ଏକମତ ଆଜ୍ଞା ।"

"ଆମ ଦେଶର ଅସଂଖ୍ୟ ସମସ୍ୟା ସମାଧାନରେ ବିଜ୍ଞାନ କ'ଣ ଲାଗିପାରିବନି ଡକ୍ଟରଜୀ ? ଆମ ଦେଶରେ ଆଜି ଶହଶହ ସମସ୍ୟା, ସେଗୁଡ଼ିକର ସମାଧାନ କିଏ କରିବ ? ଆପଣମାନେ ତ କରିବେ ? ଏହି ସମସ୍ୟାର ସମାଧାନ ନହେଲେ ଆମେ ତ ବଞ୍ଚି ପାରିବାନି । ସେସବୁ ସମସ୍ୟାର ସମାଧାନ ଦିଗରେ ଆମ ଦେଶର ବୈଜ୍ଞାନିକମାନେ ଆଗଉଥିଲା ଭଳି ମୋତ ମନେ ହୁଏନି । ପାଶ୍ଚାତ୍ୟ ଦେଶମାନଙ୍କରେ ଯେଉଁସବୁ ସମସ୍ୟା ଉପୁଜୁଛି, ସେ ସବୁକୁ ସେ ଦେଶର ବୈଜ୍ଞାନିକମାନେ ତ ସମାଧାନ କରୁଛନ୍ତି । ଆମ ଦେଶର ସମସ୍ୟା ସମାଧାନ ପାଇଁ ଆମ ଦେଶର ବୈଜ୍ଞାନିକ ମାନେ ପଛଉଛନ୍ତି କାହିଁକି ?"

"ମୁଁ ଆପଣଙ୍କ ସହିତ ପୁରାପୁରି ଏକମତ ଆଜ୍ଞା । ଆପଣ ଯେଉଁ ଭଳି ଗବେଷଣା କଥା କହୁଛନ୍ତି, ସେଭଳି ଗବେଷଣା ଆମ ଦେଶର ଲୋକେ କରିବାକୁ ଆଗ୍ରହ ପ୍ରକାଶ କରୁ ନାହାନ୍ତି । ସେଭଳି ଗବେଷଣାରେ ନିଜ ପ୍ରକୃତ ଜ୍ଞାନର ବିନିଯୋଗ ଦରକାର, ଯା ପାଇଁ କି ଆମ ବୈଜ୍ଞାନିକମାନେ ସବୁବେଳେ ପରାଙ୍ମୁଖ । ପାଶ୍ଚାତ୍ୟ ଦେଶର ଗବେଷଣାର ଗୋଡ଼ାଣିଆ ହୋଇ

ଯାହା କରୁଛୁ ଏଠି ଗବେଷଣା ଗ୍ରହଣ କରୁଛୁ । ଏବର ଗବେଷଣାରେ ଆମର ନିଜର ବୋଲି କରୁଛୁ ନାହିଁ ।"

"ଆପଣଙ୍କୁ ଗବେଷଣା କେମିତି ଲାଗୁଛୁ ଡ଼କ୍ଟର ସାହେବ ? ଆପଣ ଆପଣଙ୍କ କାମରେ ବେଶ୍ ସନ୍ତୁଷ୍ଟ ତ ?"

"ନାଇଁ ଆଜ୍ଞା, ମୁଁ ମୋ ଗବେଷଣା କାର୍ଯ୍ୟରେ ମୋଟେ ସନ୍ତୁଷ୍ଟ ନୁହେଁ । ମୁଁ ଏହି ଧରଣର ଗବେଷଣା କରିବା ଫଳରେ ନିଜକୁ ଜଣେ ଅପରାଧୀ ବୋଲି ମନେ କରୁଛୁ । ମୋ ଗବେଷଣା ଫଳ ଦେଶର ବା ଲୋକମାନଙ୍କର ଉପକାରରେ ଆସୁ ନଥିବାରୁ ମୁଁ ବଡ଼ ଦୁଃଖିତ । ଯେଉଁ ମାନଙ୍କ ଅର୍ଥରେ ଆମେ ଗବେଷଣା କରୁଛୁ, ସେମାନଙ୍କୁ ଆମେ ଯଦି କିଛି ପ୍ରତିଦାନ ଦେଇ ନ ପାରିଲୁ, ତେବେ ଆମେ ଆମ ଦେଶର ଅର୍ଥକୁ ଲୁଟି ନେଉଛୁ ବୋଲି ଧରିନେବାକୁ ପଡ଼ିବ ।

ସେଥିପାଇଁ ବହୁଦିନ ହେଲା ଏହିଭଳି ଅନୈତିକ ଗବେଷଣାରୁ ଛୁଟି ନେଇ ଜନସେବା କଲାଭଳି କାମରେ ମୁଁ ନିଜକୁ ନିୟୋଜିତ କରିବାକୁ ଚାହେଁ ।"

"ଆପଣ ଏହି ପଦକ୍ଷେପ ନେବା ପୂର୍ବରୁ ଏହା ଉପରେ ଚିନ୍ତା କରିଛନ୍ତି ତ ଡକ୍ଟର ସାହେବ ?"

"ହଁ ଆଜ୍ଞା, ଗତ ଛଅମାସ ଧରି ମୁଁ ଏହା ଉପରେ ଗଭୀର ଚିନ୍ତା କରି ଆସିଛି । ଏହି ଚାକିରିରେ ଆଉ ଅଧିକ ଦିନ ରହିବା ପାଇଁ ମୋର ଆଦୌ ଇଚ୍ଛା ନାହିଁ । ମୋର ସବୁଦା ମନେ ହେଉଛି ଯେମିତି ମୋର ଜୀବନ ନଷ୍ଟ ହୋଇ ଯାଉଛି । ଯେଉଁ ଉଦ୍ଦେଶ୍ୟ ପାଇଁ ମଣିଷ ସୃଷ୍ଟି ହୋଇଛି, ସେହି ଉଦ୍ଦେଶ୍ୟ ଠାରୁ ମୁଁ ଯେମିତି ଦୂରକୁ ଦୂରକୁ ଚାଲି ଯାଉଛି ।"

ରାଧେଶ୍ୟାମଙ୍କ ପାଖରେ ବସିଥିଲେ ବିନୋବାଜୀଙ୍କ ଆଉ ଏକ ଘନିଷ୍ଠ ଶିଷ୍ୟ ହରିଭାଇ ଜୀ । ସେ କହି ପକାଇଲେ, "ଆପଣମାନଙ୍କ ଭଳି ଦେଶର ପ୍ରଖ୍ୟାତ ବୈଜ୍ଞାନିକ, ଯେଉଁମାନଙ୍କ ନାଁ ଦେଶ ବିଦେଶରେ ସମ୍ମାନିତ ହେଉଛି, ସେମାନେ ଚାକିରି ଛାଡ଼ି ଦେଇ ଜନ ସେବା ପାଇଁ ଚାଲି ଆସିବା ଦେଶ ପକ୍ଷରେ କମ ବଡ଼ ସୌଭାଗ୍ୟର ନିଦର୍ଶନ ନୁହେଁ । ଆମ ସଂସ୍ଥା ଆପଣମାନଙ୍କ ଭଳି ଉଚ୍ଚକୋଟୀର ବୁଦ୍ଧିଜୀବିମାନଙ୍କୁ ପାଇଲେ କମ୍ ଗୌରବାନ୍ୱିତ ମନେ କରିବନି ।"

ଦେଖନ୍ତୁ, ଡ଼ିକ୍ଟର ସାହେବ । ଆପଣଙ୍କ ରାଜ୍ୟ ବିହାରର ଲୋକ ଅତ୍ୟଧିକ ଗରିବ । ଆମ ଦେଶର ସବୁ ରାଜ୍ୟ ବିନୋବାଜୀଙ୍କ ସହିତ ଆମେ ବୁଲି ସାରିଲୁଣି, ବିହାର ଭଳି ଗରିବ ରାଜ୍ୟ ଓଡ଼ିଶାକୁ ଛାଡ଼ି ଦେଲେ ଆଉ ନାହିଁ । ଏହି ରାଜ୍ୟଟି ଓଡ଼ିଶା ଭଳି ପ୍ରାକୃତିକ ସମ୍ପଦରେ ପୂରି ରହିଛି । ଜମି ଗୁଡ଼ିକ ଖୁବ୍ ଉର୍ବର । ହେଲେ ଏ ଦୁଇ ରାଜ୍ୟର ସର୍ବାଧିକ ଭାଗ ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ।

ରାଜ୍ୟର ପ୍ରାକୃତିକ ବିଭବକୁ ଯଦି କାର୍ଯ୍ୟରେ ଲଗା ଯାଇ ପାରନ୍ତା, ତେବେ ଏ ଦେଶରେ ଦୁଧ ମହୁର ସ୍ରୋତ ଫିଟିଯାନ୍ତା । ଆପଣମାନଙ୍କ ଭଳି ବୁଦ୍ଧିମାନ ଓ ଜ୍ଞାନୀ ଲୋକମାନେ ଯଦି ଲୋକଙ୍କ ଦୁର୍ଦ୍ଦଶା ପ୍ରତି ସଚେତନ ହୁଅନ୍ତେ, ତେବେ ଲୋକଙ୍କର ଅବସ୍ଥା ଯଥେଷ୍ଟ ସୁଧୁରି ଯାନ୍ତା ।

ଦେଶର ଉନ୍ନତି ପାଇଁ ଆମ ଦେଶରେ ଯୋଜନାର ବନ୍ୟା ଚାଲିଛି, କିନ୍ତୁ ଯୋଜନା ସିନା ଗ୍ରାମ୍ୟ ସ୍ତରରୁ ଯାଇ ଜିଲ୍ଲାସ୍ତର, ଜିଲ୍ଲାସ୍ତରରୁ ଯାଇ ରାଜ୍ୟ-ସ୍ତର, ରାଜ୍ୟସ୍ତରରୁ ଯାଇ ଦେଶ ସ୍ତରରେ ଦିଲ୍ଲୀରେ ପହଞ୍ଚନ୍ତା, କିନ୍ତୁ ଆମ ଦେଶର ତାହା ଓଲଟା କାମ କରୁଛି । ଯୋଜନା ଆସୁଛି ଦିଲ୍ଲୀରୁ, ସେ ରାଜ୍ୟ, ଜିଲ୍ଲା ଦେଇ ଗ୍ରାମ୍ୟସ୍ତରରେ ପହଞ୍ଚି ପାରୁନି । ଫଳରେ ଯୋଜନା ଯୋଗୁଁ ଦେଶର ଯାହା ଉନ୍ନତି ଗ୍ରାମମାନଙ୍କରେ ହେବା କଥା ତାହା ହୋଇ ପାରୁନି ।

ଏଥିପାଇଁ ବିନୋବାଜୀ ଯେଉଁ ଗ୍ରାମଦାନ ଯୋଜନା ଆରମ୍ଭ କରିଛନ୍ତି, ତାହାର ଆରମ୍ଭ ଗ୍ରାମକୁ ନେଇ । ଗ୍ରାମ ଯଦି ଉନ୍ନତ ହୁଏ, ଜିଲ୍ଲା ଉନ୍ନତ ହେବ, ଜିଲ୍ଲା ଉନ୍ନତ ହେଲେ ରାଜ୍ୟ ଉନ୍ନତ ହେବ, ରାଜ୍ୟ ଉନ୍ନତ ହେଲେ ସାରା ଦେଶ ସାମୁହିକ ଭାବେ ଉନ୍ନତ ହେବ । ଗ୍ରାମଦାନର ପ୍ରଧାନ କାର୍ଯ୍ୟକାରିତା ହେଉଛି ଗ୍ରାମମାନଙ୍କର ଉନ୍ନୟନ, ଗ୍ରାମ୍ୟ ଲୋକଙ୍କର ସାମୁହିକ ଅବସ୍ଥାର ଉନ୍ନତି । ଗ୍ରାମଦାନ କରିଥିବା ଗ୍ରାମର ଲୋକେ ସମସ୍ତେ ସମାନ, ଲୋକଙ୍କ ଭିତରେ ଦାନ କରିଥିବା ଜମିର ପରିମାଣ ନେଇ ବାଛ ବିଚାର ନାହିଁ ।

ଭଗବାନଙ୍କ ସୃଷ୍ଟି ଜଳ, ବାୟୁ ଯେମିତି ସମସ୍ତଙ୍କର ସମାନ ଭାବରେ ଉପଭୋଗ୍ୟ, ଜମି ସେମିତି ସମସ୍ତଙ୍କର ସମାନ ଭାବରେ ଉପଭୋଗ୍ୟ ।

ଆମ ଦେଶର ପ୍ରତ୍ୟେକ ଗ୍ରାମର ଲୋକମାନେ ସରଳ, ପରିଶ୍ରମୀ, କଷ୍ଟ-ସହିଷ୍ଣୁ, ସେମାନଙ୍କୁ ନେତୃତ୍ୱ ଦେଲେ ଗାଁ ଗୁଡ଼ିକର ଉନ୍ନତି ହୁ ହୁ ହୋଇ ଆଗେଇ ଯିବ ।

ଆପଣ ଯାହା ଅନୁଭବ କରୁଛନ୍ତି, ମୁଁ ବ ତାହାହିଁ ଅନୁଭବ କରୁଛି ଆଜ୍ଞା । ଆପଣଙ୍କ ମତ ହିଁ ମୋର ମତ ।

"ଆପଣଙ୍କ ବାସସ୍ଥାନ କେଉଁଠି ଡ଼କ୍ଟର ସାହେବ ?"

"ମୋ ନିଜ ଘର ସିଂହଭୂମ ଜିଲ୍ଲା ରଘୁନାଥପୁର ଗ୍ରାମରେ । ମୋ ବାପା ବର୍ତ୍ତମାନ ମୁଙ୍ଗେର କଲେଜର ପ୍ରିନ୍‌ସିପାଲ ।"

ଆପଣ ଆମ ସେବା ସଂସ୍ଥା ଭିତରକୁ ଆସିବା ପୂର୍ବରୁ ଆପଣଙ୍କ ପିତାମାତାଙ୍କ ଅନୁମତି ନେଇଛନ୍ତି ତ ଡ଼କ୍ଟର ସାହେବ ? ସେମାନେ ଯଦି ଆପଣଙ୍କୁ ଏ ବାଟକୁ ଆସିବାକୁ ଚାହୁଁ ନ ଥିବେ, ତେବେ ସେମାନଙ୍କ ଅସନ୍ତୋଷ ଏହାର ଓଲଟା ବାଟରେ କାମ କରିବନି ?"

"ମୋର ବିଶ୍ୱାସ ମୁଁ ଏ ସଂସ୍ଥାକୁ ଆସିଲେ ସେମାନେ କିଛି ଆପତ୍ତି କରିବେନି ।

ଆପଣ କହିଲେ ଆପଣ ପରା ସିଂହଭୂମ ଜିଲ୍ଲାର ଲୋକ ।

"ହଁ ଆଜ୍ଞା ।"

ତେବେ ଖୁବ୍ ଭଲ ହୋଇଛି । ଏହି କିଛି ଦିନ ତଳେ ବିନୋବାଜୀଙ୍କ ଏହି ରାଜ୍ୟରେ ପଦଯାତ୍ରା ବେଳେ ଗୋବିନ୍ଦପୁର ସମେତ ଆଠଗୋଟି ଗାଁ ଗ୍ରାମଦାନ ସୂତ୍ରରେ ଆମ ସଂସ୍ଥାକୁ ମିଳିଛି । ଏହି ଗ୍ରାମ ଗୁଡିକର ଲୋକମାନଙ୍କ ଅବସ୍ଥା ଅତି ଖରାପ । ଗ୍ରାମ ଗୁଡିକର ଶିକ୍ଷା, ସ୍ୱାସ୍ଥ୍ୟ, ରାସ୍ତା, ଘାଟ, କୃଷି, ଅତି ନିକୃଷ୍ଟ ଧରଣର ।

ଆମ ଗ୍ରାମଦାନ ନୀତିରେ ଏହି ଗ୍ରାମ ଗୁଡିକର ଉନ୍ନୟନ କରିବା ଦାୟିତ୍ୱ ମୁଁ ଆପଣଙ୍କୁ ଦେଇପାରେ କି ? ସେମାନଙ୍କ ପରିଶ୍ରମରେ ସେମାନଙ୍କ ଗାଁର ଉନ୍ନୟନ ଘଟିବ । ବାହାରୁ କୌଣସି ସାହାଯ୍ୟର ଆଶା ନାହିଁ । ଆପଣ ଏହି ଦାୟିତ୍ୱ ନେବାକୁ ପ୍ରସ୍ତୁତ ଅଛନ୍ତି କି ଡ଼କ୍ଟର ସାହେବ ? ପ୍ରଥମରୁ ଆମ ନୀତି ସହିତ ଅଭ୍ୟସ୍ତ ହୋଇ ଆପଣ କେମିତି ଏହି ଗ୍ରାମ ଗୁଡ଼ିକୁ ନେଇ ଆଗେଇ ଯିବେ, ସାହାଯ୍ୟ କରିବାଲାଗି ମୁଁ ଭରତ ରାମଜୀଙ୍କୁ ଅନୁରୋଧ କରିବି । ମାସେ

ଦୁଇମାସ ଭିତରେ ଆମ ମତ ସହିତ ଆପଣ ଅଭ୍ୟସ୍ତ ହୋଇଗଲେ ଏହି ଗ୍ରାମ ଗୁଡ଼ିକର ପୂରଦାୟିତ୍ୱ ସେ ଆପଣଙ୍କୁ ଦେଇ ଚାଲି ଆସିବେ । ଦେଖନ୍ତୁ, ଗ୍ରାମଦାନ ମତ ଅନୁସାରେ ଗ୍ରାମ ଉନ୍ନୟନ ଏକ ଅଗ୍ନିପରୀକ୍ଷା, ଆମ ସମସ୍ତଙ୍କ ପାଇଁ ଓ ଆପଣଙ୍କ ପାଇଁ । ଗ୍ରାମଦାନ ମତରେ ଗ୍ରାମ ଉନ୍ନୟନ ହେଉଛି ଆମର ସ୍ଲୋଗାନ, କିନ୍ତୁ ଏହା କେଉଁଠି ଏ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇନାହିଁ । ଏହା ପ୍ରଥମତଃ ଆରମ୍ଭ ହେବ ଗୋବିନ୍ଦପୁର ଗ୍ରାମପଞ୍ଚାୟତରେ । ଏହା ଯଦି କୃତକାର୍ଯ୍ୟ ହୁଏ, ତେବେ ସାରା ଦେଶରେ ଏହା ଏକ ନୂତନ ଯୁଗ ଆଣିଦେବ ଓ ଏହା ଯଦି ଅକୃତକାର୍ଯ୍ୟ ହୁଏ, ତେବେ ସାରା ଦେଶର ଭବିଷ୍ୟତ ଅନ୍ଧକାରମୟ ।"

ଭୂଦାନ ସଂସ୍ଥାର କର୍ମୀମାନଙ୍କ ସହ ଅମରେଶ ଚାଲିଗଲା ଗୋବିନ୍ଦପୁର । ନିଜ ଗାଁ ରଘୁନାଥପୁର ଠାରୁ ବେଶୀ ଦୂରରେ ନୁହେଁ ଗୋବିନ୍ଦପୁର । ଅମରେଶ ନିଜ ଗାଁକୁ କେବେ ଯାଇନି । ଜାଣିନି ସେ ଗ୍ରାମ୍ୟଜୀବନ କେମିତି । ଏହା ତା'ର ପ୍ରଥମ ଅନୁଭୂତି ।

## ( ପାଞ୍ଚ )

"ହଇହେ ଶୁଣିଲଣି, ତୁମ ଗୁଣବନ୍ତ ପୁଅଙ୍କ କାଣ୍ଡ ?" କହୁଁ କହୁଁ ଘର ଭିତରକୁ ପଶି ଆସିଲେ ବିପିନ ବାବୁ । ସ୍ତ୍ରୀ ରାଧାମଣୀ ଦେବୀ ଭିତର ଘରେ କ'ଣ କାର୍ଯ୍ୟବ୍ୟସ୍ତ ଥିଲେ । କ'ଣ ହେଲା ଭାବି ସ୍ୱାମୀଙ୍କ ପାଖକୁ ଦୌଡ଼ି ଆସିଲେ । ବିପିନବାବୁ ସ୍ତ୍ରୀକୁ ଦେଖି କହିଲେ, "ପିଲାଟା ପାଗଳ ହୋଇଗଲା ।"

"ହଇ ହେ, କିଏ ପାଗଳ ହୋଇଗଲା ?"

"ଆଉ କିଏ ହୁଅନ୍ତା ?" ତୁମ ଗୁଣବନ୍ତ ପୁଅ ।

"ଆଁ ପୁଅ ପାଗଳ ହୋଇଗଲେ କ'ଣ ତୁମେ କହୁଛ ? ତୁମେ କେମିତି ଜାଣିଲ ? କିଏ ତୁମକୁ କହିଲା ପୁଅ ପାଗଳ ହୋଇଗଲା ବୋଲି ।" କହୁଁ କହୁଁ କାନ୍ଦିବାକୁ ଆରମ୍ଭ କରିଦେଲେ ରାଧାମଣୀ ଦେବୀ । ସେମାନଙ୍କର ଗୋଟିଏ ବୋଲି ପୁଅ । ସେ ଯଦି ପାଗଳ ହୋଇଗଲା, ତେବେ ତାଙ୍କର ଆଉ ଏ ଜୀବନ ଧରି ଲାଭ କଅଣ ?

ସ୍ତ୍ରୀଙ୍କୁ କାନ୍ଦିବା ଦେଖି ବିପିନବାବୁ କହିଲେ, "ତୁମ ମୁଣ୍ଡରେ ଦେଖୁଛି, ବୁଦ୍ଧି ଶୁଦ୍ଧି କିଛି ନାହିଁ । କାନ୍ଦିବା କ'ଣ ଆରମ୍ଭ କରି ଦେଲଣି ? ମୁଁ କ'ଣ କହିଲି

ତୁମେ କ'ଣ ବୁଝିଲ ? ମୁଁ କହିଲି ବୋଲି କ'ଣ ପୁଅଟା ସତରେ ପାଗଳ ହୋଇଗଲା ?"

•

"ପାଗଳ ହୋଇନି ତ ? ଭଗବାନ ତାକୁ ଘଣ୍ଟ ଘୋଡ଼ାଇ ରଖିଥାନ୍ତୁ ।" କହୁଁ କହୁଁ ତାଙ୍କ ମୁହଁରେ ଟିକିଏ ମୃଦୁ ହସ ଫୁଟି ଉଠିଲା, "କଥାଟା କ'ଣ ଟିକିଏ କହିଲ ?"

"କଥାଟା ତୁମ ଗଣ୍ଡ ଓ ମୋ ମୁଣ୍ଡ । ଜାଣିଲଣି ତୁମ ଗୁଣବନ୍ତ ପୁଅ କ'ଣ ଏହା ଭିତରେ କରିଛି ?"

"କ'ଣ କରିଛି ?"

"ଚାକିରି ଛାଡ଼ିଦେଇ ବିନୋବାଙ୍କ ଭୂଦାନ ଯଜ୍ଞରେ ମିଶିଲାଣି । ପୁଅକୁ ଏତେ କରି ପାଠ ପଢ଼ାଇଥିଲି । ପୁଅଟା ବିଲାତ ଆମେରିକା ଗଲା, ସେଠୁଁ ଉଚ୍ଚ ଶିକ୍ଷା ପାଇ ଆସିଲା । ଭଲ ଚାକିରି ମିଳିଥିଲା । ଚାକିରି ଛାଡ଼ିଦେଇ ସେ ଭୂଦାନୀଙ୍କ ଦଳରେ ଯାଇ ହାଜର । ହେଇ ଦେଖ, ତୁମ ଗୁଣବନ୍ତ ପୁତ୍ର ରତ୍ନ ଚିଠି ଲେଖିଛନ୍ତି ।

'ପୂଜ୍ୟାସ୍ପଦ ପିତା,' ହେଇ ନିଅ ପଢ଼ । ଏତିକି କହି ପୁଅ ଦେଇଥିବା ଚିଠିଟିକୁ ରାଧାମଣି ଦେବୀଙ୍କ ହାତକୁ ବଢ଼ାଇଦେଲେ ।

ରାଧାମଣି ଦେବୀ ସ୍ୱାମୀଙ୍କ ହାତରୁ ପୁଅ ଦେଇଥିବା ଚିଠି ନେଇ ପଢ଼ିଲେ । ପୁଅ କାହିଁକି ଚାକିରି ଛାଡ଼ିଲା, ଏ ଚାକିରିରେ କଣ ହେବନି, ସେସବୁ ଟିକିନିଖି କରି ବାପାଙ୍କୁ ବୁଝାଇଥିଲା । ଏ ଦେଶର ଗବେଷଣା ଚେଷ୍ଟାଟା ସହିତ ସମାନ ବୋଲି କହି ଗବେଷଣା ଜୀବନକୁ ପ୍ରତ୍ୟାଖ୍ୟାନ କରି ଜନସେବା ଭୂଦାନ କାର୍ଯ୍ୟକୁ ସେ କିପରି ଆଦରି ନେଇଛି ବର୍ଣ୍ଣନା କରିଥାଏ ଖୁବ୍ ପ୍ରାଞ୍ଜଳ ଭାବରେ । ରାଧାମଣି ଦେବୀ ଚିଠି ପଢୁଁ ପଢୁଁ କହିଲେ, "ମୁଁ ପରା ସେହିଦିନୁ କହୁଛି ପୁଅକୁ ବାନ୍ଧ କରି ପକାଅ । ବାନ୍ଧ ହୋଇଥିଲେ ସେ କ'ଣ ଆଜି ଚାକିରି ଛାଡ଼ିଦେଇ ଭୂଦାନୀଙ୍କ ଦଳରେ ମିଶିଥାନ୍ତା ? ତୁମେ ତ ଜାଣିଛ ପିଲାଟା ମୂଳରୁ ସ୍ୱାଧୀନ ଚେତା, ସେ ଯାହା ଭାବିବ, ସେଇଆ କରିବ । ତା ବେକରେ ଯଦି ଜୁଆଳିଟାଏ ପଡ଼ି ଯାଇଥାନ୍ତା, ତେବେ ସେ କ'ଣ ଚାକିରି ଛାଡ଼ି ଯାଇପାରିଥାନ୍ତା ? ତା ଯିବା ପାଇଁ ତୁମେ ଦାୟୀ ।"

'ହେଉ, ହେଲା, ପୁଅ ବାବାଜି ହେଲା, ଦୋଷ ହେଲା ମୋର ।" ସେ କୁଳାଙ୍ଗାରର ମୁହଁ ମୁଁ ଆଉ ଥରେ ଚାହିଁବିନି । ମୋର କ'ଣ ନାହିଁ ? କେଉଁ ଖରାପ ଚାକିରିଟା ସେ କରିଥିଲା ? କି ବଢ଼ିଆ ଚାକିରି । ଗବେଷଣାରେ ପାଟନା ସାଏନ୍‌ସ କଲେଜରେ କି ସୁନାମ ? ସମସ୍ତଙ୍କ ମୁହଁରେ ତା' କାମର ପ୍ରଶଂସା । ଏତେ ପ୍ରଶଂସା ଓ ସୁନାମ ପାଉଁ ପାଉଁ ଏତେ ଭଲ ଚାକିରିଟାକୁ ଛାଡ଼ି ଚାଲିଗଲା । ଆଇ.ଏ.ଏସ ତ ଛାଡ଼ିଥିଲା, ଶେଷରେ ଏଟାକୁ ବି ଛାଡ଼ିଲା । ଏ ପୁଅ ଭାଗ୍ୟରେ ଆଉ ସୁଖ ନାହିଁ ? ଦୁଧ ଭାତ ଗଲା କୁଣ୍ଡାଇ ହେଉଛି । ଏଭଳି ପୁଅ ଥାଇ ଯାହା, ନଥାଇ ତାହା ।"

"ତୁମେ ଏମିତି କ'ଣ କହୁଛ ମ ?" ସୁଁ ସୁଁ କରି ରାଧାମଣୀ ଦେବୀ କାନ୍ଦିବାକୁ ଆରମ୍ଭ କରିଦେଲେ । "ଗୋଟିଏ ବୋଲି ପୁଅ । ଆଗକୁ ପଛକୁ କେହି ନାହାନ୍ତି । ସେ ଏମିତି କି ଅପକର୍ମ କଲା ଯେ ତୁମେ କହୁଛ, ତୁମେ ତା' ମୁହଁ ଚାହିଁବନି ।

"ହଁ, ହଁ, ତା ମୁହଁ ଚାହିଁବିନି । ସେ ମୋ କୁଳରେ କଳଙ୍କ ।"

' ପୁଅ କିଛି ଖରାପ କାମ କରିନି । ଦେଶସେବାରେ ଯାଇଛି । ଲୋକମାନଙ୍କର ଉପକାର କରିବ । ଗାଁମାନଙ୍କରେ ଉନ୍ନୟନ କାର୍ଯ୍ୟ କରିବ । ଗରିବ ଲୋକଙ୍କର ସେବା କରିବ । ଆମ ଦେଶକୁ ଖରାପ ବାଟରୁ ରକ୍ଷା କରିବ ।"

"ଦେଶଟାକୁ ଟେକି ଧରିବ । ମୁଁ ଜାଣି ସାରିଲିଣି ସେ ଦେଶର କି ଉନ୍ନତିଟାଏ କରି ପକାଇବ ।"

ତୁମେ ଏତେ ରାଗୁଛ କାହିଁକି ଶୁଣେ ? ପୁଅ ତ ଦେଶ ସେବା କରିବ । ଗରିବ ଲୋକଙ୍କ ସେବା କରିବ । ଲୋକେ ପୁଅକୁ କଲ୍ୟାଣ କରିବେ, ତା ଆୟୁଷ ବଢ଼ିବ ।

"ଗରିବିନି କ'ଣ ଖୁସି ହେବ ? ପୁଅ ପଦେ ଆଇ.ଏ.ଏସରେ ଥାଆନ୍ତା, ସେ ଉଠି ଉଠି କେତେ ଉପରକୁ ଯାଇ ସାରନ୍ତାଣି । ସେ ପଦେ କଲେଜ ବିଭାଗରେ ଥାଆନ୍ତା, ଅନ୍ତତଃ ପକ୍ଷେ ଡ଼.ପି.ଆଇ ହୋଇଥାନ୍ତା ତ ? ଏଥିରେ ଯେ ଗଲା, କ'ଣଟାଏ ହେବ ? ଛେନାଟାଏ ?"

"କିଛି ନ ହେଉ । ଲୋକଙ୍କର ତ ଉପକାର କରିବ ।"

"କି ଉପକାର କରିବ ଜାଣ ? ଆମ ଗାଁ ପାଖ ଯେଉଁ ଗୋବିନ୍ଦପୁର ଅଛି, ସେହି ଗୋବିନ୍ଦପୁର ସମେତ ସାତ ଆଠଖଣ୍ଡି ଗାଁ ବିନୋବାଙ୍କୁ ଦାନ କରିଦିଆ ଯାଇଛି । ସେହି ଗ୍ରାମ ଗୁଡ଼ିକର ଅଧିବାସୀମାନେ ଅତି ଗରିବ । ପେଟ ବିକଳରେ ସେହି ଗାଁର ପାରନ୍ତା ଲୋକେ ଟାଟା, କଲିକତା ଯାଇ କୁଲିଗିରି କରି ପେଟ ପୋଷନ୍ତି । ଆମ ପୂର୍ଣ୍ଣ ଦେବ, ସେହି ଗାଁ ଗୁଡ଼ିକ ଦାୟିତ୍ୱ ନେଇ ସେହି ଗାଁ ଗୁଡ଼ାକର ଉନ୍ନୟନ କରିବେ । ବିନୋବାଙ୍କ ଦଳ ତ ସ୍ୱପ୍ନରେ ଭାସୁଛନ୍ତି, ଏ ଜୁଟିଗଲେ ସେଠି ସ୍ୱପ୍ନରେ ପହଁରିଲା ବାଲା । ସେତିକି ଅବାସ୍ତବ ଚିନ୍ତାଧାରା ସବୁ ଏହି ଟିକିଟି ପାଖରେ । ଇମିତି ଅବ୍ୟବସ୍ଥିତ ପିଲା ଦ୍ୱାରା ଶାଗ ସିଝିବ ନାହିଁ କି ଖଡ଼ା ସିଝିବ ନାହିଁ । ସେମିତି ପୁଅ ବଂଶର କୁଳାଙ୍ଗାର ହେବ ନାହିଁ ତ ଆଉ କ'ଣ ହେବ ?"

"ଇମିତି କଥା କାହିଁକି କହୁଛମ ? ଦେଖ ପୁଅ କ'ଣ କରୁଛି ? ସେ ସେମିତି କିଛି ସାଧାରଣ ପିଲା ନୁହେଁ ଏମିତି ଭୁଲ ଭଟକା କରି ପକାଇବ । ସେ ସେଠି ହୁଏତ ଏମିତି କାମ କରି ଦେଖାଇଦେବ, ଯାହା ଫଳରେ ସାରା ଭାରତର ଆଖି ଫିଟିଯିବ ।"

"ଛେନାଟା କରିବ ? ମହାତ୍ମାଗାନ୍ଧି ତ ଏତେ କରି କରି ଶେଷରେ ଜୀବନ ଦେଲେ । ଲୋକଙ୍କ ଅବସ୍ଥା ସୁଧୁରିଲା ନାହିଁ ତାଙ୍କ ଚେଲାମାନେ ତାଙ୍କ ନାଁକୁ ବିକି ଯିଏ ଯେତେ ପାରିଲା ସେତେ ଖାଇଲା । ଦେଶଟାରେ ଭର୍ତ୍ତି କରିଦେଲେ ଅନୀତି, ଭ୍ରଷ୍ଟାଚାର । ସ୍ୱପ୍ନବିଳାସୀ ଏ ବିନୋବାଙ୍କ ଦଳ ଦେଶର କଲ୍ୟାଣ କରି ପକାଇବେ ଏହି ଗ୍ରାମଦାନ ନୀତିଦ୍ୱାରା ? ସେତିକି ଅବାସ୍ତବ କଥା ସବୁ ଏହିମାନଙ୍କ ପାଖରେ ।"

ଆଉ ବିରକ୍ତ ହୁଅ ନାହିଁ । ପୁଅକୁ ଚିଠି ଲେଖ, ସେ ଆସୁ । ଆମେ ତା ପାଖରୁ ଶୁଣିବା ସେ କ'ଣ କରିବ । ତା ଯୋଜନା ଯଦି ଠିକ୍ ହୋଇଥାଏ, ତେବେ ସେ ସେହି ବାଟରେ ଯାଉ । ଆମର ଆପତ୍ତି କରି ଲାଭ କଅଣ ? ଚାକିରି କରିଥିଲେ ଡ଼.ପି.ଆଇ: ହୋଇଥାନ୍ତା କି କମିସନର ହୋଇଥାନ୍ତା । ସେଥିରେ ସେ କଣ ସ୍ୱର୍ଗକୁ ଉଠିଥାନ୍ତା ? ସେ ଯଦି ଚାକିରି ନ କଲା; ନ କରୁ ।

ସେ ତ ଆମକୁ ପୋଷି ନଥାନ୍ତା, ଚାକିରି କରିଥାନ୍ତା ନିଜ ପାଇଁ । ସେ ଯଦି ଚାକିରି କରି ଚାକିରିରେ ଶାନ୍ତି ପାଉନ, ନ କରୁ । ସେ ଯଦି ଏଥିରେ ଶାନ୍ତି

ପାଇବ ଏହାକୁ କରୁ । ଆମର ପାଣ୍ଠି କରିବା କ'ଣ ଦରକାର । ପୁଅ ତ କହୁଛି ଅବାଟକୁ ଚାଲିଯାଉନ, ଆମେ ଚିନ୍ତା କରିବା ?"

"ମୋ ମୁହଁରେ କଳା ବୋଳି ଛାଡ଼ି ଦେଲା ନା ? ମୁଁ ଏ ମୁହଁ କ'ଣ ଆଉ କେଉଁଠି ଦେଖାଇ ପାରିବ ? ପୁଅଟା ଆଇ. ଏ. ଏସ. ଛାଡ଼ିଦେଲା, ଲୋକେ କେତେ କଥା କହିଲେ । ହେଲେ ସେ ଚାକିରି ଛାଡ଼ି ଦେଇ ଯେଉଁ ଚାକିରିଟା କରିଥିଲା, ସେଟା କିଛି ଖରାପ ଚାକିରି ନୁହେଁ । ସେଥିରେ ଉପରକୁ ଉଠିବାର ଯଥେଷ୍ଟ ସମ୍ଭାବନା ଥିଲା । ବଡ଼ ବୈଜ୍ଞାନିକ ହୋଇଥିଲେ ଦେଶର ମୁଖ ଉଜ୍ଜ୍ୱଳ କରିଥାନ୍ତା । ହତଭାଗାଟା ସେ ଚାକିରିକୁ ବି ରଖିଲା ନାହିଁ ? ସେ ଚାକିରିଟାକୁ ଛାଡ଼ିଦେଇ ଭୂଦାନୀ ହେଲା ।

ବର୍ତ୍ତମାନ ଲୋକେ କହିବେ କଅଣ ? କହିବେ "ହେଇ ଦେଖ, ଯାଙ୍କ ପୁଅ ଭୂଦାନରେ ଗଲା । ଚାକିରି ଛାଡ଼ିବା ପୂର୍ବରୁ ଟିକିଏ ଟିକିଏ ପଚାରିଥାନ୍ତା ମୋତେ ? ଏତେ ବଡ଼ ଭୁଲଟାଏ କରିବାକୁ ଦେଇ ନ ଥାନ୍ତି ତାକୁ ।

'ସେ ତୁମକୁ କାହିଁକି ପଚାରି ଥାନ୍ତା କହିଲ ? ସେ କ'ଣ ଛୋଟ ପିଲା ହୋଇଛି ? ସେ ନିଜେ ଯାହା ବିଚାରୁଛି କରୁଛି । ହେଇ ଆଇ. ଏ. ଏସ ଚାକିରି ଛାଡ଼ିଦେଲା, କାହାକୁ କଅଣ ପଚାରିଲା ? ସେ ନିଜେ ଯାହା ଠିକ୍ ଭାବୁଛି କରୁଛି । ତୁମକୁ ସେ ପଚାରିଥିଲେ ତୁମେ କ'ଣ ହଁ ଭରିଥାନ୍ତ ? ତୁମେ ଓଲଟି ଚିଡ଼ିଥାନ୍ତ ସେଥିପାଇଁ ସେ ପଚାରିଲା ନାହିଁ । ଆମର ତାକୁ ବାଧା ଦେବା ଉଚିତ୍ ନୁହେଁ । ସେ ଯାହା ଉଚିତ୍ ଭାବୁଛି କରୁ । ମୋର ବିଶ୍ୱାସ ଆମ ପୁଅ ଯେଉଁଠି ରହିବ ସେଠି ନାଁ କମେଇବ ।

ହେଉ, ତୁମ ପୁଅ ନାଁ କମାଉଥାଉ । ତୁମେ ସେହି ନାଁକୁ ଧୋଇ ପାଦୁକା ପାଅ । ଚାକିରିତ ଛାଡ଼ି ଦେଲା, ନିଜ ପେଟ କେମିତି ପୋଷିବ ଶୁଣେ ? ଫେରି ଆସିବ, ତୁମର ପାଖକୁ ।

ତୁମେ ଆଉ ପାଟି କରନି । ମୁଁ ଆଜି ପୁଅ ପାଖକୁ ଚିଠି ଲେଖୁଛି । ସେ ନିଜେ ଆସି ମୋତେ ବୁଝାଇ ଦେଇଯିବ ସେ ବର୍ତ୍ତମାନ କେଉଁ କାମରେ ଲାଗିଛି । ପୁଅର ବୟସ ଆସି ଏକତିରିଶ ପୂରି ବତିଶ ଚାଲିଲା, କେବେ ତ ପୁଅ ବିଭାଘର ନାଁ ଧରିଲାନି ।"

ମୁଁ କଣ କେବେ ମନା କରିଛି ରାଧାମଣୀ ପୁଅ ବାଘଘର ପାଇଁ ? ଯେତେବେଳେ ଆଇ. ଏ. ଏସ ଚାକିରି କରୁଥିଲା, ମନ୍ତ୍ରୀ ଚାହୁଁଥିଲେ ଜୋଇଁ କରିବା ପାଇଁ, ଡ଼. ପି. ଆଇ ଚାହୁଁଥିଲେ ତାଙ୍କ ଝିଅ ଦେବାପାଇଁ । ଆଇ.ଏ.ଏସ ଯେମିତି ଛାଡ଼ି ଦେଲା, ଆଉ କେହି ପଚାରିଲେ ନାହିଁ । ଯେତେବେଳେ କେମ୍ବ୍ରିଜରୁ ଫେରି ସାଏନ୍‌ସ କ ଲେଜରେ ରହିଲା, ବହୁ ବଡ ବଡ ଲୋକ ଆସିଥିଲେ ତାକୁ ଜୋଇଁ କରିବାକୁ । ବର୍ତ୍ତମାନ ସେତ ଭୂଦାନରେ ମିଶିଲାଣି । ଆଉ କେହି ତା ନାଁ ଭୁଲରେ ବି ଧରିବେନି । ଚାକିରି ବାକିରି ନଥିବା ଲୋକକୁ କିଏ କାହିଁକି ଝିଅ ଦେବ କହିଲ ? କରଣୀଟିଏ ହେଲେ ବି ସେ ନାକ ଟେକିବ ।"

'ଆଉ, ଆଉ, ମୋ ପୁଅକୁ ଆଉ ଏତେ କୁହନି । ମୋ ପୁଅ କେଉଁ ଅଗୁଣରେ କି ଲୋକେ ଝିଅ ଦେବେନି ? ମୋ ପୁଅ ଗୋଟେ ସୁନା ମୁଣ୍ଡା । ତାକୁ ପୁଣି ଝିଅ ନ ଦେବ କିଏ ?

× × ×

"ତୁ ବାପା ଭୁଲକଲୁ ଚାକିରି ଛାଡ଼ି ଦେଇ । ଚାକିରି ଛାଡ଼ି ଦେବା ପୂର୍ବରୁ ଆମକୁ ଥରଟିଏ ପଚାରିଲୁନି ? ତୋ ବାପାଙ୍କ ମନ ଭାରି କଷ୍ଟ । ଆମକୁ ଥରଟିଏ ପଚାରି ଚାକିରି ଛାଡ଼ିଥାନ୍ତୁ, ଆମ ମନରେ କଷ୍ଟ ହୋଇ ନଥାନ୍ତା ।"

ମୁଁ ତୋତେ କି ବାପାଙ୍କୁ ଚାକିରି ଛାଡିବା କଥା କହିଥିଲେ ତୁମେ କ'ଣ ରାଜି ହୋଇଥାନ୍ତ ? ମୁଁ ଜାଣେ ତୁମେ କେହି ରାଜି ହେବନି, ତେଣୁ ପଚାରିଲିନି ।

"ତୁ କାହିଁକି ଚାକିରି ଛାଡ଼ିଲୁ କହିଲୁ ? କ'ଣ ତୋର ଅସୁବିଧା ହେଲା ଚାକିରିରେ । ସେହି ଚାକିରିରେ ଯଦି କିଛି ଅସୁବିଧା ହେଲା, ବାପାଙ୍କୁ କହିଲୁନି, ତୋତେ ଅନ୍ୟ କେଉଁଠାକୁ ବଦଳି କରି ଆଣିଥାନ୍ତେ ।

"ନାଁ, ବୋଉ, ମୋର ସେ ଚାକିରିରେ କେଉଁଠି କିଛି ଅସୁବିଧା ହୋଇନି । ବେଶ୍ ଭଲରେ ଥିଲି । ଗବେଷଣା କରୁଥିଲି ।"

"ତେବେ ଚାକିରି ଛାଡ଼ିଲୁ କାହିଁକି ।

ମୋତେ ଏହି ଶିକ୍ଷା ଓ ଗବେଷଣା କାମରେ ଶାନ୍ତି ଲାଗିଲାନି । ଆମ ଦେଶରେ ଯେଉଁ ଗବେଷଣା ହେଉଛି ବା ମୁଁ ଯେଉଁ ଗବେଷଣା କରୁଛି, ତାହା

କରୁଛୁ ନାହିଁ । ଆମ ଦେଶର ଲୋକଙ୍କୁ ଠକ ସେମାନଙ୍କ ଠାରୁ ବାହାବା ନେବା ଛଡ଼ା ଅନ୍ୟ କରୁଛୁ ନାହିଁ । କ'ଣ ନା ଆମେ ସବୁ ଏ ଦେଶର ବଡ଼ ବଡ଼ ବୈଜ୍ଞା-ନିକ । ଆମ ଦେଶରେ ଯେଉଁ ଗବେଷଣା ହେଉଛି, ସେ ଗବେଷଣା ଚୋପ୍‌କୁଟା ସଙ୍ଗେ ସମାନ ।

ଯେଉଁ ଗବେଷଣାକୁ ବଳାତ, ଆମେରିକା ଦେଶରେ ଲୋକେ ଛାଡ଼ି ଫୋପାଡ଼ି ଦିଅନ୍ତି, ଆମେ ସେ ଗବେଷଣାକୁ ଗୋଟାଇ ଆଣି କାମରେ ଲଗାଉ । ସେଥିରୁ କିଛି ଫଳ ମିଳେନି । ଚୋପ୍‌କୁ କୁଟିଲେ କ'ଣ ଚାଉଳ ବାହାରେ ? ଏହା ଠିକ୍ ସେଇ କଥା । ଆମ ଦେଶର ଗବେଷଣା ଠିକ୍ ସେଇମିତି । ମୁଁ ଭାବିଲି ସାରା ଜୀବନ ଏହି ଚୋପ୍ କୁଟି କୁଟି କି ଲାଭ ? ସେମାନଙ୍କ ଦେଶଭଳି ଗବେଷଣା ତ ହୋଇ ପାରିବନି । ତେଣୁ ନ କଲେ ଭଲ ।

ଆମ ଦେଶକୁ ଚାହିଁ ଯାହା କରି ଯାଇ ପାରିବ, ସେଥିରେ ବାପ ସନ୍ତୁଷ୍ଟ ହେବା କଥା । ସେ ତ ତୋ ହାତରେ ନାହିଁ କି କାହା ହାତରେ ନାହିଁ । ଆମ ଦେଶରେ ଯେତିକି ସୁବିଧା କି ସମ୍ବଳ ଅଛି ତାରି ଭିତରେ କରିବା କଥା । ନିଜ କାମରେ ନିଜେ ଏତେ ଅସନ୍ତୁଷ୍ଟ ହେ ଲି ଆଜିକାଲି ଦୁନିଆରେ ଚଳିହେବନି ବାପ ।

"ନା, ବୋଉ ସେଟା ମୋତେ ଭଲ ଲାଗିଲାନି । ଦେଖିଲି ବିନୋବାଜୀ ଭଲ ରଚନାତ୍ମକ କାମ କରୁଛନ୍ତି । ସେଭଳି କାମ କଲେ ଲୋକଙ୍କର ପ୍ରତ୍ୟକ୍ଷ ଉପକାରରେ ଆସି ପାରିବ । ସେଇ ହେଲା ପ୍ରକୃତରେ ଜନ ସେବା । ତେଣୁ ଭାବିଲି ଚାକିରି ଛାଡ଼ି ଦେଇ ସେଥିରେ ଯିବି ।

"ତୁ ବୋଉ ଗାଁ ଗହଳକୁ ଯାଇନୁ । ସେ ସବୁ ଗାଁର ଲୋକେ କେମିତି ଦୁଃଖ କଷ୍ଟରେ ରହୁଛନ୍ତି, ଜାଣିଲେ ତୁ ଧୈର୍ଯ୍ୟ ଧରି ରହି ପାରିବୁନି । ତୋ ଆଖି ର ଲୁହ ଆସିଯିବ । ଆମ ଦେଶର ଶତକଡ଼ା ଅଶୀ ଭାଗ ଲୋକ ସେଇ ଦୁଃଖ କଷ୍ଟରେ ସଡ଼ି ରହୁଛନ୍ତି ।"

ଆମ ଦେଶ କେତେ ବର୍ଷ ଧରି ସ୍ୱାଧୀନ ହେଲାଣି, କିନ୍ତୁ ଲୋକଙ୍କ ଅବସ୍ଥାରେ ଟିକିଏ ବୋଲି ଉନ୍ନତି ଦେଖା ଯାଉନି । ଦିନକୁ ଦିନ ସେମାନଙ୍କର ଅବସ୍ଥା ଆହୁରି ଖରାପ ଆଡ଼କୁ ଚାଲିଛି । ମୁଁ ଯଦି ମୋ ପାଠଶାଠ ବିଦ୍ୟା ବୁଦ୍ଧି

ଖଟାଇ ସେହି ଦୁଃସ୍ଥ ଲୋକଙ୍କର ଦୁରବସ୍ଥାର କିଛି ଉନ୍ନତି କରି ପାରେ, ତେବେ ତାହା କ'ଣ ମୋ ଗୃହକର୍ମ କରିବା ଅପେକ୍ଷା ଭଲ କାମ ହେବନି ? ସେମାନେ କେମିତି ଦୁଇବେଳା ଖାଇବାକୁ ପାଇବେ, ଖଣ୍ଡେ ପିନ୍ଧିବାକୁ ପାଇବେ, ସେମାନଙ୍କ ପିଲାଏ କେମିତି ପାଠ ପଢ଼ିବେ, ମୁଁ ଯଦି ତହିଁର ବ୍ୟବସ୍ଥା କରିଦିଏ, ଏହାଠାରୁ ବଡ଼ ଜନ ହିତକର କାମ ଆଉ କ'ଣ ହୋଇପାରେ ବୋଉ ?

ମୁଁ ଜାଣେ ତୁମେ କେହି ମୋ ଉପରେ ନିର୍ଭରଶୀଳ ନୁହଁ, ଏମିତି କି ବାପା ଅବସର ନେଲେ ବି ତୁମେ ମୋ ଉପରେ ଅର୍ଥ ପାଇଁ ନିର୍ଭର କରିବ ନାହିଁ । ତେଣୁ ସେ ପରିସ୍ଥିତିରେ ମୁଁ ଗୃହକର୍ମ ଛାଡ଼ିଦେଇ ଜନ ସେବାରେ ଗଲେ ତୁମ୍ଭମାନଙ୍କର ମନ କଷ୍ଟ କରିବାର କିଛି କାରଣ ତ ନାହିଁ ବୋଉ ?

"ଗୋବିନ୍ଦପୁର ଗାଁରେ ତୋର କାମ କ'ଣ ଟିକିଏ ମୋତେ ବୁଝାଇ କହିଲୁ ବାପ ? ମୁଁ ଟିକିଏ ଜାଣେ ତୁ ସେଠି କି ଜନ ସେବାରେ ଲାଗିଛୁ ।"

"ଦେଖ, ବୋଉ, ବିନୋବାଜୀ ଗୋବିନ୍ଦପୁର ଗାଁକୁ ଲାଗି ସାତ ଆଠ ଖଣ୍ଡି ଗାଁ ଗ୍ରାମଦାନ ଭାବରେ ଲୋକଙ୍କ ଠାରୁ ପାଇଛନ୍ତି । ସେ ଗାଁ ଆମ ଗାଁ ଠାରୁ ସାତ ଆଠ ମାଇଲ ଦୂର । ଆମ ଗାଁ ଲୋକେ କି କଷ୍ଟରେ ରହନ୍ତି ତୁ ତ ଜାଣୁ ବୋଉ । ସେମାନଙ୍କ ଠାରୁ ଆହୁରି କଷ୍ଟରେ ଥାଆନ୍ତି ଏ ଗାଁ ସବୁର ଲୋକେ ।

ବିନୋବାଜୀଙ୍କ ଇଚ୍ଛା, ସେହି ସାତ ଆଠ ଖଣ୍ଡି ଗାଁକୁ ନେଇ ଏକ ରଚନାତ୍ମକ କାମ ଆରମ୍ଭ କରିବାକୁ, ଯେମିତି କି ସେ ଗାଁ ଲୋକଙ୍କ ଆର୍ଥିକ ଅବସ୍ଥାରେ ଉନ୍ନତି ଘଟିବ । ସେମାନେ ଦିବେଳା ଖାଇବାକୁ ପାଇବେ, ପିନ୍ଧିବାକୁ ପାଇବେ, ସେମାନଙ୍କ ପିଲାଏ ପାଠ ପଢ଼ିବାକୁ ସୁବିଧା ପାଇବେ ।

"ତୁ କ'ଣ ସେସବୁ ପାରିବୁ ବାପ ? ତୋର ତ ସେ ଦିଗରେ କିଛି ଶିକ୍ଷା ନାହିଁ । ତୁ ତ ବିଲାତ ଆମେରିକାରୁ ଗତାନୁଗତିକ ବିଜ୍ଞାନ ଶିକ୍ଷା ପାଇ ଆସିଛୁ । ଏ ସବୁ ଗାଉଁଲି କଥା କେମିତି କରିପାରିବ, ତୁ ଜାଣିବୁ କେଉଁଠୁ ?"

ହସିଲା ଅମରେଶ । ଗୋଟିଏ କଥା ମନେ ରଖିବୁ ବୋଉ, ଯେଉଁ-ମାନେ ଉପଯୁକ୍ତ ବିଜ୍ଞାନ ଶିକ୍ଷା ପାଇଛନ୍ତି, ସେମାନଙ୍କ ଦ୍ୱାରା କେଉଁ କାମ ଯେ

ନ ହେବ ସେମନ୍ତ ନାହିଁ । ସେମାନଙ୍କୁ ଯେଉଁ କାମରେ ଲଗାଇ ଦେବ, ସେମାନେ ସେ କାମ ସୁରୁରୁ ରୂପେ କରି ପାରିବେ ।"

"ତୁ କ'ଣ ସେହି ଗାଁରେ ରହୁଛୁ ?" ତୋତେ ରାନ୍ଧି ବାଢ଼ି ଦେଉଛି କିଏ ? ତୁ ଖାଉଚୁ କେମିତି ?"

"ହଁ ବୋଉ ମୁଁ ସେଇ ଗାଁରେ ରହୁଛି । ମୋ ରହିବା ପାଇଁ ଘରଟିଏ ତିଆରି ଚାଲିଛି । ମୁଁ ବର୍ତ୍ତମାନ ସେହି ଗାଁର ଜଣେ ସ୍କୁଲ ଶିକ୍ଷକଙ୍କ ଘରେ ରହୁଛି ଓ ଖାଉଛି । ମୋ ରହିବା ଘର ତିଆରି ସରିଗଲେ ମୁଁ ସେଠିକି ଚାଲି-ଯିବି । ଗୋଟିଏ ଲୋକ ରଖିବି ସେ ମୋତେ ରାନ୍ଧି ଦେବ ।

"ତୁ ତ ବଡ଼ କଷ୍ଟରେ ଚଳୁଥିବୁ ବାପ ? ମୁଁ କ'ଣ କହୁଥିଲି ତୋ ବାହାଘରଟା କରିଦେଲେ ବୋହୂକୁ ନେଇ ତୁ ସେଠି ରହନ୍ତୁ । ତୋ ଖିଆପିଆ, ହାନିଲାଭ ବୋହୂ ବୁଝନ୍ତା । ତୁ ଦେଶ ସେବାରେ ଲାଗନ୍ତୁ ।"

ହସିଲା ଅମରେଶ, କହିଲା,

"ମୋ ଭଳି ବେକାର ଲୋକକୁ କିଏ କାହିଁକି ଝିଅ ଦେବ ବୋଉ ? ବାପମାଙ୍କୁ ଝିଅ କ'ଣ ପିତା ଲାଗୁଛି ? ତୁ ସେ କଥା ଚିନ୍ତା କରନା ମୋଟେ । ମୋର ବର୍ତ୍ତମାନ ସେ ଆଡ଼କୁ ଦୃଷ୍ଟି ନାହିଁ । ତୁ ସେ ଗାଁରେ ରହିଲେ ବୋଉ, ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ଦେଖିଲେ ତୁ ନିଜକୁ ବି ଭୁଲି ଯିବୁ ।"

"ମୁଁ ଏଥର ଅସନ୍ତା ଥର ଛୁଟିରେ ଆମ ଗାଁକୁ ଯିବି । ତୋ ବାପା କହୁଛନ୍ତି, ସେଠା ଘର ସବୁ ଭାଙ୍ଗି ରୁଜି ଗଲେଣି । ଥରେ ଦେଖା ଶୁଣା କରି ଆସିବା ମୋ ଇଚ୍ଛା । ତୋ ବାପା ତ ଗାଁ ନାଁ ଧରୁ ନାହାନ୍ତି । ପାଟନାରେ ତ ଘର ତିଆରି ସରିଲାଣି । ମୁଁ ଯଦି ଆମ ଗାଁକୁ ଯାଏ, ଫେରିଲା ବେଳେ ତୁ ରହୁଥିବା ଗାଁ ଦେଇ ଆସିବି । ତୁ କ'ଣ ଆଜି ଚାଲିଯିବୁ ବାପ ?"

ହଁ, ବୋଉ ଆଜି କ'ଣ ? ଏଇ ବର୍ତ୍ତମାନ । ସେଠି ଏତେ କାମ ଯେ ଘଡ଼ିଏ ନିଶ୍ୱାସ ମାରିବାକୁ ବେଳ ନାହିଁ । ମୁଁ ପାଟନା ଯାଇଥିଲି । ସେଠା ବେଙ୍କରେ ମୋର କେତେ ଟଙ୍କା ଥିଲା । ପ୍ରାୟ ପନ୍ଦର ହଜାର ହେବ । ସବୁ ଟଙ୍କା ଉଠାଇ ଆଣିଲି । ମୋର ଏତେ ଟଙ୍କା କ'ଣ ହେବ ? ଟଙ୍କା ତୋ ପାଖରେ

ଥାଉ ବୋଉ । ଗାଁରେ ମୋର ତ କିଛି ଖରଚ ନାହିଁ । ଶହେ ଦୁଇଶହ ଟଙ୍କା ପାଖରେ ରଖିଲେ ଢ଼େର । ଏହି ଟଙ୍କା ତୋ ପାଖରେ ଥାଉ । ତୋର କେତେ-ବେଳେ ଟଙ୍କା ଦରକାର ହେଉଥିବ । ତୁ କେଉଁଠି ବାପାଙ୍କୁ ମାଗୁଥିବୁ ? ମୁଁ ଯେତେବେଳେ ପାଠଶାଳାରେ ଥିଲି ମୋର ପ୍ରତିମାସରେ କିଛି କିଛି ଟଙ୍କା ଖର୍ଚ୍ଚ ନ ହୋଇ ବଳିପଡ଼େ । ମୁଁ ସେଗୁଡ଼ିକୁ ବ୍ୟାଙ୍କରେ ରଖି ଦେଇଥିଲି । ମୁଁ ତ ବର୍ତ୍ତମାନ ସିଂହଭୂମରେ ରହିବି । ଏତେ ଦୂରରେ ଟଙ୍କା ରଖି ଲାଭ କଅଣ ?

"ନା, ବାପ, ଏ ଟଙ୍କା ନେଇଯା । ତୋ ପାଖରେ ରଖିଥିବୁ । ତୁ ଆମ ଠାରୁ ଏତେ ଦୂରରେ ରହିବୁ । କେତେବେଳେ କ'ଣ ଦରକାର ହେବ ।"

"ନା, ବୋଉ ସେ ସବୁ ଯାଗାରେ ଟଙ୍କା ସେମିତି କିଛି ଦରକାର ପଡ଼େନି । ଦରକାର ପଡିଲେ ତୋ ଠାକୁ ଆସି ନେଇଯିବିନି ? ସେ ସବୁ ତ ମୋଫସଲ ଯାଗା, ପାଖ ଆଖରେ କେଉଁଠି ବେଙ୍କ ନାହିଁ, ରଖିବି କେଉଁଠି ?

ଅମରେଶ ମାଙ୍କ ଠାରୁ ବିଦାୟ ନେଇ ଗ୍ଲଲଗଲା । ମା' ତାର ଗ୍ଲଲଗଲା ବାଟକୁ ଅନାଇ ରହିଥାନ୍ତି । ଦୁଇ ଆଖିରୁ ଲୁହ ବହି ଗ୍ଲଲଥାଏ । ମନେ ମନେ ଭାବୁଥାନ୍ତି । ଆହାଃ ପିଲାଟିକୁ କେତେ ଗେଲ ବସରରେ ବଢ଼ାଇ ନ ଥିଲି । ସୁନା ଗ୍ଲଙ୍ଗୁଡ଼ିରେ ବଢ଼ାଇଲି ଭଳି, କେତେ ଯତ୍ନ ନ ନେଇ ଥିଲି ତାର ? ଆଜି ସେ ପିଲା କେଉଁ ମୋଫସଲରେ ପଡ଼ି ରହି ଦେଶ କାମ କରୁଛି । ଦୁଧ କଦଳୀ ଖୁଆଇ ଯାହାକୁ ବଢ଼ାଇଥିଲି, ସେ ଆଜି ସେହି ମୋଫସଲ ଯାଗାରେ କ'ଣ ଖାଇ ଦିନ କାଟୁଥିବ ? ପ୍ରାଇମେରୀ ସ୍କୁଲର ଶିକ୍ଷକ ଘରେ ବର୍ତ୍ତମାନ ଖାଉଛି । ତାଙ୍କ ଘରେ ସେମାନେ କ'ଣ ରାନ୍ଧୁଥିବେ, ପୁଅକୁ କ'ଣ ବା ଖାଇବାକୁ ଦେଉଥିବେ ? ପୁଣି ଘର ତିଆରି ହୋଇଗଲେ ନିଜେ ଲୋକରଖି ରାନ୍ଧି ଖାଇବ । ସେ ସବୁ ଅଞ୍ଚଳରେ କ'ଣ ମିଳୁଥିବ, ପୁଅ କ'ଣ ଖାଉଥିବ ?" ଭାବୁଁ ଭାବୁଁ ରାଧାମଣି ଦେବୀଙ୍କ ଆଖିରୁ ଉଷ୍ଣ ଅଶ୍ରୁ ଟପ୍ ଟପ୍ କରି ଗଡ଼ି ଗ୍ଲଲ ଥାଏ ।

× × ×

"ବୋଉ, ତୁ କେତେ ବେଳୁଁ ଆସି ଏଠି ପହଞ୍ଚିଲୁଣି ? ମୋତେ ଆଗରୁ ଖଣ୍ଡିଏ ଚିଠି ଦେଲୁନି ? ତୋତେ ଆଣିବା ପାଇଁ ବସଷ୍ଟାଣ୍ଡ ଯାଇଥାନ୍ତି । ତୁ ବସ

ଷ୍ଟାଣ୍ଡରୁ କେମିତି ଆସିଲୁ ଏଠାକୁ ? ଚାଲି ଚାଲି ଆସିଥିବୁ ନିଶ୍ଚୟ । ତୁ ଏ ଘର ପାଇଲୁ କେମିତି ? ତୋତେ ଏ ଘରକୁ ଆଣିଲା କିଏ ?

"ମୁଁ ପ୍ରଥମେ ବସରୁ ଓହ୍ଲାଇ ଚାଲି ଚାଲି ଆସିଲି ସେହି ସ୍କୁଲକୁ । ସେଠାରେ ଜଣେ ଶିକ୍ଷକ ପିଲାଙ୍କୁ ପଢ଼ାଉଥିଲେ । ତାଙ୍କୁ ତୋ ନାଁ କହିବାରୁ ସେ ମୋତେ ପ୍ରଥମେ ତାଙ୍କ ଘରକୁ ନେଇଗଲେ । ତାଙ୍କ ବଡ଼ ଝିଅଟି ଚାବି ନେଇ ଏହି ଘରକୁ ଖୋଲି ମୋତେ ଏଠି ବସାଇ ଦେଇଗଲା । ତାଙ୍କ ଘରୁ ଗିଲାସେ ସରବତ କରି ଆଣି ମୋତେ ଦେଇଗଲା । ଭାରି ଭଲ ଝିଅଟେ । ତା ନାଁ କହିଥିଲା କଣଟି ଭୁଲିଯାଉଛି ?

ବାସନ୍ତୀ ।

"ହଁ, ହଁ, ବାସନ୍ତୀ । ଝିଅଟି ଅତି ଚମତ୍କାର । କି ଶାନ୍ତ ଶିଷ୍ଟ, କେତେ ଧୀର ସ୍ଥିର, ମୋତେ ଝିଅଟି ଭାରି ଭଲ ଲାଗିଲା । ଗଲାବେଳେ କହିଦେଇ ଗଲା, "ଅମରେଶ ବାବୁଙ୍କ ଘରକୁ ଫେରିବା ଆଉ ଅଳ୍ପ ସମୟ ବାକି ଅଛି । ଆପଣ ଏଠି ବସିଥାନ୍ତୁ ମାଉସୀ, ମୁଁ ଆସୁଛି ।

ତୁ ଯେତେବେଳେ ଘରୁ ବାହାରକୁ ଯାଉ, ସ୍ୟାଁଙ୍କର ଘରେ କ'ଣ ଚାବି କାଠି ଦେଇଯାଉ ?

'ହଁ, କ'ଣ କରିବ ? ଏ ପର୍ଯ୍ୟନ୍ତ ଚାକର ପିଲାଟେ ମିଳନି । ତାଙ୍କ ଘରର ଚାକର ପିଲା ଆସି ଏ ଘର ଓଳାଇ ସଫା କରି ଦେଇଯାଏ । ସେଥିପାଇଁ ମୁଁ ତାଙ୍କର ଘରେ ଚାବିକାଠି ଦେଇଯାଏ ।

ଚାକର ପିଲା ତ ମିଳନି, ତୁ ଖାଉଛୁ କେମିତି ?

"ଆଜିକାଲି ତ ଝିଅଦିନ । ରାତିରେ ରାନ୍ଧିଦିଏ । ସେଥିରୁ କିଛି ପଖାଳ କରିଦିଏ । ସେହି ପଖାଳ ଦିନରେ ଖାଏଁ । ସେହି ଚାକର ପିଲାଟା ବାସନ ମଜାଠାରୁ ରନ୍ଧା ଘର ସଜା ପର୍ଯ୍ୟନ୍ତ ସବୁ କାମ କରି ଦେଇଯାଇଥାଏ । ମୁଁ ଖାଲି ଦିଆସିଲି ମାରି ଚୁଲି ଲଗାଇ ଦେଇ ଭଜା ଦିଖଣ୍ଡ ଭଜିଦିଏ । ଏହି ଭଜା କରିବାକୁ କେତେ ସମୟ ଲାଗିବ ଯେ !"

"ହେଉ, ବାପ, ତୁ ତ ଗାଧୋଇ ନ‌ଥିବୁ ? ଆସି ଦିନ ଗୋଟାଏ ବାଜିଲଣି, ତୁ ଯା ଗାଧୋଇ ଆସିବୁ । ମୁଁ ଭଜା ଭଜ ଦେଉଛି ଖାଇବୁ ।"

"ତୁ କ'ଣ ଖାଇବୁ ବୋଉ ? ରହି ମୁଁ ହରିବାବୁଙ୍କ ଘରକୁ ଖବର ପଠାଇ ଦେଉଛି, ତାଙ୍କ ଘରେ ରନ୍ଧା ହୋଇଥିବ, ସେ ତୋ ପାଇଁ ଗରମ ଭାତ ପଠାଇ ଦେବେ ।

'ଆରେ ପାଗଳା, ତୁ ପଖାଳ ଖାଇବୁ ? ମୁଁ କ'ଣ ପଖାଳ ଖାଇ ପାରିବିନି ? ତୁ ମୋ ପାଇଁ ଚିନ୍ତା କରନା । ଯା ଗାଧୋଇ ଆ ।

ତୁ ତ ଘରେ ପଖାଳ ଖାଇଲେ ବାପା ବଡ଼ ବିରକ୍ତ ହୁଅନ୍ତି, ତୋ ଦେହ ଖରାପ ହେବ ବୋଲି । ତୁ ଏଠି ପଖାଳ ଖାଇବୁ ବୋଲି କେମିତି କହୁଛୁ ?

"ଆରେ, ଦିନେ ଅଧେ ଖାଇଦେଲେ କ'ଣ ଦେହ ଖରାପ ହୋଇଯାଉଛି ? ତୁ ଗଲୁ ଶୀଘ୍ର ଗାଧୋଇ ଆସିବୁ । ଡେ଼ିର ଡେ଼ିର ହୋଇ ଗଲାଣି ଯେ। ଡେ଼ିରରେ ଗାଧୋଇଲେ ତୋ ଦେହ ଖରାପ ହେବ । ତୁ ଗାଧୋଇବୁ କେଉଁଠି ?

"କାହିଁକି, ସେହି ବଡ଼ ପୋଖରୀରେ । ତୁ ଏଠାକୁ ଆସିଲାବେଳେ ବାଟରେ ଦେଖି ନ ଥିବୁ ସେହି ବଡ଼ ପୋଖରୀଟା । ସେହି ପୋଖରୀ ଜଳ ଭାରି ଥଣ୍ଡା ।"

ସେ ପୋଖରୀ ସାରା ତ ଦଳ, ପାଣି ତ କେଉଁଠି ଦିଶୁନି । ସେହି ଅସନା ପାଣିରେ ଗାଧୋଇଲେ ତୋ ଦେହ ଖରାପ ହେବନି ?

ସାରା ଗାଁ ଲୋକେ ତ ସେଇଠି ଗାଧୋଉଛନ୍ତି, ମୁଁ ଗାଧୋଇଲେ ଦେହ ଖରାପ ହୋଇଯିବ ? କାହିଁ ଏତେ ଦିନ ହେଲାଣି ତ ସେଠି ଗାଧୋଇଲଣି ? ମୋ ଦେହ ତ ଖରାପ ହେବାକୁ ନାହିଁ ?"

ହେଉ, ତୁ ଗଲୁ, ଶୀଘ୍ର ଗାଧୋଇ ଆସିବୁ । ମୁଁ ତେଣେ ଦେଖେ କ'ଣ କରିହେବ ।" ଏତକ କହି ରାଧାମଣି ଦେବୀ ପୁଅକୁ ଗାଧୋଇବା ପାଇଁ ବିଦାୟ କରିଦେଇ ହାଣ୍ଡିଶାଳକୁ ଗଲେ ଦେଖିବେ କ'ଣ ଅଛି । ହାଣ୍ଡିଶାଳଟି ଛୋଟିଆ, ତଳ ମାଟି, ଗୋଟିଏ ପାଖକୁ ଜଣକିଆ ଚୁଲିଟିଏ । ଗୋଟିଏ ପାଖରେ ଶିଳଟିଏ ପଡ଼ିଛି । ଚାକର ପିଲାଟି ଚୁଲି ସଫାକରି ଲିପି ପୋଛି ଚୁଲି ପାଖରେ ଜାଳକାଠ ସବୁ ଥୋଇଦେଇ ଯାଇଛି ।

ରାଧାମଣୀ ଦେବୀ ଚୁଲ୍ଲୀ ଲଗାଇ ପରିବା କାଟି ଭଜା ବସାଇଦେଲେ । ଦେଖିଲେ ବାଡରେ ଲେଉଟିଆ ଶାଗ ହୋଇଛି । ଲଙ୍କା ଗଛଟରେ ନାଲି ନାଲି ଲଙ୍କା ଫଳିଛି । କେତେଏ ଶାଗ ଆଣି ଖରଡ଼ି ଦେଲେ ।

ଖରଡ଼ୁ ଖରଡ଼ୁ ଭାବୁଥାନ୍ତି, "ଆହାଃ, ପିଲାଟି ଧନରୁ କ ଅଳିଅଳରେ ବଢ଼ାଇ ନ ଥିଲେ ତାକୁ ? ସବୁଠାରୁ ଭଲ ଖାଦ୍ୟ ଯେମିତି ସେ ଖାଏ, ସେଇ ଥିଲା ତାଙ୍କର ଝୁଙ୍କ୍ । କିନ୍ତୁ ଆଜ ପିଲାଟା ଖାଉଛି କଅଣ ? ବାଇଗଣ ଭଜା ଲେଉଟିଆ ଶାଗ । କ'ଣ ବା ନାହିଁ ତାଙ୍କର ? ବାପା ତାର ମଟର ଗାଡିଚଢ଼ି ନଅର ଭଳି ପ୍ରାସାଦରେ ରହୁଛନ୍ତି । ଆଜ ପୁଅ ସେ ସବୁକୁ ଛାଡ଼ି ଦେଇ ଅପନ୍ତରା ଗାଁରେ ଆସି ପଡ଼ିଛି ।" ଭାବୁଁ ଭାବୁଁ ରାଧାମଣୀ ଦେବୀଙ୍କ ଆଖି ଲୁହରେ ଜକେଇ ହୋଇ ଆସିଲା । ପୁଅ ଆସିଗଲେ କାଳେ ଦେଖି ପକାଇବ, ସେ ପଣତ କାନରେ ଲୁହ ପୋଛି ପକାଇଲେ ।

ପୁଅ ଗାଧୋଇ ଆସି ପହଞ୍ଚି ଗଲାରୁ ପୁଅକୁ ପିଡାଟିଏ ପକାଇ ଭାତ ଧଗଣ୍ଡି ବାଢ଼ିଦେଲେ । ଗୋଟିଏ ଥାଳିରେ ଆଗେ ଶାଗ ଓ ଭଜା ବସାଇ ଦେଇ ଖଣ୍ଡିଏ ବିଞ୍ଚଣା ନେଇ ବିଞ୍ଚି ବସିଲେ ।

ଅମରେଶ ଖାଇ ସାରିଲା ବେଳକୁ ବାସନ୍ତୀ ଆସି ପହଞ୍ଚିଗଲା । ଅମରେଶ ବାବୁଙ୍କ ମା'ଙ୍କୁ ଅନାଇ କହିଲା , "ମାଉସୀ, ବୋଉ କହିଲା ଆପଣ ଆଜ ଆମ ଘରେ ଖାଇବେ । ଅମରେଶ ବାବୁ ବି ।"

ସେତେବେଳକୁ ଅମରେଶ ଖାଇସାରିଲାଣି । ସେ କହିଲେ, "ନାଁ, ମା ଆଜ ପୁଅତ ଖାଇସାରିଲାଣି । ମୁଁ ବି'ଟା ଏଠି ଖାଇଦେବି । ତୋ ବୋଉକୁ କହିଦେବୁ ଆମ ପାଇଁ ମୋଟେ ବ୍ୟସ୍ତ ହେବନି । ଦେବ ହେବ, ରାତିକୁ ତମ ଘରେ ଖାଇବୁଁ ।

ରାଧାମଣୀ ଦେବୀ ପୁଅ ପାଖରେ ଦିନଟାଏ ରହି ମୁଙ୍ଗେର ଫେରିଯିବେ ବୋଲି ମନସ୍ଥ କରି ଆସିଥିଲେ । ବିପିନବାବୁ ଜାଣି ନାହାନ୍ତି ସେ ପୁଅଠାକୁ ଆସିଛନ୍ତି ବୋଲି । ଗାଁକୁ ଆସିଛନ୍ତି ବୋଲି କହିଦେଇ ଗାଁରେ ଦିନଟାଏ ରହି ଏଠି ଆସି ହାଜର । ପୁଅର ଖାଇବା ପିଇବାରେ ଅବ୍ୟବସ୍ଥା ଦେଖି ତାଙ୍କ ଗୋଡ ଉଠିଲାନି ମୁଙ୍ଗେର ଫେରିଯିବା ପାଇଁ । ପୁଅ ଏଠାରେ ହାତେ ରାନ୍ଧି

ଏଣୁ ତେଣୁ କ'ଣ ହଇଟା ଖାଉଥିବ, ତେଣେ ସେ ମୁଙ୍ଗେର କଲେଜ ପ୍ରିନ୍ସିପାଲଙ୍କ କୋଠିରେ ନଅ ତରକାରି ଛଅ ଭଜା ଖାଉଥିବେ ।

ସେ ଦିନ ରାତିରେ ହରବାବୁଙ୍କ ଘରୁ ଖାଇ ଆସିଲାବେଳକୁ ରାତି ଦଶଟା । ପୂଅଘରେ ଗୋଟିଏ ବୋଲି ଖଟ । ମାଉସୀ କେଉଁଠି ଶୋଇବେ ବୋଲି ବାସନ୍ତୀ ନିଜ ଘରୁ ଗୋଟିଏ ଦଉଡ଼ିଆ ଖଟିଆ ଚାକର ହାତରେ ମଗାଇ ଆଣି ସେଥିରେ ଶେଯ ପକାଇ ମାଉସୀଙ୍କ ପାଇଁ ଭଲ ବିଛଣା କରିଦେଇ ଯାଇଥାଏ । ତାଙ୍କ ପ୍ରତି ଝିଅଟିର ଏତାଦୃଶ ଆଦର ଦେଖି ସେ ତାଟଙ୍ଗ ।

ଖରାଦିନ । ରାତି ହେଲେ ବି ଖୁବ୍ ଗରମ । ବିଦ୍ୟୁତ୍ ପଙ୍ଖା ଏଠି ସ୍ୱପ୍ନ । ରାଧାମଣୀ ଦେବୀ ବରଣ୍ଡା ବିଞ୍ଚଣାରେ ବିଞ୍ଚି ହେଉଁ ହେଉଁ ଭାବୁଥାନ୍ତି । "ସେ କେଉଁ ହୀନ କପାଳୀ ସତେ ? ଏଡ଼େ ବଡ଼ ଯୋଗ୍ୟ ପୁଅ ବିଲାତ ଆମେରିକାରୁ ଫେରି ଏହି ଭଳି କଷ୍ଟମୟ ଜୀବନ ଯାପନକୁ ଆଦରି ନେଇଛି । ଗୋଟିଏ ବୋଲି ପୁଅ । କ'ଣ ନାହିଁ ତାଙ୍କର ? ସେଥିରେ ପୁଅ ଆସି ଏତେ କଷ୍ଟମୟ ଜୀବନ ଯାପନ କରିବ, କେଉଁ ମା ଧୈର୍ଯ୍ୟ ଧରି ରହି ପାରିବ ?

ସେ ଏହିଭଳି ଭାବି ଚାଲିଛନ୍ତି ଅମରେଶ ପଚାରିଲା, "ତୁ କ'ଣ କାଲି ସକାଳେ ଏଠୁ ଚାଲିଯିବୁ ବୋଉ ? ତୋର ଏଠି ଭାରି ଅସୁବିଧା ହେଉଥିବ । ସକାଳ ବସ ଠିକ୍ ଆଠଟାରେ ଏଠି ପହଞ୍ଚି ଯାଉଛି । ଏହି ବସ ଠିକ୍ ସନ୍ଧ୍ୟା ବେଳକୁ ତୋତେ ମୁଙ୍ଗେରରେ ପହଞ୍ଚାଇ ଦେବ । ତୁ ସେହି ବସ୍‌ରେ ଚାଲିଯା । ବାପାଙ୍କର ତେଣେ ଅସୁବିଧା ହେଉଥିବ । ତୋତେ ତ ଏ ସବୁ ଯାଗା ଆଉ ନ ଥିବ ।

"ନା, ବାପ, କାଲି ସକାଳେ ମୁଁ ଏଠୁ ଯାଉନି । ତୋ ବାପାଙ୍କୁ ଚିଠି ଲେଖିଦେବି ମୁଁ ଏଠି ସପ୍ତାହଟାଏ ରହି ତା ପରେ ମୁଙ୍ଗେର ଫେରିବି । ତୁ ଚାକର ପିଲାଟାଏ ଯୋଗାଡ଼ କରି ଆଣିଲେ ତାକୁ ତୋ ପାଇଁ ରନ୍ଧା ବଢ଼ା ଶିଖାଇ ଦେଇ ଯିବି । ମୁଁ ଚାଲିଗଲେ ତୁ ସବୁବେଳେ ପଖାଳ ଖାଇ ତୋ ଦେହକୁ ଖରାପ କରିବୁ ।

"ତୁ କାହିଁକି ଏତେ ବ୍ୟସ୍ତ ହେଉଛୁ ବୋଉ । ଚାକର ପିଲାଟାତ କାଲି ଆସିଯିବ । ସେ ଆସିଲେ ମୋର କିଛି ଅସୁବିଧା ହେବନାହିଁ । ସେ ତ ରାନ୍ଧିବ, ବାଢିବ, ମୋତେ ଖାଇବାକୁ ଦେବ । ଆଉ ଚିନ୍ତା କ'ଣ ?"

"ତୁ କ'ଣ କ'ଣ ଖାଇବୁ, ଏଠି କ'ଣ କ'ଣ ମିଳୁଛି ଚାକର ପିଲାକୁ ରନ୍ଧାବଢ଼ା କେମନ୍ତ ଆସେ ଭଲ ଭାବରେ ନ ଜାଣିଲା ପର୍ଯ୍ୟନ୍ତ ମୁଁ ଏ ଯାଗା ଛାଡ଼ି ଯାଉନ । ତୋ ମନ ଲାଗି ରନ୍ଧା ସେ କେମିତି ରାନ୍ଧିବ, ତାକୁ ଭଲ ଭାବରେ ଶିଖାଇ ସାରିଲେ ମୁଁ ମୁଙ୍ଗେର ଯିବି । ମୁଁ ଜାଣେ ତୋ ବାପାଙ୍କର କିଛି ଅସୁ-ବିଧା ହେଉ ନ ଥିବ ସେଠି । ଘରେ ତ ଚାକର ପୂଝାରୀ ଅଛନ୍ତି, ଆଉ ତାଙ୍କର ଚିନ୍ତା କ'ଣ ? ତୋତେ ଏଠି ଏକାଟିଆ ଛାଡ଼ିଦେଇ ଚାଲିଯିବାକୁ ମୋ ମନ ବଳୁନି ବାପ ।'

ରାଧାମଣି ଦେବୀ ମୂଳରୁ ସାତ ଦିନ କହି ପୁଅ ପାଖରେ ରହିଲେ ପୂରା ମାସଟିଏ । ପୁଅ ଏଠି କି କି କାମ କରୁଛି, ସେଥି ସହିତ ପ୍ରତ୍ୟକ୍ଷ ଭାବ ପରିଚିତ ହେବା ତାଙ୍କର ଉଦ୍ଦେଶ୍ୟ ।

ମା ଆସିଲା ଦିନଠାରୁ ଅମରେଶର ପଖାଳ ଖିଆ ବନ୍ଦ । ସକାଳେ ଏବେ ଏଣିକି ରୀତିମତ ଜଳଖିଆ ତିଆରି ହେଲାଣି । ସକାଳୁ ଉଠି ଏଣୁତେଣୁ ଦି'ଟା ଖାଇଦେଇ ବାଲକୁ ପଳାଇବା ଆଉ ହେଉନି ।

ଚାକର ପିଲାଟି ଆସିଲା ପରେ ରାଧାମଣି ଦେବୀ ତାକୁ ଭାତ ରାନ୍ଧିବା, ଜଳଖିଆ କରିବା ସବୁ ଶିଖାଇ ଦେଲେଣି । ସେ କେମିତି ରନ୍ଧା ରନ୍ଧି କରୁଛି, ତାକୁ ତଦାରଖ କରିବା ତାଙ୍କର ବଡ଼ କାମ ।

ସକାଳ ହେଲା କ୍ଷଣି ଗାଁର ମୁଖିଆ-ମୁଖିଆ ଲୋକେ ଅମରେଶ ଠାରେ ପହଞ୍ଚି ଯାଆନ୍ତି । ସେମାନଙ୍କୁ ଧରି ଅମରେଶ ବିଭିନ୍ନ ଗାଁକୁ ଯାଏ । ମଫା ଜୁପା କେତେ ଚାଲେ । ସକାଳୁ ବାହାରିଗଲେ ଅମରେଶ ଫେରୁ ଫେରୁ ଦିନ ଗୋଟାଏ ।

ପିଲାଟାତ ରନ୍ଧା ବଢ଼ା କରୁଛି, ରାଧାମଣି ଦେବୀ ହରିବାବୁଙ୍କ ଘରକୁ ଚାଲିଯାନ୍ତି । ତାଙ୍କ ଝିଅ ବାସନ୍ତୀ ରାଧାମଣି ଦେବୀଙ୍କୁ ଭାରି ଭଲ ଲାଗେ । ସେ ତାକୁ ନିଜ ଝିଅ ଭଳି ସ୍ନେହ କରନ୍ତି । ହରିବାବୁଙ୍କ ସ୍ତ୍ରୀ ଅତି ଚମତ୍କାର ଲୋକ । ସେ ତ ଘରର କାମ ଧନ୍ଦାରେ ଲାଗିଥାନ୍ତି । ବାସନ୍ତୀ ସହିତ ଗପ କରି ରାଧାମଣି ଦେବୀ ଘରକୁ ଫେରନ୍ତି । ବେଳେ ବେଳେ ବାସନ୍ତୀକୁ ନିଜ ସଙ୍ଗରେ ଡାକି ଆଣନ୍ତି ।

ସକାଳ ହେଲେ ହରବାବୁ ସ୍କୁଲକୁ ଚାଲିଯାଆନ୍ତି । ସାତ ଆଠ ଖଣ୍ଡ ଗାଁରେ ଗୋଟିଏ ବୋଲି ସ୍କୁଲ । ପିଲାଏ ସକାଳୁ ଦୂର ଗାଁରୁ ଚାଲି ଚାଲି ଆସନ୍ତି ।

ଏଣେ ଝିଅଟି ମେଟ୍ରିକ୍ ପାସ ପରେ ଟ୍ରେନିଂ ପାସ କରି ଘରେ ଅଛି । ଏହି ସ୍କୁଲର ପିଲା ସଂଖ୍ୟା ବଢ଼ିଗଲେ ଏଇଠି ମାଷ୍ଟ୍ରାଣୀ ହେବ ବୋଲି ତାର ଇଚ୍ଛା । ତା' ବାପା ତାକୁ ଦୂରସ୍ଥାନକୁ ଚାକରି ପାଇଁ ଛାଡ଼ିବାକୁ ନାରାଜ । ଝିଅଟେ କ'ଣ ଚାକିରି କରିବ ? ବୟସ ହେଲା । କେମିତି ତାକୁ ହାତକୁ ଦହାତ କରିଦେଲେ ତାଙ୍କ ଦାୟିତ୍ୱ ଗଲା ।

ରାଧାମଣି ଦେବୀ ଓ ବାସନ୍ତୀ ମଧ୍ୟରେ ଗାଁ ନେଇ ନାନା କଥା ପଡ଼େ । ସେ ବାସନ୍ତୀ ପାଖରୁ ଶୁଣିବାକୁ ପାଆନ୍ତି, ଗ୍ରାମଦାନ ମୁଭମେଣ୍ଟର ତାତ୍ପର୍ଯ୍ୟ ? ପୁଅ ଏଠି ରହି କ'ଣ କ'ଣ କାମ କରୁଛି, ସେ ସମ୍ପର୍କରେ ସେ ଠିକ ନଥି ସବୁ ବୁଝନ୍ତି ବାସନ୍ତୀଠାରୁ ।

ତାଙ୍କ ସ୍କୁଲଟି ଅପରପ୍ରାଇମେରୀ ହେଲେ ମଧ୍ୟ କେମିତି ମୂଳରୁ ମାତ୍ର ପଚାଶ ଜଣ ପିଲାଥିଲେ, ବର୍ତ୍ତମାନ ଏହାର ପିଲା ସଂଖ୍ୟା କେମିତି ଦୁଇ ଶହକୁ ଟପିଲାଣି ଓ ଏହି ଅଞ୍ଚଳରେ ଆଉ ଗୋଟିଏ ସ୍କୁଲ ତିଆରିରେ କେମିତି ଯୋଜନା ଚାଲିଛି ବାସନ୍ତୀ ବୁଝାଏ ରାଧାମଣି ଦେବୀଙ୍କୁ ।

ଆସନ୍ତା କାଲି ଏହି ଅଞ୍ଚଳର ସବୁଠାରୁ ଦୂର ଗାଁ କ୍ଷେତରାଜପୁରରେ କେମିତି ଆଉ ଗୋଟିଏ ସ୍କୁଲ ବସୁଛି ଓ ଏହାର ଭିତ୍ତି ପ୍ରସ୍ତର ସ୍ଥାପନ କରିବେ ସ୍କୁଲ ବିଭାଗର ଇନସପେକ୍ଟର ସେ ସମ୍ପର୍କରେ ଓ ବିଶଦ ଆଲୋଚନା ପାଇଁ କେମିତି ଅମରେଶ ବାବୁ ଗାଁର ମୁଖିଆ ମୁଖିଆ ଲୋକଙ୍କୁ ଧରି ସେଠାକୁ ଯାଇଛନ୍ତି ସବୁ ବୁଝାଏ ବାସନ୍ତୀ ରାଧାମଣି ଦେବୀଙ୍କୁ ।

ଭିତ୍ତି ପ୍ରସ୍ତର ସ୍ଥାପନ ସଙ୍ଗେ ସଙ୍ଗେ ସ୍କୁଲ ଘର ତିଆରି ଚାଲିବ ଓ ଦୁଇ ତିନି ମାସ ମଧ୍ୟରେ ଏହା ତିଆରି ହୋଇଯିବ । କେତେ ସୁବିଧା ହେବ ସେ ଗାଁର ପିଲାମାନଙ୍କର । ବାସନ୍ତୀ ଠାରୁ ସବୁ ଠିକ୍ କରି ବୁଝନ୍ତି ରାଧାମଣି ଦେବୀ ।

"ଏହି ସବୁ ସ୍କୁଲ ଘର କ'ଣ ସରକାର କରିବେ ?" ବୁଝି ବୁଝି ରାଧାମଣି ଦେବୀ ବାସନ୍ତୀକୁ ପଚାରିଲେ ।

''ହଁ, ମାଉସୀ, ସରକାର ଓ ଗ୍ରାମ ଲୋକେ ଉଭୟଙ୍କ ସହଯୋଗରେ ଏ ସ୍କୁଲ ଘର ତିଆରି ହେବ । ସରକାର ଘର ତିଆରିର ଯାବତୀୟ ସରଞ୍ଜାମ ଦେବେ । ଗ୍ରାମବାସୀମାନେ ସେମାନଙ୍କ ପରିଶ୍ରମ ଦାନ କରିବେ । ଅମରେଶବାବୁଙ୍କ ତତ୍ତ୍ୱାବଧାନରେ ଏ ଘର ତିଆରି ଚାଲିବ ।

''ଗାଁର ଲୋକେ କ'ଣ ମଜୁରି ନ ନେଇ ଏହି ଘର ତିଆରିରେ ଖଟିବେ ?

''ହଁ ମାଉସୀ ତା କେମିତି ହେବ ? ସେମାନେ ଯଦି ମଜୁରି ନ ନେବେ ସେମାନେ ଖାଇବେ କ'ଣ ?

''ତେବେ ସେମାନଙ୍କୁ ମଜୁରି ଦେବ କିଏ ?

''କାହିଁକି, ଆମ ଗ୍ରାମଦାନ ସଂସ୍ଥା । ଏହି ସଂସ୍ଥା ବର୍ତ୍ତମାନ ପାଇଁ ଟଙ୍କା ଆକାରରେ ମଜୁରି ନ ଦେଇ ଧାନ ଆକାରରେ ମଜୁରି ଦେବ ।

''ଧାନ ଆସିବ କେଉଁଠୁ ?'' ରାଧାମଣୀ ଦେଈ ପଚାରିଲେ ।

ଆମ ସାତ ଆଠ ଗୋଟି ଗାଁରେ ଯେତିକ ଜମି ଅଛି, ସେସବୁର ମାଲିକ ଆମ ଗ୍ରାମଦାନ ସଂସ୍ଥା, ମାନେ ଆମେ ସମସ୍ତେ । କାହାର ନିଜର ବୋଲି ଜମି କେହି ଦାବୀ କରି ପାରିବ ନାହିଁ । ଏହି ଜମିରୁ ଯେତେ ଧାନ ଆମଦାନୀ ହୁଏ, ସେତିକ ଧାନର ମାଲିକ ଏହି ସାତ ଆଠ ଖଣ୍ଡି ଗ୍ରାମର ଲୋକ ।

ଏହି ଗାଁ ଗୁଡ଼ିକର ପ୍ରତ୍ୟେକ ଲୋକକୁ ବର୍ଷକ ପାଇଁ ହିସାବ କରାଯାଇ ଧାନ ଦେଇ ଦିଆଯାଏ । ବାକି ଧାନ ଯାହା ବଳିପଡ଼େ, ସେହିଧାନ ମଜୁରି ଆକାରରେ ଗାଁର ଶ୍ରମିକମାନଙ୍କୁ ଦିଆଯାଏ ।

ଯେଉଁମାନେ ଜମି ଚଷୁଛନ୍ତି, ଯେଉଁମାନେ ସ୍କୁଲଘର ତୋଳୁଛନ୍ତି, ଯେଉଁମାନେ ଗାଁର ରାସ୍ତା ତିଆରିରେ ଲାଗି ପଡ଼ିଛନ୍ତି, ସେମାନେ ସମସ୍ତେ ଧାନ ଆକାରରେ ମଜୁରି ପାଆନ୍ତି ।

''ଏହିସବୁ କାମ ପାଇଁ କ'ଣ ଯଥେଷ୍ଟ ଧାନ ବଳେ ? ଧାନ ଯଦି ନିଅଣ୍ଟ ପଡ଼ିବ, ତେବେ କ'ଣ କରିବ ମା ?''

ବର୍ଷ ଆରମ୍ଭରୁ ହିସାବ କିତାବ ହୋଇ ଠିକ୍ କରା ହୋଇଥିବ । ଏବର୍ଷ ଏତିକ ଧାନ ହେଲା, ଏତିକ ଗାଁ ଲୋକଙ୍କୁ ବର୍ଷସାରା ଚଳିବା ପାଇଁ ଦିଆଯିବ । ଏତିକ ଗାଁର ଉନ୍ନୟନ ପାଇଁ ଖର୍ଚ୍ଚ ହେବ । ଧାନର ପରିମାଣ ଦେଖି ବର୍ଷ ଆରମ୍ଭରୁ ଠିକ୍ କରାହେବ, କେଉଁ କେଉଁ ଉନ୍ନୟନ କାର୍ଯ୍ୟ ଏବର୍ଷ ହାତକୁ ନିଆଯିବ । ତେଣୁ ନଅଣ୍ଟ ପଡ଼ିବା ପ୍ରଶ୍ନ ନାହିଁ ମାଉସୀ ।

"ଏହି ଯେଉଁ ଘରଟିରେ ଅମରେଶ ରହୁଛନ୍ତି ଝିଅ, ସେ ଘରଟି କ'ଣ ତା ରହିବା ପାଇଁ ତିଆରି ହୋଇଅଛି ?"

"ନାଁ ମାଉସୀ । ଆଗରୁ ଏହା ଥିଲା ଆମ ଗାଁର ମହିଳା ସମିତିର ଅଫିସ ଘର । ସରକାରଙ୍କ ତତ୍ତ୍ୱାବଧାନ ଅଭାବରୁ ଏହି ଘରଟି ଭାଙ୍ଗି-ଗଲା । ଅମରେଶ ବାବୁ ଆସି ଗ୍ରାମବାସୀଙ୍କ ଦ୍ୱାରା ଏହି ଘରଟି ପୁଣି ମରାମତି କରି ସେହି ଘରେ ରହିଲେ । ସେହି ଘରଟି ମଧ୍ୟ ଆମ ଗ୍ରାମଦାନ ସଂସ୍ଥାର ଅଫିସ ଗୃହ ହେଲା ।

ଏହି କେବଳ ଧାନ ଆୟ ଉପରେ ନିର୍ଭର କରି ଏହି ସାତ ଆଠଖଣ୍ଡି ଗାଁର ଉନ୍ନୟନ କ'ଣ ସମ୍ଭବପର ଝିଅ ?

"ନାଁ ମାଉସୀ । ଆମ ଗାଁର ଆହୁରି ଆୟର ପନ୍ଥା ଅଛି । ଆମ ଗାଁ ମଝିରେ ଗୋଟିଏ ଶ୍ରୋତ ନଈ ଧାଇଛି । ସେହି ନଈରେ ସବୁ ଦିନେ ପାଣିଥାଏ । ବର୍ଷା ଦିନେ ବଢ଼ିହୁଏ । ସେ ବଢ଼ି ଯେମିତି କଛୁ ବଡ଼ ବଢ଼ି ନୁହେଁ । ଆମର କିଛି କ୍ଷତି କରେନା, ବରଂ ଜମିରେ ପଟୁ ପକାଇ ଚାଷରେ ଉପକାର କରେ । ଏହି ନଈଟି ଆମର ଚାରି ପାଞ୍ଚଗୋଟି ଗାଁ ଭିତରେ ଦେଇ ଯାଇଛି ।

ଏହି ନଈର ଦୁଇପଟେ, ଯେଉଁ ଜମି ଅଛି, ସେଥିରେ ତୈଳବୀଜ, ତମାଖୁ, ଝୋଟ, ଆଖୁ, ପନିପରିବା ଆଦି ଅର୍ଥକାରୀ ଫସଲ ଚାଷ କରାଯାଏ । ସେହି ଚାଷରୁ ଆମଦାନୀ ହେଉଥିବା ଫସଲ ଗୁଡ଼ିକ ବିକ୍ରୟ ହୋଇ ଆମ ସଂସ୍ଥାକୁ ଯଥେଷ୍ଟ ଟଙ୍କା ଆସେ ।

ପ୍ରଥମ ପ୍ରଥମେ ଆମର ଯାହା ଆମଦାନୀ ହେଉଥିଲା, ସଙ୍ଗେ ସଙ୍ଗେ ବିକ୍ରୀ ହୋଇଯାଉଥିଲା । ଏବେ ଏଣିକି ଅମରେଶ ବାବୁ ସଙ୍ଗେ ସଙ୍ଗେ ବିକ୍ରୀ

ନଜର ଗୋଦାମ ଘରେ ସାଇତି ରଖୁଛନ୍ତି । ଆଖୁକୁ ପେଡି ଗୁଡ଼ କରି ରଖି ଦିଆଯାଉଛି । ଯେତେବେଳେ ବଜାରରେ ଏଗୁଡିକର ଦର ସର୍ବାଧିକ ସେତେବେଳେ ଛଡ଼ାଯାଇ ଆମ ଗାଁ ପାଇଁ ଅଧିକ ଅର୍ଥ ଉପାର୍ଜନ କରାଯାଉଛି ।

ଅମରେଶ ବାବୁଙ୍କ ଯୋଜନାନୁସାରେ ଆମ ଗାଁର ଲୋକମାନେ ଗ୍ରାମଦାନ କରି ସବୁ କରିବାକୁ ଚାହାନ୍ତି । ସରକାରଙ୍କ ସାହାଯ୍ୟ ଉପରେ ସେମାନେ ମୋଟେ ଭରସା ରଖି ନଥାନ୍ତି । ଅମରେଶବାବୁ ସରକାରୀ ସାହାଯ୍ୟକୁ ବିଶେଷ ପସନ୍ଦ କରନ୍ତିନ । ସେ କହନ୍ତି, ଆମେ ବିନା ସରକାରୀ ସାହାଯ୍ୟରେ ସବୁ କରିପାରିବା ଖାଲି ଲୋକେ ଆଗ୍ରହର ସହିତ ଏକଜୁଟ ହୋଇ ତାଙ୍କ ପଛରେ ଠିଆ ହେଲେ ହୁଏ ।

"ଏତେ ଦାୟିତ୍ୱ ମୁଣ୍ଡକୁ ନେଇ ସେ ସବୁ କ'ଣ ସମାଧାନ କରି ପାରୁଛି ଅମରେଶ ?"

ହସିଲା ବାସନ୍ତୀ, "ଆପଣ ଅମରେଶ ବାବୁଙ୍କୁ ଏମିତି କ'ଣ କହୁଛନ୍ତି ? ଏହି ଗାଁଗୁଡ଼ିକର ସବୁ ଯୋଜନା ତାଙ୍କର । ଆମ ଗାଁର ମୁଖିଆ ମୁଖିଆ ଲୋକ-ମାନେ ତାଙ୍କର ଆଦେଶକୁ ଅନାଇ ବସିଥାନ୍ତି । ଯେଉଁମାନେ ଟିକିଏ ଶିକ୍ଷିତ ଓ ଦାୟିତ୍ୱ ସମ୍ପନ୍ନ, ସେମାନଙ୍କୁ ଗୋଟିଏ ଗୋଟିଏ କାମର ପୁରା ଦାୟିତ୍ୱ ଦିଆଯାଇଛି । ସେମାନେ ପ୍ରତି ସପ୍ତାହରେ ଥରେ ଲେଖାଏଁ ଅମରେଶବାବୁଙ୍କୁ ତାଙ୍କ ଦାୟିତ୍ୱର ହାନିଲାଭ ବୁଝାନ୍ତି । କେଉଁଠି କିଛି ଅସୁବିଧା ହେଲେ ତାଙ୍କ ପରାମର୍ଶ ନିଅନ୍ତି ।

ଆମ ଗାଁର ଆଖୁଚାଷ ପାଇଁ, ଝୋଟ ଚାଷ ପାଇଁ, ତୈଳବୀଜ ଚାଷ ପାଇଁ ଜଣେ ଜଣେ ଲୋକକୁ ଦାୟିତ୍ୱ ଦିଆଯାଇଛି । ଆମ ଗାଁର ପ୍ରତ୍ୟେକ ଲୋକ ଗାଁ ପାଇଁ କିଛି ନା କିଛି କାମ କରିବାକୁ ବାଧ୍ୟ । କାମ ନକଲେ କେହି ଖାଇବାକୁ ପାଇବେନି । ଯେଉଁମାନେ ଅକର୍ମଣ୍ୟ ବା ଅସମର୍ଥ ସେମାନଙ୍କୁ ବସାଇ ଯାହା ଖାଇବାକୁ ଦିଆଯାଉଛି । ଏବେ ଅମରେଶବାବୁ ଏକ ଯୋଜନା କରିଛନ୍ତି ଯେଉଁଥିରେ ସେମାନେ ମଧ୍ୟ ଖଟି ଦି ପଇସା ଅର୍ଜନ କରି ପାରିବେ ।

'ଆପଣ ଜାଣନ୍ତି ମାଉସୀ, ଅମରେଶବାବୁ ଏହି ଗାଁକୁ ଆସିବା ପୂର୍ବରୁ ଏହି ଗାଁର ଅଧିକାଂଶ ଲୋକ ପ୍ରତିଦିନ ଦୁଇବେଳା ଖାଇବାକୁ ପାଉ ନ ଥିଲେ । କାହା କାହା ଘରେ ଦୁଇ ତିନିଦିନରେ ଥରେ ଚୁଲି ଜଳୁ ନ ଥିଲା । ବର୍ତ୍ତମାନ ଆମ ଗାଁରେ ପ୍ରତ୍ୟେକ ଲୋକ ଦୁଇବେଳା ଅନ୍ତତଃ ଖାଇବାକୁ ପାଉଛନ୍ତି ।

ପଇସା ଅଭାବରୁ ବହୁ ଲୋକ ଅଧାଲଙ୍ଗଳା ରହୁଥିଲେ । ପିଲାମାନେ ଲୁଗାଖଣ୍ଡେ ପିନ୍ଧିବାକୁ ପାଉ ନ ଥିଲେ । ଆଜ ପ୍ରତ୍ୟେକ ଲୋକ କ ସ୍ତ୍ରୀ କ ପୁରୁଷ ଲଜ୍ଜା ନିବାରଣ କଲାଭଳି ପିନ୍ଧିବାକୁ ପାଉଛନ୍ତି । ପିଲାଗୁଡ଼ାକ ଲଙ୍ଗଳା ନ ରହି ପେଣ୍ଟ ଖଣ୍ଡିଏ ପିନ୍ଧିବାକୁ ପାଉଛନ୍ତି ।

ସ୍କୁଲକୁ ଆଗରୁ ପିଲା ଗୁଡ଼ାକ ଯାଉ ନ ଥିଲେ । ଆଜକାଲି ସ୍କୁଲକୁ ସବୁ ପିଲା ଯିବାକୁ ବାଧ୍ୟ । ପିଲାମାନଙ୍କ ପଢ଼ା ପାଇଁ ବହି, ସିଲଟ, ଖାତା, ପେନ୍‌ସିଲ, କାଗଜ, କଲମ ଆଦି ଆମ ଗ୍ରାମଦାନ ସଂସ୍ଥା ଯୋଗାଉଛି । ବାପା ମାଙ୍କୁ କିଛି କିଣିବାକୁ ପଡୁନାହିଁ ।

ସାତ ଆଠ ଖଣ୍ଡି ଗାଁରେ ଆଗରୁ ଏଇଗୋଟିଏ ସ୍କୁଲରେ ଚଳି ଯାଉଥିଲା । ଅମରେଶ ବାବୁଙ୍କ ଆସିବା ଦିନରୁ ସ୍କୁଲରେ ପିଲା ସଂଖ୍ୟା ଏତେ ବଢ଼ି ଗଲାଣି ଯେ ଗୋଟିଏ ସ୍କୁଲ ଆଉ ହେଉନି । ଆଉ ଗୋଟିଏ ସ୍କୁଲ ଆର ଗାଁରେ ତିଆରି ହେଉଛି । ଅମରେଶବାବୁଙ୍କ ଯୋଜନା ଅନୁସାରେ ଧୀରେ ଧୀରେ ପ୍ରତ୍ୟେକ ଗାଁରେ ଗୋଟିଏ ଗୋଟିଏ ଅପର ପ୍ରାଇମେରୀ ସ୍କୁଲ ରହିବ । ଆମ ଏଇ ସ୍କୁଲଟି ମାଇନର ସ୍କୁଲ ହେବ ।"

"ପୁଅ ଏତେ ଖଟୁଛି, ଖାଉଛି କଅଣ ? ଖାଲି ପଖାଳ ? ଏଥିରେ ତା ଦେହ ରହିବଟି ?"

' ଅମରେଶ ବାବୁ ଯେତେବେଳେ ଆମ ଗାଁକୁ ଆସିଲେ, ସେ ପ୍ରଥମେ ପ୍ରଥମେ ଆମଘରେ ରହୁଥିଲେ । ଯେମିତି ତାଙ୍କ ପାଇଁ ଘର ତିଆରି ହୋଇଗଲା ସେ ସଙ୍ଗେ ସଙ୍ଗେ ଆମ ଘରୁ ଯାଇ ସେଠି ରହିଲେ । ସେଠି ସିନା ରହୁଥିଲେ, କିନ୍ତୁ ଆମ ଘରେ ଖାଉଥିଲେ । କିଛି ଦିନ ପରେ କହିଲେ ସେ ନିଜେ ନିଜ ଘରେ ରାନ୍ଧି ଖାଇବେ ।" ଗୃହର ପିଲାଟିଏ ତ ମିଳି ନ ଥାଏ । ରାନ୍ଧିବେ ବା କେମିତି ? ନିଜକୁ ପୁଣି ରନ୍ଧା ଜଣାନାହିଁ ।"

"ସେଇଠୁଁ କ'ଣ ହେଲା ଝିଅ ?

"ପ୍ରଥମେ ପ୍ରଥମେ ବୋଉ ମୋତେ କହିଲା, ତାଙ୍କ ପାଇଁ ଏଠି ଆସି ରାନ୍ଧି ଦେବାପାଇଁ । ମୁଁ କିଛି ଦିନ ଏଠି ଆସି ଦୁଇବେଳା ରାନ୍ଧି ଦେଲି । ସେ ମୋ ପାଖରୁ ରନ୍ଧା କେମିତି ହୁଏ ଶିଖିଗଲେ ।

ତା'ପରେ ଦିନେ କହିଲେ 'ଦେଖ ବାସନ୍ତୀ, ତୁମେ ଢ଼େର ଦିନ ହେଲା ମୋ ପାଇଁ କଷ୍ଟ କଲଣି । ଆଉ କଷ୍ଟ କରିବା ଦରକାର ନାହିଁ । ମୁଁ ଏବେ ଏଣିକି ନିଜେ ନିଜେ ରାନ୍ଧି ପାରିବ । ତୁମେ ଯେତେ ହେଲେ ଅବିବାହିତା ଝିଅ । ତୁମେ ଯଦି ମୋ ପାଇଁ ଏଠି ଆସି ପ୍ରତିଦିନ ରାନ୍ଧ, ତେବେ ଲୋକମାନେ କାଲେ କଅଣ ଭାବିବେ, ତୁମେ ଆଉ ଆସିବ ନାହିଁ । ଯେ ହେତୁ ଏ ଘରେ ମୁଁ ଏକୁଟିଆ ରହୁଛି, ତୁମେ ଏ ଘରେ ଏକୁଟିଆ ଆସି ରନ୍ଧା ରନ୍ଧି କରିବା ଲୋକଙ୍କ ଆଖିରେ ଭଲ ଦିଶି ନ ପାରେ ।

ମୁଁ ଏବେ ଏଣିକି ରନ୍ଧା ବଢ଼ା କାମ ନିଜେ କରି ନେଇ ପାରିବ । ତୁମେ ଆଉ ଆସିବା ଦରକାର ନାହିଁ ।"

"ମୁଁ ତାଙ୍କ କଥା ମାନି ଆଉ ଆସିଲିନି । ସେ ନିଜେ ରନ୍ଧାବଢ଼ା କଲେ । ସେ କ'ଣ ରାନ୍ଧନ୍ତି, ଭଗବାନଙ୍କୁ ଜଣା । ଆମ ଗୁରୁକର ପିଲା କହେ, ସେ ରାତିରେ ରାନ୍ଧି ଦିଅନ୍ତି, ଦିନରେ ପଖାଳ ଖାଆନ୍ତି । କେଉଁଦିନ ତରକାରି ଲୁଣିଆ ତ କେଉଁଦିନ ଅଲଣା । ତାଙ୍କର ସେ ଆଡ଼କୁ ମୋଟେ ନଜର ନ ଥାଏ ମାଉସୀ ।"

× × ×

ସେ ଦିନ ଅମରେଶ ଘରର ଦୁଆର ମୁହଁ ପିଣ୍ଡାରେ ସଭା ବସିଥାଏ । ସାଧାରଣ ସଭା ନୁହେଁ । କାର୍ଯ୍ୟକାରୀ କମିଟି ସଭା । ସଭ୍ୟ ସଂଖ୍ୟା ଅ.ଠ ଦଶ ଜଣରୁ ଅଧିକ ନୁହେଁ । ପ୍ରତ୍ୟେକ ଗାଁରୁ ଜଣେ ଜଣେ ନିର୍ବାଚିତ ପ୍ରତିନିଧି ଏହି ସଭାରେ ଉପସ୍ଥିତ ଥାନ୍ତି । ତା ଛଡ଼ା ଦେଖଣାହାରୀ କେତେକ ମଧ୍ୟ ଥାଆନ୍ତି ।

ଏହି କମିଟିର ଜଣେ ଜଣେ ସଭ୍ୟ ଗୋଟିଏ କିମ୍ବା ଦୁଇଟି ଉନ୍ନୟନ ମୂଳକ କାମ ସହିତ ସଂପୃକ୍ତ । କିଏ ଯଦି ଗାଁର ଧାନଗୃହ ଦାୟିତ୍ୱରେ ରହିଲା, ଅନ୍ୟ ଜଣେ ରହିଲା ଝୋଟଗୃହ କି ଆଖୁଗୃହ ଦାୟିତ୍ୱରେ । କିଏ ରହିଲା ରାସ୍ତା ତିଆରି ବା ଘର ତିଆରି ଦାୟିତ୍ୱରେ ।

ପ୍ରତ୍ୟେକ ବିଭାଗରେ ଆୟ ବ୍ୟୟ ସେମାନେ ନିଜ ଅକ୍ତିଆରରେ ରଖନ୍ତି । ପ୍ରତ୍ୟେକ ଦିନ ସେମାନେ କାମ ଉପରକୁ ଆସିବେ ଓ କାମ ତଦାରଖ କରିବେ । ଆମଦାନୀ ଠାରୁ ବିକ୍ରୟ ପର୍ଯ୍ୟନ୍ତ ସବୁ ଦାୟିତ୍ୱ ସେମାନଙ୍କର ।

କାହା ବିଭାଗ କେମିତି ଚାଲିଛି, ପ୍ରତି ସପ୍ତାହରେ ସନ୍ଧ୍ୟାବେଳେ ଥରେ ଦୁଇଥର ମିଟିଂ ବସି ଆଲୋଚନା ହୁଏ । ଏହା ଫଳରେ ଅମରେଶ ଜାଣିପାରେ ସେମାନଙ୍କ କାମର ଅଗ୍ରଗତି ।

ସେ ଦିନ ଯେଉଁ କମିଟି ବସିଥାଏ, ସେଥିରେ ମୁଖ୍ୟ ଆଲୋଚନା ଚାଲିଥାଏ ଗାଁର ଆୟ ବ୍ୟୟ ନେଇ । କାର୍ଯ୍ୟକାରୀ ସମିତିର ସଭାପତି ନିଜେ ଅମରେଶ । ତାର ଦାୟିତ୍ୱ ହେଲା ସବୁ । ତେଣୁ ପ୍ରତି ବିଭାଗରେ କେମିତି କାର୍ଯ୍ୟ ଚାଲୁଛି, କେଉଁଠି ସୁବିଧା ଅସୁବିଧା ହେଉଛି, ସେ ଏଠି ଆଲୋଚନା ବ୍ୟତୀତ କାମ ଉପରେ ଯାଇ ମଧ୍ୟ ତଦାରଖ କରେ ।

ସେ ଦିନ ହିସାବ ଚାଲିଥାଏ ସଭ୍ୟମାନଙ୍କ ଭିତରେ । ସାରା ଗାଁ ଗୁଡ଼ିକରେ ପରିବାର ସଂଖ୍ୟା ହେଲା ୨୧୫ ଗୋଟି । ସାରା ଗାଁ ଗୁଡ଼ିକ ଅଧୀନରେ ଧାନ ଜମି ଅଛି ସାତ ହଜାର ଏକରରୁ କିଛି ବେଶି । ଏହି ଜମିରେ ମାତ୍ର ଗୋଟିଏ ଫସଲ ହୁଏ ବର୍ଷକୁ । ସେ ହେଉଛି ଧାନ ଚାଷ । ଧାନ ଯାହା ଆମଦାନୀ ହୁଏ, ସବୁ ଗୃହସ୍ଥଙ୍କୁ ଯୋଗାଇ ଦେଲା ପରେ ବଳେ ପ୍ରାୟ ହଜାରେ କୁଇଣ୍ଟାଲ । ଏହି ଧାନକୁ ରଖିବା ପାଇଁ ତିନୋଟି ବଡ଼ ବଡ଼ ଖମାର ଅଛି । ବର୍ଷ ସାରା ଧାନ ଓ ଅନ୍ୟାନ୍ୟ ଚାଷ ଓ ନାନା ଉନ୍ନୟନ ମୂଳକ କାମ ପାଇଁ ଏହି ଧାନ ମଜୁରି ଆକାରରେ ଦିଆଯାଏ ।

ନଦୀକୂଳ ଜମିରେ ବର୍ଷ ସାରା ଫସଲ ହୁଏ । ନଈଟିରେ ପାଣିଥାଏ ସବୁଦିନେ । ନଦୀଟିର ଦୁଇମୁଣ୍ଡ ଖୋଳିଲା ଥିଲେ ବି ଗାଁ ମଝିରେ ଏହି ଯେଉଁ ଦୁଇ ମାଇଲ ଯାଇଛି, ସେଥିରେ ଖରାଦିନେ ପାଣିଥାଏ ହାରାହାରି ଚାରି ପାଞ୍ଚ ଫୁଟ । ଦୁଇ ପାଖ ଚାଷ ଜମିକୁ ମଡ଼ାଇବାକୁ ଯଥେଷ୍ଟ । ଏହି ଦୁଇ ପାଖରେ ହାରାହାରି ହଜାରେ ଏକର ଜମି ଅଛି, ଯେଉଁଥିରେ ବହୁ ପ୍ରକାର ଅର୍ଥକରୀ ଫସଲ କରାଯାଏ ।

ପ୍ରତ୍ୟେକ ସଭ୍ୟ ସେମାନଙ୍କ ଆୟ ବ୍ୟୟ ରିପୋର୍ଟ ପଢ଼ିଲେ । ସେଥିରୁ ଜଣା ପଡ଼ିଲା ଏହି ହଜାରେ ଏକରରୁ ଗୋଟିଏ ବର୍ଷ ଭିତରେ ସେମାନଙ୍କର ଲାଭ ହୋଇଛି ଦେଢ଼ଲକ୍ଷରୁ କିଛି ଅଧିକ ଟଙ୍କା । ଏହି ଜମିରୁ ଦୁଇଶହ ଏକର ପନି-ପରିବା ଚାଷ, ଦୁଇଶହ ଏକର ଲେଖାଏଁ ଚିନାବାଦାମ, ସୋରିଷ, ଆଖୁ, ଝୋଟ ଓ ଧୂଆଁପତ୍ର । ପ୍ରଥମ ବର୍ଷ ବୋଲି ଫସଲଟା ଆଶା ଜନକ ହୋଇ ନ

ଥିଲା । ତେବେ ଖର୍ଚ୍ଚ ଆଦି ବାଦ୍ ଯାଇ ଯଦି ଦେଢ଼ ଲକ୍ଷ ଟଙ୍କା ଲାଭ ହୁଏ, ତେବେ ଏହା କମ୍ କୃତିତ୍ୱର କଥା ନୁହେଁ ?

ପନିପରିବାରୁ ଅଧିକ ଲାଭ ହୋଇଥାନ୍ତା । କିନ୍ତୁ ଅମରେଶଙ୍କର ନିର୍ଦ୍ଦେଶ ଅନୁଯାୟୀ ପନି ପରିବା ଗାଁ ଲୋକଙ୍କୁ ଉଚିତ ଦରରେ ଦିଆଯାଏ । ବାକିତକ ଉଚିତ୍ ମୂଲ୍ୟରେ ନିକଟସ୍ଥ ହାଟକୁ ପଠାଇ ଦିଆଯାଏ ।

ବଡ଼ ସୁଖର କଥା, ଯେଉଁମାନେ ଗୋଟିଏ ଗୋଟିଏ ଦାୟିତ୍ୱରେ ଅଛନ୍ତି, ସେମାନେ ବିଶ୍ୱସ୍ତ ଲବ୍ଧ ଧନରୁ ଗୋଟିଏ ପଇସା ମଧ୍ୟ ଏପଟ ସେପଟ କରନ୍ତି ନାହିଁ । ସଙ୍ଗେ ସଙ୍ଗେ ଯେଉଁ ଆୟ ହୁଏ, ପୋଷ୍ଟ ଅଫିସର ସେଭିଙ୍ଗସ ବେଙ୍କରେ ଜମା କରି ଦିଆଯାଏ । ଅମରେଶଙ୍କ ମତରେ ଏହି ଅର୍ଥ ସବୁ ଅନର୍ଥର ମୂଳ । ଏହା ଯେତେ କମ୍ ସମୟ ପାଇଁ ପାଖରେ ରହିବ ସେତେ ଭଲ । ଅଧିକ ସମୟ ପାଖରେ ରହିଲେ, ଟଙ୍କା ପ୍ରତି ଅହେତୁକ ମମତା ଜନ୍ମି ଆସିବ, ଫଳରେ ନାନା ଗୋଳମାଳ ଦେଖାଦେବ ।

ମିଟିଂରେ ଆସନ୍ତା ବର୍ଷ ପାଇଁ ଅର୍ଥକାରୀ ଓ ଧାନ ଫସଲର ଅଟକଳ ହୁଏ । କେତେବସ୍ତା ସାର ଲାଗିବ, କେତେ ବସ୍ତା ବିହନ ଲାଗିବ, କେତେ ବସ୍ତା କୀଟନାଶକ ଲାଗିବ ସବୁ ହିସାବ କରାଯାଇ ଏକ ବଜେଟ ତିଆରି ହୁଏ, ସମସ୍ତଙ୍କ ସାମନାରେ । ସମସ୍ତେ ନିଜ ନିଜ ମତାମତ ଯେମିତି ଦିଅନ୍ତି, ସେଥିପାଇଁ ବାଧ୍ୟକରେ ଅମରେଶ । ତା'ର ସବୁବେଳେ ଅନୁରୋଧ, ଯାହା କହିବ ସମସ୍ତଙ୍କ ସାମନାରେ କୁହ, ପଛରେ କହିବା ଗ୍ରାମବାସୀଙ୍କ ଏକତା ପ୍ରତି ଏକବଡ଼ ବିପଦ ।

କାର୍ଯ୍ୟକାରୀ ସମିତି ପରେ ଗାଁ ମାନଙ୍କର ସବୁ ଲୋକଙ୍କୁ ନେଇ ଏକ ସାଧାରଣ ମିଟିଂ ଡ଼କାଗଲା । ସେଥିରେ କାର୍ଯ୍ୟକାରୀ ସମିତି ଦେଇଥିବା ଆସନ୍ତା ବର୍ଷପାଇଁ ଆୟବ୍ୟୟ ଅଟକଳ ପେଶ କରାଗଲା । ଆସନ୍ତା ବର୍ଷପାଇଁ କ'ଣ କ'ଣ କରାଯିବ ସମସ୍ତଙ୍କ ଆଗରେ ଠିକ୍ କରାଗଲା । ଗୋଟିଏ ବର୍ଷ ଭିତରେ ଯଦି ସାଧାରଣ ଲୋକଙ୍କର ଏତିକି ଉନ୍ନତି ହୋଇଛି, ପାଞ୍ଚ ଦଶ ବର୍ଷ ଭିତରେ ସେମାନଙ୍କ କେତେ ଯେ ଉନ୍ନତି ହେବ ଗାଁର ଲୋକେ ଏହି ଆଲୋଚନା ସବୁରୁ ଅନୁମାନ କରିପାରିଲେ ।

ଯେଉଁ ଗାଁ ମାନଙ୍କରେ ବର୍ଷେ ତଳେ ଶତକଡ଼ା ଅଶୀ ନବେ ଭାଗ ଲୋକ ଦିନକୁ ଦୁଇବେଳା ଖାଇବାକୁ ପାଉ ନ ଥିଲେ, ଆଜି ତ ସେମାନେ ପେଟ ପୁରି ଖାଇବାକୁ ପାଉଛନ୍ତି, ଏହାଠାରୁ ଅଧିକ ଉନ୍ନତି ଆଉ କ'ଣ ଆଶା କରାଯାଇପାରେ ? ଗାଁର ଏହି ସବୁ ଆୟ ଦେଖି ସମସ୍ତଙ୍କ ମନ ଆନନ୍ଦ । ଏଇ ପଇସା ଏ ବର୍ଷ ଖର୍ଚ୍ଚ କରି ପାରିଲେ, ଆସନ୍ତା ବର୍ଷକୁ ଆହୁରି ଅଧିକ ଆୟ ହେବ । ସେମାନେ ଆହୁରି ଭଲ ଭାବରେ ଚଳିପାରିବେ ।

ଅମରେଶର ନିର୍ଦ୍ଦେଶନାରେ ଗ୍ରାମର ଉନ୍ନୟନ ଯେମିତି ଚାଲିଛି, ସମସ୍ତେ ଦେଖି ଆନନ୍ଦ । ମିଟିଂ ଶେଷ ହୋଇ ଆସିଲା ବେଳକୁ ଗୋଟିଏ ଅଶୀବର୍ଷର ବୁଢ଼ୀ କାନ୍ଦ ପକାଇ କହିଲା, "ଅମରେଶ ବାବୁ ଆମ ଗାଁର ଏହି ଯେଉଁ ଉନ୍ନତି କଲେ, ସେଥିପାଇଁ ଆମେ ଭଗବାନଙ୍କଠାରେ ପ୍ରାର୍ଥନା କରୁଛୁଁ, ଭଗବାନ ତାଙ୍କୁ କୋଟି ପରମାୟୁ ଦେଇଥାନ୍ତୁ ।

ଅନାଉଁ ଅନାଉଁ ଅମରେଶର ନିର୍ଦ୍ଦେଶନାରେ ଗାଁକୁ ଭଲ ଭଲ ବିହନ, ସାର, କୀଟନାଶକ ସବୁ ସହରରୁ କିଣା ହୋଇ ଆସି ଗୋଦାମ ଘରେ ଗଚ୍ଛିତ ହୋଇ ରହିଲା । ବଜାରରେ ଚଢ଼ା ଦର ଦେଖି ତୈଳବୀଜ, ଖୋଳ, ଗୁଡ଼ ବଜାରକୁ ଛଡ଼ାଗଲା । ଗାଁ ମାନଙ୍କରେ ଯେତୋଟି ବଳଦ ଗାଡ଼ି ଥିଲା, ସେ ସବୁ ଏହି ପଦାର୍ଥ ସବୁ ନେବା ଆଣିବାରେ ଲାଗି ପଡ଼ିଲେ ।

ଗାଁ ଗୁଡ଼ିକ ଗ୍ରାମଦାନ ସଂସ୍ଥା ଅଧୀନକୁ ଆସିବା ପୂର୍ବରୁ ଯେଉଁ ଲୋକ ଯେଉଁ ଧନ୍ଦାରେ ଥିଲେ, ସେମାନେ ସେହି ଧନ୍ଦାରେ ରହିଲେ । ଯେ ବଳଦଗାଡ଼ି ଚଳାଉଥିଲା, ସେ ବଳଦ ଗାଡ଼ି ଚଳାଇଲା । ଯେ ଜମି ଚଷୁଥିଲା, ସେ ଜମି ଚଷିଲା । ଯେଉଁମାନେ ଏ ପନିପରିବା ଓ ଅର୍ଥକରୀ ଫସଲ ଚାଷ କରୁଥିଲେ, ସେହିମାନେ ସେହି ଚାଷରେ ରହିଲେ ।

ଗାଁର ଜମି ଚାଷ ଯେଉଁ ଜମିମାଲିକମାନେ ତଦାରଖ କରୁଥିଲେ ସେମାନଙ୍କୁ ସେହି ତଦାରଖ କାମରେ ଲଗାଗଲା । ଗାଁ ମହାଜନମାନଙ୍କୁ ସଂସ୍ଥାର ହିସାବ କିତାବ ରଖିବା ଦାୟିତ୍ୱ ଦିଆଗଲା ।

ଗାଁର କେହି ଜଣେ କିଛି ନା କିଛି କାର୍ଯ୍ୟ କରିବାକୁ ବାଧ୍ୟ । ଗାଁର ଯେଉଁମାନେ ଖେଳଖାଲ ଓ ଦୌଡ଼ା ଦୌଡ଼ି କରିବାରେ ଧୁରନ୍ଧର, ସେମାନଙ୍କୁ

ବଜାରରେ ଗାଁ ଜିନିଷର କେମିତି ଭଲ କାଟତି ହେବ ଓ ଅଧିକ ଉପାର୍ଜ୍ଜନ ହେବ ସେ ଦାୟିତ୍ୱରେ ରହିଲେ । ସଂସ୍ଥାର ସହକାରୀ ସମ୍ପାଦକ ହୋଇ ରହିଲେ ଅମରେଶ । ସଂସ୍ଥା ଅଧୀନରେ ଥିବା ଆଠଟି ଯାକ ଗାଁ ଗୋଟିଏ ପରିବାର ଭଳି ଚଳିବାକୁ ଶିଖିଲେ ।

ପ୍ରତ୍ୟେକ ସ୍ତରରେ ଗାଁ ଲୋକମାନଙ୍କର କାମ କରିବା ଆଗ୍ରହ ଦେଖି ଅମରେଶ ତାଟଙ୍ଗା ହୁଏ । ଅମରେଶ ଏହି ଗାଁ ଲୋକଙ୍କ ଆଗ୍ରହକୁ ଏହି ସଂସ୍ଥା ଅଧୀନକୁ ଆସି ନ ଥିବା ଲୋକଙ୍କ ଆଗ୍ରହ ସହିତ ତୁଳନା କରି ଦେଖେ ଆକାଶ ପାତାଳ ପ୍ରଭେଦ ।

ଯେଉଁସବୁ ଗାଁରେ ପ୍ରତ୍ୟେକ ଲୋକ ନିଜ ନିଜ ସ୍ୱାର୍ଥ ସହିତ ଏତେ ଭାବରେ ଜଡ଼ିତ ଯେ ଗାଁର ସମୂହ ଲୋକଙ୍କ ସ୍ୱାର୍ଥକଥା ଭାବିବା କ'ଣ ସେମାନେ ଜାଣି ନାହାନ୍ତି । ହେଲେ, ଏ ଗାଁର ଲୋକମାନେ ଯେତେ ଆଗ୍ରହର ସହିତ ପ୍ରତ୍ୟେକ ସମସ୍ୟାକୁ ସମାଧାନ କରିବା ପାଇଁ ଆଗଭର, ସେ ସବୁ ଗାଁରେ ସେପରି ନାହିଁ ।

ସରକାରୀ ସାହାଯ୍ୟକୁ ସେ ଗାଁର ଲୋକେ ଅନାଇ ବସିଥାନ୍ତି । ଯଦି କିଛି ଆସିଲା, ତେବେ ଅଫିସର, କିରାଣୀଠାରୁ ଆରମ୍ଭ କରି ଗାଁର ମୁଖିଆ ପର୍ଯ୍ୟନ୍ତ ସମସ୍ତେ କିଛି କିଛି ଯେପରି ମାରିନେବେ ସେହି ଚେଷ୍ଟାରେ ଥାଆନ୍ତି । ପୁଣି ଏହି ଭାଗବଣ୍ଟା ନେଇ କେତେ କଳଗୋଳ, ଟଣା ଓଟରା ।

ଗାଁରେ କିଛି ଉନ୍ନୟନ ହେଉ ବା ନ ହେଉ, ସେ ଆଡ଼କୁ କାହାରି ନଜର ନ ଥାଏ । ଅତ୍ୟଧିକ ସ୍ୱାର୍ଥ ପରତା ଏଥିପାଇଁ ଦାୟୀ, ବୋଲି ଅମରେଶ ଉପଲବ୍ଧି କରେ । ଗାଁ ପାଇଁ ଏହି ଗ୍ରାମର ଲୋକମାନେ ଯେମିତି ଅତ୍ୟଧିକ ପରିଶ୍ରମ କରିବାକୁ ଆଗ୍ରହାନ୍ୱିତ, ସେ ସବୁ ଗାଁରେ ତା' ମୋଟେ ନାହିଁ ।

## ( ଛଅ )

ଗାଁରେ ଗୃହବାସ ଠାରୁ ଆରମ୍ଭ କରି ଉନ୍ନୟନ କାର୍ଯ୍ୟ ପର୍ଯ୍ୟନ୍ତ ସବୁ ଠାରେ ଲୋକେ ଅଟକଳଠାରୁ କମ୍ ସମୟ ଭିତରେ କାମ ଶେଷ କରନ୍ତି । ଅନ୍ୟ ଗାଁ ମାନଙ୍କରେ ଶ୍ରମିକମାନେ ଯେମିତି ଘଣ୍ଟା କଣ୍ଟାକୁ ଧରି କାମ କରନ୍ତି, ଏଠି ତା ନାହିଁ । ସେମାନେ କାମ ପାଇଁ ଏତେ ଆଗ୍ରହର ସହିତ ଲାଗି ପଡନ୍ତି ଯେ ଘଣ୍ଟା କଣ୍ଟା ସହିତ ସେମାନଙ୍କର ସଂପର୍କ ନ ଥାଏ । କାମ କେମିତି ଶେଷ ହେବ ସେମାନଙ୍କ ଝୁଙ୍କ । ଏତ ପୁଣି ଆଉ କାହା କାମ ନୁହେଁ, ନିଜ କାମ । ଏଥିପାଇଁ ଘଣ୍ଟା କଣ୍ଟା କ'ଣ ଦେଖିବେ ?

ଅମରେଶ ଭାବେ ଏହି ମନୋବୃତ୍ତି ଲୋକଙ୍କ ଠାରେ ଆସିବା କମ୍ ବଡ଼ କଥା ନୁହେଁ । ମନଥିଲେ ଅର୍ଥ ଆସେ, ବୋଲି ଯେଉଁ କଥା ଆମର ଅଛି, ତାହା ଏହିଭଳି ଲୋକଙ୍କ ପାଇଁ ।

ଲୋକଙ୍କର କାମ କରିବା ଆଗ୍ରହ ଦେଖି ଅମରେଶ ବଡ଼ ଖୁସି ହୋଇ ଯାଏ ଓ ଅଧିକ ଖଟିବା ପାଇଁ ନିଜର ଆଗ୍ରହ ଆସେ । ସେ ଯେତେବେଳେ ଏଠି କାମ ଆରମ୍ଭ କଲା, ଆଶା କରି ନ ଥିଲା, ଲୋକଙ୍କଠାରୁ ଏତେ ସାହାଯ୍ୟ ସହଯୋଗ ପାଇବ ଓ ଲୋକେ ଏତେ ଆଗ୍ରହରେ ତା ସହିତ ସହଯୋଗ କରି ସବୁ କାମରେ ମାତିଯିବେ । ସେ ଯେଉଁ କାମ ଆରମ୍ଭ କରେ, ତାହା ଏତେ ଶୀଘ୍ର ସଂପୂର୍ଣ୍ଣ ହୋଇଯିବ ବୋଲି ସେ କେବେ ଆଶା କରି ନ ଥାଏ ।

ଆହୁରି ଆଶ୍ଚର୍ଯ୍ୟ, ଦିନକୁ ଦିନ ଲୋକଙ୍କର ଆଗ୍ରହ ଓ ଅଧିକ ଅଧିକ କାମ କରିବା ସ୍ପୃହା ବଢ଼ି ଚାଲିଛି । ପୁରୁଷମାନେ ଯାହା ଖଟୁଛନ୍ତି, ସ୍ତ୍ରୀମାନେ ବି କମ୍ ଖଟୁନାହାନ୍ତି । ତା’ ଛଡ଼ା ବର୍ଷକ ପୂର୍ବେ ଯେମାନେ ସେମାନଙ୍କ ପିଲାମାନଙ୍କୁ ସ୍କୁଲକୁ ପଠାଉ ନ ଥିବାରୁ ସ୍କୁଲ ଖାଲି ଯାଉଥିଲା, ଆଜକାଲି ସ୍କୁଲରେ ପଢ଼ିବା ପାଇଁ ଏତେ ଭିଡ଼ ଯେ ଅମରେଶର ଏହା ପ୍ରଧାନ ଚିନ୍ତାର ବିଷୟ ହୋଇପଡ଼ିଛି ।

ଗ୍ରାମଦାନ ସଂସ୍ଥା ଆରମ୍ଭ ଭିତରେ ଗୋଟିଏ ସ୍କୁଲ ବଢ଼ି ବଢ଼ି ଦୁଇଟି ସ୍କୁଲରେ ପରିଣତ ହୋଇଛି । ତଥାପି ଛାତ୍ର ସଂଖ୍ୟା ସମ୍ଭାଳି ହେଉନି ।

ସେ ଦିନ ଅମରେଶ କାର୍ଯ୍ୟକାରୀ ସମିତିରେ ଯୋଜନା ବାଢ଼ିଲା ଆଉ ଗୋଟିଏ ସ୍କୁଲ କରିବ ଓ ଗୋବିନ୍ଦପୁର ସ୍କୁଲଟିକୁ ମାଇନର ସ୍କୁଲରେ ପରିଣତ କରିବ । ତା ପାଇଁ ଅର୍ଥ କେଉଁଠୁ ଆସିବ; ଆଲୋଚନା କରିବା ପାଇଁ ଅମରେଶ ସ୍କୁଲ ବିଭାଗର ଇନ୍‌ସପେକ୍ଟର ସହିତ ପରାମର୍ଶ କରିବାକୁ ସହରକୁ ଗଲା । ସେ ବର୍ଷ ଶିକ୍ଷା ବିଭାଗରେ ଖର୍ଚ୍ଚ କାଟ୍ । ଅଧିକ ସ୍କୁଲ ବସାଇବା ପାଇଁ ଇନ୍‌ସପେକ୍ଟର ଅକ୍ଷମତା ପ୍ରକାଶ କଲେ । ତେବେ ଗ୍ରାମବାସୀମାନେ ଯଦି ସ୍କୁଲ ପାଇଁ ନୂତନ ଘର ତୋଳି ଦେଇ ପାରନ୍ତି, ତେବେ ସରକାର ଶିକ୍ଷକ ଦେବାକୁ ଅରାଜି ହେବେନି ।

ଅମରେଶ ଇନସପେକ୍ଟରଙ୍କ ଏହି ମତରେ ରାଜି ହୋଇଗଲା । ସେମାନଙ୍କ ଗ୍ରାମଦାନ ସଂସ୍ଥା ସ୍କୁଲଘର ପୁରାପୁରି ନିଜ ଖର୍ଚ୍ଚରେ ତିଆରି କରିଦେବ ବୋଲି ଜବାବ ଦେଇ ଆସିଲା । ସ୍କୁଲଘର ତିଆରି ସରିଲେ ଇନ୍‌ସପେକ୍ଟର ଶିକ୍ଷକ ଯୋଗାଇ ଦେବା ଦାୟିତ୍ୱ ନେଲେ ଓ ସ୍କୁଲ ଖୋଲିବାର ଅନୁମତି ଦେବା କଥା ସ୍ଥିର ହେଲା ।

ଗାଁକୁ ଫେରି ଆସି କାର୍ଯ୍ୟକାରୀ ସମିତିରେ ଯେତେବେଳେ ସ୍କୁଲ ଘର ତିଆରି କରିବା ପ୍ରସ୍ତାବ ଦେଲା, ଦୁଇଟି ସ୍କୁଲ ଘର ତିଆରିର ଖର୍ଚ୍ଚ ବହନ କରିବା ସଂସ୍ଥା ପକ୍ଷରେ ସମ୍ଭବ କି ନୁହେଁ ଆଲୋଚନା ପଡ଼ିଲା ।

ଏଥି ପୂର୍ବରୁ ନିର୍ଦ୍ଧାରିତ ହୋଇ ଯାଇଥାଏ ଯେ ଚଳିତ ବର୍ଷଠାରୁ ଚାଷ ପାଇଁ ବ୍ୟବହୃତ ହେଉଥିବା ପୁରୁଣା ଲଙ୍ଗଳର ବ୍ୟବହାର ବନ୍ଦ କରାହୋଇ ବୈଜ୍ଞାନିକ ରୀତିରେ ତିଆରି ଭଲ ହଳ କରିପାରୁଥିବା ଲଙ୍ଗଳ ବ୍ୟବହୃତ ହେବ । ଏଥିପାଇଁ ସଂସ୍ଥାକୁ ଖରଚ କରିବାକୁ ପଡ଼ିବ ସତେଇଶ ହଜାର ଟଙ୍କା ।

ଦୁଇଟି ସ୍କୁଲ୍ ଘର ତିଆରି କରିବାକୁ ହେଲେ ଗ୍ରାମବାସୀମାନଙ୍କର ଶ୍ରମ ବାଦ ଯାଇ ତିରିଶ ହଜାର ଟଙ୍କାରୁ କମ୍ ଲାଗିବନି । ସେମାନଙ୍କ ବଜେଟରେ ସେମିତି କିଛି ଟଙ୍କା ବଳିନି, ଯେଉଁଥିରୁ ସେମାନେ ଏ କାମ ବାଦ୍ ସ୍କୁଲ ଘର ଦୁଇଟି ତିଆରି କରିପାରିବେ ।

ବର୍ତ୍ତମାନ ଚିନ୍ତା ପଡିଲା କରାଯିବ କଅଣ ? ଏଣେ ଯଦି ସ୍କୁଲ୍ ଘର ତିଆରି କରା ନ ଯାଉଛି, ପିଲାମାନଙ୍କ ପଢ଼ା ପଢ଼ିରେ ଅସୁବିଧା ହେବ । ପାଠ ପଢ଼ିବା ପାଇଁ ସେମାନଙ୍କ ଭିତରେ ଯେଉଁ ଆଗ୍ରହ ଓ ଉଦ୍ୟମ ଉତ୍ସାହ ଦେଖାଦେଇଛି ତାହା ମଉଳି ପଡ଼ିବ ।

ଏହି ପରିସ୍ଥିତିରେ କ'ଣ କରାଯିବ, ବଡ଼ ଅଡୁଆରେ ପଡ଼ିଲେ କାର୍ଯ୍ୟକାରୀ କମିଟି । ସଦସ୍ୟମାନଙ୍କ ମୁଣ୍ଡରେ ପଶିଲାନି, ବର୍ତ୍ତମାନ କ'ଣ କରାଯିବ ? ସମସ୍ତେ ଅମରେଶ ମତାମତକୁ ଅନାଇ ରହିଲେ ।

ଅମରେଶ ବି ଏମିତି ଏକ ଦୋଦୁଲ୍ୟମାନ ଅବସ୍ଥାରେ ପଡ଼ିଯାଇଥାଏ ଯେ ଭାବି ପାରୁ ନ ଥାଏ କ'ଣ କରାଯାଇ ପାରିବ । ବହୁ ଚିନ୍ତା କରି କହିଲା" ଦେଖନ୍ତୁ, ଏ ବର୍ଷ ପାଇଁ ନୂଆ ଲଙ୍ଗଳ କିଣା ବନ୍ଦ ରଖାଯାଉ । ଆସନ୍ତା ବର୍ଷକୁ ନୂଆ ଲଙ୍ଗଳ କିଣିବା । ପୁରୁଣା ଲଙ୍ଗଳରେ ଏ ବର୍ଷର ଚାଷ କରାଯାଉ ।"

ମେମ୍ବରମାନେ ଟିକିଏ ଗୁଁ ପୁଁ ହେଲେ । ସେମାନଙ୍କ ମତ ନୂଆ ଲଙ୍ଗଳ ବ୍ୟବହାର କଲେ ଭଲ ଫସଲ ହେବ । ଫସଲ ହେଲେ ସେମାନଙ୍କର ଅଧିକ ଆୟ ହେବ । ତେଣୁ ସେ ପରିସ୍ଥିତିରେ ଏହାକୁ ବନ୍ଦ କରିଦେବା ଉଚିତ୍ ନୁହେଁ ।

'କିନ୍ତୁ, ଅମରେଶ ଯୁକ୍ତି ବାଢ଼ିଲା "ପିଲାମାନଙ୍କର ଯେଉଁ ଉତ୍ସାହ ପାଠ ପଢ଼ିବାପାଇଁ ଦେଖାଦେଇଛି ତାହା ଆମ ଗାଁ ପାଇଁ ଅତ୍ୟନ୍ତ ମଙ୍ଗଳପ୍ରଦ । ତେଣୁ ସେମାନଙ୍କ ଆଗ୍ରହକୁ ଭାଙ୍ଗିଦେବା ଉଚିତ୍ ହେବନି । ନୂଆ ଲଙ୍ଗଳ ପାଇଁ ଗୋଟିଏ ବର୍ଷ ଅପେକ୍ଷା କରି ଗଲେ କିଛି କ୍ଷତି ନାହିଁ । କିନ୍ତୁ ପିଲାମାନେ ଯଦି ଗୋଟିଏ ବର୍ଷ ମୂର୍ଖ ରହିଯାନ୍ତି, ତେବେ ଏହା ଆମ ଗାଁ । ପିଲାମାନଙ୍କ ଭବିଷ୍ୟତ ପାଇଁ କମ୍ ଅମଙ୍ଗଳସୂଚକ ହେବନି ।

ଅମରେଶଙ୍କର ଏହିଭଳି ଯୁକ୍ତି ବଳରେ କାର୍ଯ୍ୟକାରୀ ସମିତିର ମତ ବଦଳିଲା । ନୂଆ ଲଙ୍ଗଳ କିଣିବା ପାଇଁ ବ୍ୟୟବରାଦ ହୋଇଥିବା ଟଙ୍କାକୁ

ଶେଷରେ ସ୍କୁଲ ଘର ତିଆରରେ ବ୍ୟସ୍ତ କରାଗଲେ । ସ୍କୁଲରେ ଯାଗା ଅଭାବରୁ ଯେଉଁ ପିଲାମାନେ ପଢ଼ି ପାରୁନଥିଲେ, ନୂଆ ସ୍କୁଲ ହେବାରୁ ସେମାନଙ୍କ ଆନନ୍ଦର ସୀମା ରହିଲନି ।

ଧୀରେ ଧୀରେ ଗାଁ ଲୋକଙ୍କ ଅବସ୍ଥା ଏହିଭଳି ଭାବରେ ଭଲ ଆଡ଼କୁ ଗଲା । ଗ୍ରାମଦାନ ସଂସ୍ଥା ହାତରେ ଦିନକୁ ଦିନ ଅଧିକ ଆର୍ଥିକ ସମ୍ବଳ ଆସିବାରୁ ଗାଁର ଶ୍ରମିକମାନଙ୍କୁ ଆଉ ପୂର୍ବଭଳି ଧାନ ଆକାରରେ ମଜୁରି ଦିଆ-ନ ଯାଇ ଟଙ୍କା ଆକାରରେ ଦିଆଗଲା । ଟଙ୍କା ଆକାରରେ ଦେବା ଫଳରେ ସୁବିଧା ହେଲା, ସେମାନେ ଏହି ପଇସାରେ ଡ଼ାଲି, ପନିପରିବା ଆଦି କିଣିବା ସଙ୍ଗେ ସଙ୍ଗେ ନିଜର ନିତ୍ୟ ବ୍ୟବହାର୍ଯ୍ୟ ଅନ୍ୟାନ୍ୟ ପଦାର୍ଥ ମଧ୍ୟ କିଣିପାରିଲେ ।

ଲୋକମାନଙ୍କୁ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ଯେମିତି ସୁବିଧାରେ ଯୋଗାଯିବ ଅମରେଶ ସଂସ୍ଥା ତରଫରୁ ଦୁଇ ଗୋଟିଏ ଦୋକାନ ବସାଇଲା । ସେମାନେ ଭଲ ଭଲ ଜିନିଷ ବାହାର ଦୋକାନଠାରୁ ଶସ୍ତାରେ ଦେଲେ । ଯେ ହେତୁ ଗ୍ରାମଦାନ ସଂସ୍ଥା ପ୍ରତ୍ୟେକ ଲୋକଙ୍କୁ ଖାଇବା ପାଇଁ ଧାନ ଯୋଗାଇ ଦେଉଛି, ବର୍ତ୍ତମାନ ଏହି ଯେଉଁ ଦୈନିକ ମଜୁରି ଦିଆଯାଉଛି, ତାହା ଅନ୍ୟ ଗ୍ରାମର ମଜୁରି ଠାରୁ କମ୍ । ଗାଁର ସମ୍ବଳ ଦେଖି ଦୈନିକ ମଜୁରି କେତେ ହେବ ଠିକ୍ କରାଯାଏ ।

ଲୋକେ କେବେ ପାଟି ଫିଟାନ୍ତି ନାହିଁ, ସେମାନଙ୍କ ମଜୁରି କେତେ ହେବା ଦରକାର । ସେମାନେ ଜାଣନ୍ତି ସେମାନେ ତ ଅନ୍ୟ କାହାପାଇଁ କାମ କରୁନାହାନ୍ତି ସେମାନେ ଯାହା କରୁଛନ୍ତି ନିଜ ପାଇଁ । ତେଣୁ ସଂସ୍ଥା ଯେଉଁ ମଜୁରି ଦେଉଛି, ସେତିକି ଢେ଼ର । ନିଜ ଗାଁ ପଇସା ନିଜେ ନେବା କଥା । ତା ଛଡ଼ା ଯାହା ମଜୁରି ପାଉଛନ୍ତି, ନିଜ ଚଳିବା ପାଇଁ ତ କମ୍ ହେଉନି ।

× × ×

ଗ୍ରାମଦାନ ସଂସ୍ଥା ସାହାଯ୍ୟରେ ଗୋବିନ୍ଦପୁର ଓ ତା ଆଖପାଖ ଗାଁର ଯେଉଁ ଅଭୂତପୂର୍ବ ଉନ୍ନତି ହୋଇଛି, ତା'ର ପ୍ରଶଂସା ଶୁଣିଥିଲେ ନୂଆ ବି.ଡ଼ି.ଓ. । ଲୋକମାନଙ୍କୁ ଭୟ କରି ଗ୍ରାମସେବକ କି ଗ୍ରାମସେବିକାମାନେ ଏହି ଗାଁ ଭିତରକୁ ପଶନ୍ତି ନି । ସେମାନଙ୍କ ପୂର୍ବ କ୍ରିୟାକଳାପ ଗ୍ରାମବାସୀମାନଙ୍କ ପାଖରେ ସେମାନଙ୍କୁ ଅବିଶ୍ୱାସୀ କରାଇ ଠିଆ କରାଇଛି ।

ଏହି ନୂଆ ବ: ଉ. ଓ: ପୂର୍ବ ବ. ଉ. ଓ. ଙ୍କର ବିପରୀତ । ସେ ଗ୍ରାମବାସୀମାନଙ୍କୁ ସବୁ ପ୍ରକାର ସାହାଯ୍ୟ ସହାନୁଭୂତି ଦେବାପାଇଁ ପ୍ରସ୍ତୁତ । ସରକାରଙ୍କ ନୂତନ ନୀତି ଅନଯାୟୀ ଦେଶରେ ଅଧିକ ଦୁଗ୍ଧ ଓ ମାଂସ ଉତ୍ପାଦନ ପାଇଁ ଗ୍ରାମବାସୀମାନଙ୍କୁ ଗାଈ, ଛେଳି, କୁକୁଡ଼ା ଆଦି ଯୋଗାଇଦେଇ ଦୁଧ ଓ ମାଂସର ଉତ୍ପାଦନ ବଢ଼ାଇବା ପାଇଁ ସେ ଖୁବ ଚେଷ୍ଟିତ । ବିଭିନ୍ନ ଗ୍ରାମର ଅଭାବଗ୍ରସ୍ତ ଲୋକଙ୍କୁ ବାଛି ବାଛି ଏହି ଦାନ ଦେବା ପାଇଁ ତାଙ୍କୁ ଦାୟିତ୍ୱ ଦିଆଯାଇଥାଏ । ତାଙ୍କ ବ୍ଲକ୍‌ର ପ୍ରାୟ ସବୁ ଗ୍ରାମରେ ଏ ସବୁ ବଣ୍ଟା ସରିଲାଣି, ତେବେ ଏହି ଆଠ ଗୋଟି ଗାଁକୁ କିଛି ଦିଆଯାଇନି । ଏଠି ତ ଅଲଗା ପ୍ରକାର ବ୍ୟବସ୍ଥା ।

ତେବେ କେଉଁ ଭାବରେ ଦିଆଯାଇ ପାରିବ, ସେ ସଂପର୍କରେ କଥାବାର୍ତ୍ତା କରିବା ପାଇଁ ବ ଉ ଓ ଦିନେ ସେହି ଗାଁରେ ଆସି ହାଜର। ଗାଁର ଉନ୍ନୟନ କୃଷି, ଉନ୍ନତ ଶିକ୍ଷା ଆଦି ଦେଖି ତାଙ୍କୁ ବଡ ଖୁସି ଲାଗିଲା । ଏହି ଗ୍ରାମଗୁଡ଼ିକର ଅଧିବାସୀମାନେ ଅନ୍ୟ ଗାଁର ଲୋକଙ୍କ ଭଳି ଏଣେ ତେଣେ ବୁଲାବୁଲି ନ କରି କି ନିଜ ନିଜ ମଧ୍ୟରେ କଳିକଜିଆ ନ କରି ସେନାବାହିନୀର ସୈନ୍ୟମାନଙ୍କ ଭଳି ସେମାନଙ୍କ ଉପରେ ନ୍ୟସ୍ତ ଥିବା କାର୍ଯ୍ୟରେ ଲାଗିପଡ଼ିଛନ୍ତି, ଦେଖି ସେ ଆଶ୍ଚର୍ଯ୍ୟ ନ ହୋଇ ରହି ପାରିଲେନି ।

ଗ୍ରାମବାସୀମାନଙ୍କଠାରୁ ବୁଝି ସେ ଅମରେଶ ସହିତ କଥାବାର୍ତ୍ତା କରିବାକୁ ଆସିଲେ । ଅମରେଶ ସେତେବେଳକୁ ଅଫିସରେ ନଥାଏ । ସେ କୃଷି ହେଉଥିବା କ୍ଷେତରେ ଥାଏ । ବ: ଉ: ଓ. ଅମରେଶର ଅପେକ୍ଷାରେ ସେହି ଅଫିସ ଘରେ ବସି ରହିଲେ ।

କିଛି ସମୟ ପରେ ଅମରେଶ କ୍ଷେତରୁ ଆସିଲା । ଅଫିସରେ କାମ କରୁଥିବା ଲୋକମାନେ ବ: ଉ: ଓ.ଙ୍କ ସହିତ ତାକୁ ପରିଚୟ କରାଇଦେଲେ । କିଛି ସମୟ ପରସ୍ପର ଭିତରେ କଥାବାର୍ତ୍ତା ପରେ ବ. ଉ: ଓ: ତାଙ୍କ ଆସିବା ଉଦ୍ଦେଶ୍ୟ ଜଣାଇଲେ ।

ଏହି ଆଠ ଗୋଟି ଗାଁକୁ ସରକାରଙ୍କ ପକ୍ଷରୁ ପନ୍ଦର ଗୋଟି ଦୁଧିଆଳୀ ଗାଈ ଓ ପଞ୍ଚସ୍ତରୀ ଗୋଟି ଛେଳି ଓ ଦେଢ଼ଶହଟି କୁକୁଡ଼ା ଦିଆଯିବ ।

ଏହି ଆଠ ଗୋଟି ଗାଁର କେଉଁ କେଉଁ ଲୋକେ ଏହିସବୁ ପ୍ରାଣୀଙ୍କର ଦାୟିତ୍ୱ ନେବେ କହିଲେ, ସେମାନଙ୍କୁ ଏହି ପ୍ରାଣୀଗୁଡ଼ିକ ସରକାରଙ୍କ ପକ୍ଷରୁ

ଦାନ କରାଯିବ । ସେମାନେ ସେଇ ଗାଈ, ଛେଳି କୁକୁଡ଼ା ସବୁ ପାଳି ପୋଷି ସେମାନଙ୍କଠାରୁ ଦୁଧ, ମାଂସ, ଅଣ୍ଡା ଉତ୍ପାଦନ କରିବେ ଓ ସେ ସବୁକୁ ବିକି ନିଜେ ପୋଷି ହେବେ ଓ ଗାଁରେ ସେ ସବୁର ଅଭାବ ଦୂର କରିବେ ।

ସରକାରଙ୍କ ଯୋଜନା ଶୁଣି ଅମରେଶ ହସିଲା, କହିଲା "ଆପଣମାନେ ଅନ୍ୟ ଗାଁମାନଙ୍କରେ ଏହି ମତ ଅନୁସାରେ ବୋଧହୁଏ ବଣ୍ଟନ କରିସାରିଲେଣି ? ଖାଲି ଆମ ଗାଁ ଗୁଡ଼ିକ ବାକି ଅଛି ବୋଧେ ?"

ଖ୍ୱା. ଉ. ଓ. କହିଲେ, "ହଁ ଆଜ୍ଞା, ସେଇଥିପାଇଁ ତ ମୁଁ ଆଜି ଆସିଛି । ଆପଣମାନଙ୍କ ଗାଁର ସେହିଭଳି କେତେଜଣ ଅଭାବୀ ଲୋକଙ୍କ ନାମ ମୋର ଦରକାର ।"

ଅମରେଶ କହିଲା, "ଦେଖନ୍ତୁ ବି: ଉ. ଓ. ସାହେବ, ଆମର ଏହି ଆଠ ଗୋଟି ଗାଁରେ ଆପଣଙ୍କ ସରକାରଙ୍କ ଦାନକୁ କେହି ଗ୍ରହଣ କରିବାକୁ ରାଜି ହେବେନି । ଆମର ଏହି ଗ୍ରାମରେ କୌଣସି ଲୋକର ବ୍ୟକ୍ତିଗତ ସଂପତ୍ତି ବୋଲି ସେମିତି କିଛି ନାହିଁ । ପ୍ରତ୍ୟେକଙ୍କୁ ସାରା ବର୍ଷ ପାଇଁ ସ୍ତ୍ରୀ ପୁରୁଷ ନିର୍ବିଶେଷରେ କାମ ଦିଆ ହୋଇଯାଇଛି । ଆପଣମାନଙ୍କର ଏହି ଦାୟିତ୍ୱ ସେମାନେ ନେବା ଭଳି ମୋତେ ଦିଶୁନି । ଆପଣଙ୍କର ଯଦି ଆପତ୍ତି ନ ଥାଏ, ତେବେ ଆପଣ ଏହି ପ୍ରାଣୀଗୁଡ଼ିକୁ ଆମ ସଂସ୍ଥାକୁ ଦେଇପାରନ୍ତି । ଏହି ସଂସ୍ଥାକୁ ଦେଲେ ଏହାର ଉପକାର ସାରା ଗ୍ରାମବାସୀ ଉପଭୋଗ କରିପାରିବେ । ଗାଁର ସାମାନ୍ୟ କେଇଜଣ ବ୍ୟକ୍ତିବିଶେଷ ପାଇବେନି ।"

"କିନ୍ତୁ ଅମରେଶ ବାବୁ", ବି. ଉ. ଓ: କହିଲେ "ସରକାରଙ୍କ ନିର୍ଦ୍ଦେଶ ହେଉଛି ବ୍ୟକ୍ତିବିଶେଷଙ୍କୁ ଦେବା, କୌଣସି ଅନୁଷ୍ଠାନକୁ ଦେବା ନୁହେଁ । ଏହି ଯୋଜନା ସାହାଯ୍ୟରେ ବ୍ୟକ୍ତିବିଶେଷ ଯେମିତି ଉପକୃତ ହେବେ ସରକାର ତାହା ଚାହାଁନ୍ତି । ଗାଁର ସବୁଠାରୁ ଅଭାବୀ ଓ ପରିଶ୍ରମୀ ଲୋକଙ୍କୁ ଏହା ଦିଆଯିବ । ଅନ୍ୟ ଗ୍ରାମ ଭଳି କେତେଜଣ ବ୍ୟକ୍ତିବିଶେଷଙ୍କ ନାମ ମୋର ଦରକାର ।

"ଏହା ଯଦି ଆପଣଙ୍କର ମତ, ତେବେ ଏହି ଦାନକୁ ଆପଣ ଫେରାଇ ନେଇ ଯାଇପାରନ୍ତି । ଆମ ଗ୍ରାମର ଲୋକେ ଏହି ଦାନ ଗ୍ରହଣ କରିବାକୁ

ଅକ୍ଷମ । ଏହା ଆମ ମତ ବିରୁଦ୍ଧ । ଆପଣ ସରକାରଙ୍କୁ ଲେଖନ୍ତୁ, ସରକାର ଯଦି ଆମ ପ୍ରସ୍ତାବରେ ରାଜି ହୁଅନ୍ତି, ତେବେ ଆମ ସଂସ୍ଥା ଗ୍ରହଣ କରିପାରେ, ନୋହିଲେ ନାହିଁ । ବ୍ୟକ୍ତିବିଶେଷଙ୍କ ପ୍ରଶ୍ନ ଆମର ଏଠି ଉଠୁନି ।"

"ହେଉ ଆଜ୍ଞା, ମୁଁ ତା'ହେଲେ ସରକାରଙ୍କୁ ଲେଖିବି। ଯଦି ସରକାର ରାଜି ହୁଅନ୍ତି, ତେବେ ଆପଣମାନଙ୍କୁ ଏହି ଗାଈ, ଛେଳି, କୁକୁଡ଼ା ଆଦି ଦିଆଯିବ ।"

ବି. ଡ଼ି. ଓ. ଚାଲିଗଲା ପରେ କାର୍ଯ୍ୟକାରୀ ସମିତିର ସଭ୍ୟମାନେ ଆସି ପହଞ୍ଚିଗଲେ । ଅମରେଶର ସିଦ୍ଧାନ୍ତରେ ସେମାନେ ଖାଲି ଖୁସି ହେଲେନି, ଏମିତି ହାତ ଟେକା ଦାନ ବିରୁଦ୍ଧରେ ସେମାନେ ନିଜ ନିଜର ଅସନ୍ତୋଷତା ପ୍ରକାଶ କଲେ । ସରକାର ଏହିଭଳି ଦାନ ଅନ୍ୟ ଗାଁମାନଙ୍କରେ ଦେଇ ସେହି ଗାଁର ଲୋକମାନଙ୍କୁ ଯେଉଁ ହଇରାଣରେ ପକାଇଛନ୍ତି—ତାହା ସେମାନେ ଅମରେଶ ଆଗରେ ବଖାଣିଲେ ।

ସରକାର ଗାଁମାନଙ୍କୁ ଗାଈ ଦେଇଛନ୍ତି ସତ, କିନ୍ତୁ ଯେଉଁ ଦୁଧ ଉତ୍ପାଦିତ ହେଉଛି ତାକୁ ସଂଗ୍ରହ କରିବା ବା ବିକ୍ରୟ କରିବାର କିଛି ବ୍ୟବସ୍ଥା କରିନାହାନ୍ତି । ଗୋଟିଏ ଗୋଟିଏ ଗାଁରେ ଦୁଇ ତିନୋଟି ଲେଖାଏ ଗାଈ ଦିଆଯାଇଛି । ଦୁଧ ଉତ୍ପାଦନ ହୁଏ ଦିନକୁ ବାରହାର ତିରିଶ ଲିଟର । ଏହି ତିରିଶ ଲିଟର ଦୁଧ କିଣିବାକୁ ଗାଁରେ ବା କିଏ ଅଛି ? ଦୁଧର ଯେଉଁ ଦର ସେହି ଦରରେ ଗାଁରେ କିଏ ବା ଦୁଧ କିଣି ଖାଇପାରିବ ? ଦୁଧ ସହରକୁ ନେବାର କିଛି ବ୍ୟବସ୍ଥା ମଧ୍ୟ ନାହିଁ ।

ଦୁଧ ଯିନା ବିକ୍ରୀ ହେଲେ ସେମାନେ ଗାଈ ପାଇଁ ଗୋଖାଦ୍ୟ କିଣନ୍ତେ, ଦୁଧ ବିକ୍ରୀ ନ ହେଲେ ସେମାନେ ଗୋଖାଦ୍ୟ କିଣିବେ କେମିତି ? ତେଣୁ ଏ ସବୁ ଗାଈ ନେଇଥିବା ଗ୍ରାମବାସୀମାନଙ୍କ ପାଇଁ ଗୋଟିଏ ଗୋଟିଏ ମୁଣ୍ଡ ବ୍ୟଥା । ଆମକୁ ଅଯଥାରେ ସେ ମୁଣ୍ଡ ବ୍ୟଥାରେ ପକାଇ ଲାଭ କଅଣ ?

ଅମରେଶ ହସିଲା, କହିଲା । ମୁଁ ସେଥିପାଇଁ କହୁଛି, ସେମାନେ ଆମକୁ ଯାହା ଦେବାକୁ ଚାହୁଁଛନ୍ତି, ଆମ ସଂସ୍ଥାକୁ ଦେଇ ଦିଅନ୍ତୁ । ଆମ ସଂସ୍ଥା ତହିଁର ଦାୟିତ୍ୱ ନେବ । ଗ୍ରାମବାସୀମାନଙ୍କର ମୁଣ୍ଡ ବ୍ୟଥାର କାରଣ ହେବନି ।"

× × ×

ଯେଉଁଦିନ ବା: ଡ଼, ଓ:ଙ୍କ ଅଫିସରୁ ପନ୍ଦର ଗୋଟି ଦୁଧିଆଳୀ ଜରସି ଗାଈ, ପଞ୍ଚସ୍ତରିଗୋଟି ଛେଳି, ଦେଢ଼ଶହ ଗୋଟି ଜାତିଆ କୁକୁଡ଼ା ଆସି ଗାଁରେ ପହଞ୍ଚିଲି, ସେ ଦିନ ଗ୍ରାମବାସୀମାନଙ୍କ ଆନନ୍ଦ କହିଲେ ନ ସରେ ।

ଏ ଗୁଡ଼ାକ ଆସିବା ପୂର୍ବରୁ ଅମରେଶ ସେମାନଙ୍କ ରହିବା ପାଇଁ ଗୁହାଳ ଘର, ଛେଳି କୋଠି, କୁକୁଡ଼ା ଘର ଆଧୁନିକ ବୈଜ୍ଞାନିକ ରୀତିରେ ତିଆରି କରି ନେଇଥାଏ । ଯେଉଁ ଲୋକମାନେ ଏହି ପ୍ରାଣୀମାନଙ୍କ ଦାୟିତ୍ୱରେ ରହିବେ, ସେମାନଙ୍କୁ ନିକଟସ୍ଥ ଭେଟେରିନେରୀ ଅଫିସକୁ ପଠାଇ ସେମାନଙ୍କୁ ସାତ ଦିନିଆ ତାଲିମ୍ ଦେଇ ଆଣିଥାଏ ।

ଏହି ଗାଈ, ଛେଳି, କୁକୁଡ଼ାମାନେ ଖାଇବା ପାଇଁ ଗୋଖାଦ୍ୟ, କୁକୁଡ଼ା ଖାଦ୍ୟ ଚଢ଼ା ଦରରେ ବଜାରରୁ ନ କିଣି ସେଗୁଡ଼ିକର ଗାଁରେ ଉତ୍ପାଦନ ପାଇଁ ଏକ କଳ ଆଣି ବସାଇଥାଏ ଅମରେଶ । ନିଜ କ୍ଷେତରେ ତ ବୁଟ ହେଉଛି, ଗହମ ହେଉଛି, ଗୋଖାଦ୍ୟ ତିଆରିକରିବାକୁ ଚୂନିର ଅଭାବ ପଡ଼ିବ କାହିଁକି ? ତା ଛଡ଼ା ଗାଁରେ ନଡ଼ା ଘାସର ତ ଅଭାବ ନାହିଁ । ଗାଁର ଯେଉଁ ଲୋକମାନେ ଗାଈ, ଛେଳି, କୁକୁଡ଼ାମାନଙ୍କର ହେପାଜତରେ ରହିଲେ, ସେମାନଙ୍କୁ ଏସବୁ ଖାଦ୍ୟ ସଂଗ୍ରହ କରିବା ଦାୟିତ୍ୱ ଦେଇ ଅମରେଶ ନିଶ୍ଚିନ୍ତ ।

ଅମରେଶ ହିସାବ କରି ଦେଖିଲା ଏହି ଅଠୋଟି ଗାଁରେ ଶିଶୁ ଓ ପିଲା ସଂଖ୍ୟା କେତେ ? ସେହି ଶିଶୁ ଓ ପିଲାମାନଙ୍କୁ ଏକ ନିର୍ଦ୍ଦିଷ୍ଟ ପରିମାଣରେ ଦୁଧ ଦେଇ ପାରିଲା ପରେ ଯାହା ବଳିଲା, ତାକୁ ଗାଁ ଲୋକମାନଙ୍କ ଭିତରେ ବିକ୍ରୀ କରି ଦେବାକୁ ଆଦେଶ ଦେଲା ।

ଶିଶୁମାନଙ୍କୁ ବିନା ପଇସାରେ ଦୁଧ ଦିଆଗଲା । ଗାଁର ପିଲାମାନେ ଯଦି ଦୁଧ ନ ଖାଉଛନ୍ତି, ତେବେ ବଡ଼ କାଳକୁ ସେମାନେ ସୁସ୍ଥ ସବଳ ହୋଇ ବାହାରିବେ ବା କେମିତି ?

ଅମରେଶ ଦେଖିଲା ଏହି ଗାଈମାନଙ୍କଠାରୁ ଯେତିକି ପରିମାଣରେ ଦୁଧ ଉତ୍ପାଦିତ ହେଉଛି ସେତିକି ଏହି ଗାଁ ପାଇଁ ଯଥେଷ୍ଟ ନୁହେଁ । ଯେତିକି

ପରିମାଣରେ ଦୁଧ ଦୈନିକ ବିକ୍ରୀ ହୁଏ, ସେଥିରୁ ମିଳୁଥିବା ଟଙ୍କାକୁ ଅଲଗା ରଖିବା ପାଇଁ ନିର୍ଦ୍ଦେଶ ଦେଲି ।

ସେହିପରି ଛେଳି ଓ କୁକୁଡ଼ା ଚାଷ ଆଗେଇ ଚାଲିଲା । କୁକୁଡ଼ା ଅଣ୍ଡା ଓ ଛେଳି ମାଂସ ଆଗେ ଗ୍ରାମବାସୀ ମାନଙ୍କୁ ବିକ୍ରୟ ହେଲା, ଯାହା ବଳିଲା ଅନ୍ୟ ଗାଁରେ ବିକ୍ରୀ କରିବାର ବ୍ୟବସ୍ଥା ହେଲା । ଏଥିରୁ ଯାହା ଲାଭ ହେଲା, ସେ ସବୁ ଦୁଧ ପାଣ୍ଠିରେ ଜମା ହେଲା । ଯେଉଁ ଲୋକ ଏ ଦାୟିତ୍ୱରେ ରହିଲେ ତାଙ୍କୁ କୁହାଗଲା ଧୀରେ ଧୀରେ ଏହି ଅର୍ଥରୁ ଗାଈ ସଂଖ୍ୟା ବଢ଼ାଇବା ପାଇଁ । ଅମରେଶର ଇଚ୍ଛା ଦୁଇ ତିନି ବର୍ଷ ଭିତରେ ଯେମିତି ଏହି ଗାଁର ଲୋକମାନେ ଆବଶ୍ୟକ ପରିମାଣରେ ଦୁଧ ଖାଇବାକୁ ପାଇବେ ।

କୁକୁଡ଼ା ଚାଷ, ଛେଳି ଚାଷ, ସାଥୀକୁ ଜୁଟିଗଲା ମାଛ ଚାଷ । ଏହି ଗ୍ରାମଦାନ ଅଧୀନରେ ଥିବା ଗାଁ ମାନଙ୍କରେ ପୋଖରୀ ସଂଖ୍ୟା ଡେର, ଗୋଟିଏ ବଡ଼ ମିଶି ଦଶଗୋଟିରୁ କମ ହେବନି । ତା ଛଡ଼ା ଗାଁ ଭିତରେ ଗୋଟିଏ ନଈଟିଏ ପଣି ଅଛି, ଯେଉଁଥିରେ ବର୍ଷସାରା ପାଣି ରହେ । ଏହି ପୋଖରୀ ଗୁଡ଼ିକ ମଧ୍ୟ ଖରା ଦିନେ ଶୁଖେନି ।

ଅମରେଶ ପ୍ରଥମେ ଯେତେବେଳେ ଆସି ଏହି ଗାଁରେ ଯୋଗ ଦେଲା ତାର ପ୍ରଧାନ କାମ ହୋଇଥିଲା ଏହି ପୋଖରୀ ଗୁଡ଼ିକର ଦଳ ଗ୍ରାମବାସୀଙ୍କ ଦ୍ୱାରା ସଫା କରାଇ ସେଥିରେ ମାଛ ଚାଷ କରାଇବା । ରାଜ୍ୟ ସରକାରଙ୍କ ମତ୍ସ୍ୟ ବିଭାଗ ତାକୁ ଏ ଦିଗରେ କମ୍ ସାହାଯ୍ୟ କରି ନାହାନ୍ତି । ବିନା ପଇସାରେ ମତ୍ସ୍ୟ ବିଭାଗ ସେମାନଙ୍କୁ ଯାଆଁଳ ଯୋଗାଇ ଦେଇଛି ।

ଦୁଇଟି ବର୍ଷ ଭିତରେ ପୋଖରୀ ଗୁଡ଼ିକର ମାଛର ସଂଖ୍ୟା ଦେଖି ଗାଁ ଲୋକଙ୍କ ଖୁସି କହିଲେ ନ ସରେ । ଆଗରୁ ଏହି ସବୁ ପୋଖରୀରେ ଦଳ ଭର୍ତ୍ତି ହୋଇ ଥିବାରୁ ମାଛତ ମିଳିବା ସ୍ୱପ୍ନ ହୋଇଥିଲା, ଦଳ ଗୁଡ଼ିକ ଯୋଗୁଁ ମଶା ଆଦିଙ୍କର ପ୍ରାଦୁର୍ଭାବ ଗାଁ ର ବଢି ଯାଇଥିଲା । ପୋଖରୀ ଗୁଡିକରେ ମାଛଚାଷ ହେବାରୁ ପାଣି ନିର୍ମଳ ହେଲା, ମଶାଙ୍କ ପ୍ରାଦୁର୍ଭାବ ଆଗଭଳି ଏତେ ରହିଲାନି ।

ପ୍ରଥମ ଦୁଇବର୍ଷ ପରେ ଯେତେବେଳେ ମାଛମାନେ ବେଶ୍ ବଡ଼ ବଡ଼ ହେବାର ଜାଣି ପାରିଲା, ଅମରେଶ ନିମନ୍ତ୍ରଣ କଲା ରାଜ୍ୟର ବଡ଼ ବଡ଼ ମାଛ

ବେପାରୀଙ୍କୁ । ସେମାନେ ଏହି ପୋଖରୀର ମାଛ ଦେଖି ଭାରି ଖୁସି ହୋଇଗଲେ । ସେମାନଙ୍କ ସହ ମାଛର ଦର ଚୂକ୍ତି ହେବା ପରେ, ଗୋଟିକ ପରେ ଗୋଟିଏ ସବୁ ପୋଖରୀ ଧରାଗଲା । ବଡ଼ ବଡ଼ ମାଛ ବଜାର ପାଇଁ ରଖି ଛୋଟ ଛୋଟ ମାଛ ପୁଣି ପୋଖରୀରେ ଛାଡ଼ି ଦିଆଗଲା । ଆଶା ପରବର୍ଷକୁ ସେମାନେ ବଡ଼ ହୋଇ ବଜାର ଅବସ୍ଥାକୁ ଆସିଯିବେ ।

ଏହି ମାଛ ବିକ୍ରିରୁ ସେହିବର୍ଷ ଏହି ଗ୍ରାମମାନଙ୍କରେ ଲାଭ ହେଲା ଲକ୍ଷେ ଟଙ୍କା ପାଖାପାଖି । ଗାଁ ପାଣ୍ଠିର ଦିନକୁ ଦିନ ଏତାଦୃଶ ଅଭିବୃଦ୍ଧି ଦେଖି ଲୋକଙ୍କ ଆନନ୍ଦର ସୀମା ରହିଲା ନାହିଁ । ଏହି ଟଙ୍କା ଗ୍ରାମର ବିଭିନ୍ନ ଉନ୍ନୟନ କାର୍ଯ୍ୟରେ ଖର୍ଚ୍ଚ ହେଲେ ସେମାନଙ୍କ ଅବସ୍ଥା ଆହୁରି କେତେ ଭଲ ହେବ ?

ଇତି ମଧ୍ୟରେ ଗାଁର ମାଇନର ସ୍କୁଲରେ ହରିବାବୁ ହେଡମାଷ୍ଟର ପଦରେ ରହି ସାରିଲେଣି । ଆଜି ତାଙ୍କରି ଚେଷ୍ଟାରୁ ଗଢ଼ି ଯାଇଥିବା ଗାଁ ସ୍କୁଲଟି ବଢ଼ି ବଢ଼ି ମାଇନର ସ୍କୁଲରେ ପରିଣତ ହେଲାଣି । ଆଠଗୋଟି ଗାଁରେ ଗୋଟିଏ ମାତ୍ର ମାଇନର ସ୍କୁଲ । ପିଲା ସଂଖ୍ୟା ଖୁବ୍ ବେଶି । ପିଲା ସଂଖ୍ୟା ଦେଖି ଶିକ୍ଷକଙ୍କ ସଂଖ୍ୟା ତିନିରୁ ଆସି ଆଠରେ ପହଞ୍ଚିଲାଣି ।

ଖାଲି ଏହି ସ୍କୁଲରେ ଝିଅଙ୍କ ସଂଖ୍ୟା ଶହେ । ସେମାନଙ୍କ ପାଇଁ ଗୋଟିଏ ଶିକ୍ଷୟିତ୍ରୀର ଦରକାର ପଡ଼ିବାରୁ ବାସନ୍ତୀ ଏକ ଶିକ୍ଷୟିତ୍ରୀ ଭାବରେ ଯୋଗ ଦେଲାଣି । ସବୁ ଶିକ୍ଷକ ପ୍ରାଣପଣେ ଲାଗି ପଡ଼ିଥାନ୍ତି, ସ୍କୁଲର ଯେମିତି ଉତ୍ତରୋତ୍ତର ଉନ୍ନତି ହେବ, ଓ ଏ ସ୍କୁଲରେ ଯେମିତି ପଢ଼ାପଢ଼ି ଅନ୍ୟ ସ୍କୁଲ ଅପେକ୍ଷା ଭଲ ହେବ ।

ଶିକ୍ଷୟିତ୍ରୀ ଭାବରେ ଯୋଗଦେବା ପରେ ବାସନ୍ତୀର ବାହାଘର ନେଇ କେତେ ପ୍ରସ୍ତାବ ଆସି ହରିବାବୁଙ୍କ ଠାରେ ପହଞ୍ଚିଲା । ନ ପହଞ୍ଚିବ ବା କେମିତି ? ବାସନ୍ତୀ ଦେଖିବାକୁ ସୁନ୍ଦରୀ, ଜାଣ ଗୋଟିଏ ଗୁଡ଼ଲରେ ଗଢ଼ା । କଥାବାର୍ତ୍ତା ଚାଲିଚଳଣ ଖୁବ ଧୀର ସ୍ଥିର । ବେଶ୍ ପରିଶ୍ରମୀ ଓ ଘରଓ୍ୱାଡ଼ି । ଗାଁର ସବୁ ସ୍ତ୍ରୀଲୋକେ ତାକୁ ନିଜର ଝିଅ ଭଳି ସ୍ନେହ କରନ୍ତି । ବାସନ୍ତୀର ବାହାଘର କରିଦେବା ପାଇଁ ହରିବାବୁ ବଡ଼ ତତ୍ପର, ନହେବେ ବା କେମିତି ? ଘିଅ, ଝିଅ ବେଶିଦିନ ଘରେ ରଖିହେବନି । ସେମାନଙ୍କୁ ବିବାହ ଦେଇ

ଘର ସଂସାରରେ ପୁରାଇ ଦେଲେ ବାପ ମା'ଙ୍କର ବୋଝ ଟିକିଏ ହାଲୁକା ହେବ । ବାସନ୍ତୀର ବାହାଘର କଥା ନେଇ ଦିନେ ହରିବାବୁ ଅମରେଶ ସହିତ ପରାମର୍ଶ କରିବାକୁ ଆସିଲେ । ବିଭିନ୍ନ ପ୍ରସ୍ତାବ ଭିତରୁ କେଉଁଟି ଗ୍ରହଣ ଯୋଗ୍ୟ ହେବ, ଅମରେଶଙ୍କୁ ପଚାରି ଠିକ୍ କରିବେ । ଅମରେଶ ଯେତେବେଳେ ଗାଁର ମୁରବି ଭଳି, ତାଙ୍କୁ ନ ପଚାରିବେ ବା କେମିତି ?

ଦିନେ ସନ୍ଧ୍ୟାବେଳେ ଅମରେଶ ସହିତ ଏ ସମ୍ପର୍କରେ କଥାବାର୍ତ୍ତା କରିବା ପାଇଁ ଆସିଲା ବେଳକୁ ଅମରେଶଙ୍କ ମା'' ସେହିଦିନ ବସରେ ମୁଙ୍ଗେରରୁ ଆସି ପୁଅ ପାଖରେ ପହଞ୍ଚିଥାନ୍ତି । ଅମରେଶ ବାବୁଙ୍କ ମାଙ୍କୁ ଦେଖି ହରିବାବୁ ଆହୁରି ଖୁସି । କାରଣ ତାଙ୍କ ପରାମର୍ଶ ମଧ୍ୟ ଏହି ଶୁଭ କାର୍ଯ୍ୟରେ ବେଶ୍ ସହାୟକ ହେବ ।

ସେ ଦିନ ସନ୍ଧ୍ୟାବେଳେ ମା ପୁଅ ବସି କଥାବାର୍ତ୍ତା ହେଉଥାନ୍ତି, ହରିବାବୁ ଯାଇ ସେଠି ପହଞ୍ଚିଗଲେ । ଦୁଇଜଣଙ୍କୁ ଲମ୍ବ ଲମ୍ବ ନମସ୍କାର ପକାଇ ଗୋଟିଏ ଚେୟାରରେ ବସିଲେ ।

ଅମରେଶ ହରିବାବୁଙ୍କୁ ଦେଖି ସ୍କୁଲର ସୁବିଧା ଅସୁବିଧା କଥା ପଚାରିଲା । ପିଲାମାନଙ୍କୁ ସ୍କୁଲରେ ଯେଉଁ କ୍ଷୀର ମାଗଣା ଦେବାର ବ୍ୟବସ୍ଥା ସେ କରିଛି, ସେ କେମିତି ଚାଲିଛି ପଚାରିଲା । ପିଲାମାନଙ୍କର ପ୍ରତି ମାସରେ ଓଜନ ନିଆଯାଇ ସେମାନଙ୍କ ହେଲ୍‌ଥ ଚାର୍ଟ ଠିକ ଭାବରେ ତିଆରି ଚାଲିଛି କି ନାହିଁ ସେ କଥା ହରିବାବୁଙ୍କୁ ପଚାରିବାକୁ ଭୁଲିଲା ନାହିଁ ଅମରେଶ ।

ପିଲାମାନଙ୍କୁ ଦୁଧ ପିଆଇବା ଦାୟିତ୍ୱରେ କଉଳି ବାସନ୍ତୀ ରହିଛି ଓ ସେମାନଙ୍କ ହେଲ୍‌ଥ ଚାର୍ଟ ସେ କପରି ନିଜେ ବସି ତିଆରି କରେ, ହରିବାବୁଙ୍କ ଠାରୁ ଶୁଣି ଭାରି ଖୁସି ହେଲା ଅମରେଶ ।

ଏହିଭଳି ନାନା ପ୍ରକାର କଥା ହେଉଁ ହେଉଁ ହରିବାବୁ ବାସନ୍ତୀର ବାହାଘର କଥା ପକାଇଲେ । ବିଭିନ୍ନ ସ୍ଥାନରୁ ଆସିଥିବା ତିନି ଚାରୋଟି ପ୍ରସ୍ତାବ ଅମରେଶ ଓ ତା ମାଙ୍କ ଆଗରେ ହରିବାବୁ ବଖାଣିଲେ । ଏହିସବୁ ପ୍ରସ୍ତାବ ଭିତରୁ କେଉଁଟି କଲେ ଭଲ ହେବ, ଅମରେଶର ପରାମର୍ଶ ଚାହିଁଲେ ହରିବାବୁ ।

ବାସନ୍ତୀକୁ ଦେଖିବା ଦିନ ଠାରୁ ରାଧାମଣି ଦେବୀଙ୍କ ଇଚ୍ଛା ତାକୁ ବୋହୂ କରିବା ପାଇଁ । ଅମରେଶକୁ ଯେତେବେଳେ ଟାଇଫଏଡ୍ ଜ୍ୱର ହୋଇଥିଲା, ସେତେବେଳେ ବାସନ୍ତୀର ସେବା ଶୁଶ୍ରୂଷା ଦେଖି ରାଧାମଣି ଦେବୀ ଚମତ୍କୃତ ହୋଇ ଯାଇଥିଲେ । ପ୍ରକାରାନ୍ତରେ ଅମରେଶ ମଧ୍ୟ ବାସନ୍ତୀ ଆଡ଼କୁ ଯେ ଆକୃଷ୍ଟ ନ ହୋଇଥିଲା ତା ନୁହେଁ । ସେହି ରୋଗୀ ଶୁଶ୍ରୂଷା ଭିତରେ ଅମରେଶ ଓ ବାସନ୍ତୀ ପରସ୍ପରକୁ ଆହୁରି ଭଲ ଭାବରେ ଜାଣିବାକୁ ସୁବିଧା ପାଇଥିଲେ ।

ପୁଅ ସହିତ କଥାବାର୍ତ୍ତା ହେଉଁ ହେଉଁ ରାଧାମଣି ଦେବୀ ଉପଲବ୍ଧି କରି ପାରିଛନ୍ତି ବାସନ୍ତୀ ପ୍ରତି ଅମରେଶର ଅନୁରାଗ ଅଛି, ହେଲେ ରାଧାମଣି ଦେବୀ କେବେ ଅମରେଶକୁ ଖୋଲାଖୋଲି ଭାବରେ ପଚାରି ନାହାନ୍ତି ଏ ବିଷୟରେ କଥା, ଉତ୍ତର କାଳେ ପୁଅ ଅନ୍ୟ କିଛି ଭାବିବ ।

ଅମରେଶ ତ ଧନୀଘରର ପିଲା, ପୁଣି ଉଚ୍ଚ ଶିକ୍ଷିତ, ତାକୁ ଜ୍ୱାଇଁ କରିବାର ସ୍ୱପ୍ନ କେବେ ଦେଖି ନାହାନ୍ତି ହରିବାବୁ । ସେ ବା କାହିଁକି ଏତେ ଉପରକୁ ଆଶା କରିବେ ?

ଅମରେଶ ଗୋଟି ଗୋଟି କରି ସବୁ ପ୍ରସ୍ତାବ ଶୁଣିଲା । ହରିବାବୁ ଓ ଅମରେଶ ମିଶି ଜିଲ୍ଲା ସଦର ବ୍ଲକ୍‌ର ଏସ୍: ଇ: ଓ. ବଳରାମ ବାବୁଙ୍କ ପ୍ରସ୍ତାବଟିକୁ ବାଛିଲେ । ବଳରାମବାବୁ ବି.ଏ. ପାସ କରିଛନ୍ତି ଦେଖିବାକୁ ବେଶ୍ ସୁନ୍ଦର, ଭଲ ସ୍ୱାସ୍ଥ୍ୟ, ଖରାପ ଅଭ୍ୟାସ ବୋଲି କିଛି ନାହିଁ, ତାଙ୍କ ଘରର ଅବସ୍ଥା ବେଶ୍ ସ୍ୱଚ୍ଛଳ, ଗୋବିନ୍ଦପୁର ଠାରୁ ସାତ ଆଠ ମାଇଲ ଦୂରରେ ତାଙ୍କ ଘର । ଘରେ ବାପ, ମା, ଭାଇମାନେ ଅଛନ୍ତି ତେଣୁ ସେହି ପ୍ରସ୍ତାବଟିକୁ ଚୂଡ଼ାନ୍ତ କରିବାକୁ ଅମରେଶ ଉପଦେଶ ଦେଲା ହରିବାବୁଙ୍କୁ ।

ରାଧାମଣୀ ଦେବୀ ସେଠାରୁ ସବୁ ଶୁଣୁଥିଲେ । ତାଙ୍କ ମନରେ ସନ୍ଦେହ ଦେଖାଦେଲାଣି, ସମ୍ଭବତଃ ପୁଅ ବାସନ୍ତୀକୁ ସ୍ତ୍ରୀ ଭାବରେ ଗ୍ରହଣ କରିବାକୁ ଇଚ୍ଛୁକ ନୁହେଁ । ଇଚ୍ଛା ଥିଲେ ସେ ବିବାହକୁ କିଛିଦିନ ଡେରି କରାଇ ନିଜ ପ୍ରସ୍ତାବ ପକାଇବା ପାଇଁ ମା'ଙ୍କୁ ନିଶ୍ଚୟ କହିଥାନ୍ତା ।

ହରିବାବୁ ଉଠି ଯିବା ପାଇଁ ବାହାରିଲେ ବେଳକୁ ଅମରେଶ କହିଲା, "ଦେଖନ୍ତୁ ହରିବାବୁ, ବାସନ୍ତୀ ବିଷୟରେ ବିବାହ ଖରଚ ପାଇଁ ଆପଣ ମୋଟେ

ବ୍ୟସ୍ତ ହେବେନି । ଆମ ସଂସ୍ଥା ତରଫରୁ ଏହି ବିଭାଘରରେ ଯଥେଷ୍ଟ ସାହାଯ୍ୟ ଦେବାର ବ୍ୟବସ୍ଥା ରହିଛି । ଖାଲି ବାସନ୍ତୀ ନୁହେଁ ଏହି ଗାଁର ଯେ କୌଣସି ଝିଅର ବିଭାଘର ସମସ୍ତ ଗ୍ରାମବାସୀଙ୍କ ଦାୟିତ୍ୱ ବୋଲି ଆମକୁ ବୁଝିବାକୁ ପଡ଼ିବ । ତେଣୁ ବିବାହ ଖରଚ ପାଇଁ ଆପଣ ବ୍ୟସ୍ତ ହୋଇ ପଡ଼ିବେନି । ଆପଣ ବିବାହ ଦିଗରେ ଆଗେଇ ଯାଆନ୍ତୁ । ଯାହା ଯାହା ସାହାଯ୍ୟ ଦିଆଯିବା କଥା ଠିକ ସମୟରେ ପହଞ୍ଚିଯିବ ।

ବାସନ୍ତୀର ବିଭାଘର ବେଶ ଧୂମଧାମରେ ଆରମ୍ଭ ହେଲା । ବିଭାଘରର ଯାବତୀୟ ଖରଚ ଗ୍ରାମଦାନ ସଂସ୍ଥା, ତରଫରୁ କରାଯାଉଥାଏ । ବାସନ୍ତୀକୁ ଗାଁର ପ୍ରତ୍ୟେକ ଲୋକ ନିଜର ଝିଅ ଭଳି ଦେଖୁଥିଲେ । ସେ ଏହି ଗାଁରୁ ଚାଲିଯିବ ଶୁଣିଲା ବେଳକୁ ଲୋକମାନେ ଦୁଃଖରେ ମ୍ରିୟମାଣ ହୋଇ ପଡ଼ୁଥାନ୍ତି ।

ବାସନ୍ତୀ ଏହି କେତେଦିନ ଧରି ଗ୍ରାମଦାନ ସଂସ୍ଥା ସହିତ ଏମିତି ଭାବରେ ଜଡ଼ିତ ହୋଇ ପଡ଼ିଥାଏ ଯେ ଏହି ଗ୍ରାମକୁ ଛାଡ଼ି ଚାଲିଯିବାକୁ ତାର ମନ ହେଉ ନଥାଏ । ଶ୍ୱଶୁର ଘରକୁ ଚାଲିଯିବ ବୋଲି ଭାବିଲା ବେଳକୁ ତା' ଆଖିରେ ଲୁହ ଆସି ଯାଉଥାଏ ।

ଯେଉଁ ସ୍କୁଲକୁ ସେ ଓ ତାର ବାପା ଏତେ କଷ୍ଟକରି ଗଢ଼ି ତୋଳିଛନ୍ତି, ସେ ସ୍କୁଲକୁ ସେ କେମିତି ଛାଡ଼ି ଚାଲିଯିବ ଭାବିଲାବେଳକୁ କୋହ ଉଠାଉ ଥାଏ । କ'ଣ କରିବ ବା ସିଏ ? ସମାଜର ରୀତି ତ ହେଲା ଯେଇଆ । ଝିଅ ହେଲେ ତ ବାପ ଘର ସୁଖ ଅଢ଼େଇ ଦିନ ।

ବିଭାଘର ଦିନ ଯେତେ ପାଖେଇ ଆସୁଥାଏ, ବାସନ୍ତୀର ଚନ୍ତାର ସ୍ରୋତ ସେତେ ପ୍ରଖର ହୋଇ ଉଠୁଥାଏ ।

ବିଭାଘର ଦିନ ସନ୍ଧ୍ୟା । ଗ୍ରାମବାସୀଙ୍କ ତରଫରୁ ଖର୍ଚ୍ଚ କରାଯାଇ ହରିବାବୁଙ୍କ ଘର ସାମନାରେ ବିବାହ ବେଦୀ ବନ୍ଧା ହୋଇଥାଏ । ଚାରିଆଡ଼େ ସାମିଆନା ଟଙ୍ଗା ଯାଇ ସ୍ଥାନ ଟିକୁ ସୁନ୍ଦର କରି ସଜା ଯାଇଥାଏ । ସକାଳଠାରୁ ବାଜାବାଲା ମାନେ ଆସି ବିବାହ ବାଦ୍ୟ ପରିବେଷଣ କରିବା ଆରମ୍ଭ କରି ଦେଇଥାନ୍ତି । ହରିବାବୁଙ୍କ ବନ୍ଧୁ ବାନ୍ଧବମାନେ ଦି ତିନି ଦିନ ହେଲା ଆସି ତାଙ୍କ ଘରଟିକୁ ପୂର୍ଣ୍ଣ କରିଦେଇ ଥାନ୍ତି । ରାଧାମଣୀ ଦେବୀ କେତେବେଳୁ ବାସନ୍ତୀ

ଘରେ ଯାଇ ହାଜର । ତାଙ୍କ ମନରେ ସେତେ ସନ୍ଦେହ ନ ଥାଏ, ଝିଅଟି ତାଙ୍କ ଘରକୁ ନ ଆସି ଅନ୍ୟ ଘରକୁ ଚାଲିଯାଉଛି ବୋଲି ।

ବର, ବରଯାତ୍ରୀ ମାନେ ଯଥା ସମୟରେ ଆସି ପହଞ୍ଚିଗଲେ । ବଭିନ୍ନ ବାଦ୍ୟଯନ୍ତ୍ର ଓ ଶଙ୍ଖ ହୁଳହୁଳି ଶବ୍ଦରେ ସେ ଅଞ୍ଚଳ କମ୍ପି ଉଠିଲା । ଅମରେଶ ଓ ଗାଁର ମୁଖିଆ ମୁଖିଆ ଲୋକମାନେ ବରଯାତ୍ରୀମାନଙ୍କୁ ସ୍ୱାଗତ କରିବାରେ ଲାଗିଯାଇ ଥାନ୍ତି ।

ବରଯାତ୍ରୀ ମେଳରେ ପୂର୍ବ ବି.ଡି.ଓ.ଙ୍କୁ ଦେଖି ଗ୍ରାମବାସୀ ମାନେ ଏକରକମ ରାଗି ଗଲେଣି । ଯଦିଓ ସେ ଏହି ବ୍ଲକରୁ ବଦଳି ନେଇ ଗଲେଣି, ତେବେ ସେ ସଦର ବ୍ଲକରେ ଥିବାରୁ ବରଯାତ୍ରୀ ମେଳରେ ଆସିଥାନ୍ତି ।

ଏହି ବି.ଡି.ଓ. ବେଳରେ ବାହାନ୍ତିଙ୍କୁ ନେଇ ଯେଉଁ ଗଣ୍ଡଗୋଳ ହୋଇଥାଏ । ତାକୁ ଭୁଲି ନ ଥାନ୍ତି ଗ୍ରାମବାସୀମାନେ । ତିନିବର୍ଷ ପୂର୍ବ ତଳର କଥା । ବି.ଡି.ଓ.କୁ ବରଯାତ୍ରୀ ମେଳରେ ଦେଖି ଗ୍ରାମବାସୀମାନେ ରାଗରେ ଦାନ୍ତ କଡ଼ମଡ଼ କରୁଥାନ୍ତି । ଜିଲ୍ଲା ମାଜିଷ୍ଟ୍ରେଟ୍ ଓଝା ମଧ୍ୟ ଅନ୍ୟତ୍ର ବଦଳି ହୋଇ ନ ଥାନ୍ତି । ତାଙ୍କର ଅଧୀନରେ ବର ଏସ୍, ଇ. ଓ, ଜିଲ୍ଲା ମାଜିଷ୍ଟ୍ରେଟଙ୍କ ପ୍ରରୋଚନାରେ ବି.ଡ଼ି.ଓ. ବରଯାତ୍ରୀ ମେଳରେ ଆସି ବର ପିତାଙ୍କ କାନରେ କ'ଣ କହିଦେଇ ସେଠୁ ଅନ୍ତର୍ଦ୍ଧାନ ହୋଇଗଲେ ।

ବେଦୀ କାମ ଜୋରସୋରରେ ଚାଲିଥାଏ । ପୁରୋହିତ ମାନେ ବେଦୀ ଉପରକୁ ଆସି ଗଲେଣି । ଅଳ୍ପ କିଛି ସମୟ ପରେ ବିଭାଘର ଆରମ୍ଭ ହେବ । ବରଯାତ୍ରୀମାନେ ଆସି ଖାଦ୍ୟ ପାନୀୟ ଆଦର ଯାହା ବ୍ୟବସ୍ଥା ହୋଇଥିଲା ସେମାନେ ଖାଇପିଇ ନିଜନିଜ ଭିତରେ କଥାବାର୍ତ୍ତା ହସଖୁସିରେ ମାତିଯାଇଥାନ୍ତି । ଅମରେଶ ଓ ଗାଁର ମୁଖିଆ ମୁଖିଆ ଲୋକ ମାନେ ବିଭାଘରର ସବୁ ତଦାରଖ କରିବାରେ ବ୍ୟସ୍ତ । ହଠାତ୍ ବରର ପିତା ହରିବାବୁଙ୍କୁ ସେମାନଙ୍କ ନିକଟକୁ ଡକାଇଲେ ।

ହରିବାବୁ ଘର ଭିତରେ ଥିଲେ, ଡ଼ାକରା ପାଇ ବର ପିତାଙ୍କ ପାଖରେ ହାଜର ହୋଇଗଲେ । ବରପିତା ଓ ଆଉ ତିନି ଚାରି ଜଣ ହରିବାବୁଙ୍କୁ ଘେରିଯାଇ ପଚାରିଲେ, "କଣ ହରିବାବୁ, ଆମେ ଆପଣଙ୍କ ଝିଅ ବିଷୟରେ କ'ଣ ସବୁ ଶୁଣିବାକୁ ପାଉଛୁ, ଏହା କଣ ସତ ?"

ହରିବାବୁ ଏଭଳି କଥାବାର୍ତ୍ତା ଶୁଣି ତାଟଙ୍ଗା ହୋଇଗଲେ, "କ'ଣ ଆଜ୍ଞା, ଆପଣମାନେ କ'ଣ ଶୁଣିବାକୁ ପାଇଲେ ?"

"ଆମେ ଯାହା ଶୁଣୁଚୁ, ସେ କଥା କହିବା ଭଲ ନୁହେଁ । ଆପଣ ସେ କଥା ଆମକୁ ପୂର୍ବରୁ କହିଥିଲେ ଆମେ ଏ ପ୍ରସ୍ତାବରେ ଆଗେଇ ନଥାନ୍ତୁ ।

ଆପଣ ସେକଥା ଲୁଚାଇ ଭଲ କରି ନାହାନ୍ତି ହରିବାବୁ ।"

କ'ଣ ଆଜ୍ଞା କୁହନ୍ତୁ । ମୁଁ ତ ଜାଣିପାରୁନି, ମୁଁ କେଉଁ କଥା ଆପଣମାନଙ୍କ ଠାରୁ ଲୁଚାଇଲି ।"

"ଆପଣ ସବୁ ଜାଣିକରି ଯଦି କହିବେ କିଛି ଜାଣି ନାହାନ୍ତି ତେବେ ଆମେ ନାଚାର ।"

"ଆପଣମାନେ ବିଶ୍ୱାସ କରନ୍ତୁ, ଆପଣମାନେ କ'ଣ କହିବାକୁ ଚାହୁଁଛନ୍ତି, ମୁଁ କିଛି ଜାଣିନି ।"

ଆପଣଙ୍କ ଝିଅ ସହିତ ଆମ ଜିଲ୍ଲାମାଜିଷ୍ଟ୍ରେଟ ଓଝା ସାହେବଙ୍କର କାଳେ ଗୁପ୍ତ ପ୍ରଣୟ ଅଛି ?"

"ଆଁ" ମୋ ଝିଅ ସହିତ ? ଜିଲ୍ଲାମାଜିଷ୍ଟ୍ରେଟଙ୍କର !" ଆପଣମାନେ କ'ଣ କହୁଛନ୍ତି ମୁଁ ବୁଝିପାରୁନି ।"

'ହଁ, ହଁ, ଆମେ ତାହାର ପ୍ରମାଣ ବର୍ତ୍ତମାନ ପାଇଛୁଁ । ଆଜିକୁ ତିନିବର୍ଷ ତଳେ ଆପଣଙ୍କର ମଧୁପୁର ଡ଼ାକବଙ୍ଗଳାରେ ଦିନେ ରାତି ନଅଟା ବେଳେ ଆପଣଙ୍କ ଅବିବାହିତା ଝିଅ ଜିଲ୍ଲାପାଳଙ୍କ ପାଖକୁ ଏକାକିଆ ଯିବାର ଉଦ୍ଦେଶ୍ୟ କଣ ଥାଇପାରେ ?"

ଏ କଥା ଶୁଣି ହରିବାବୁଙ୍କ ମଥା ଗରମ ହୋଇଗଲା । ସେ ଥର ଥର ଗଳାରେ କହିଲେ 'ହଁ, ଯାଇଥିଲା, ମହିଳା ସମିତିର ସେକ୍ରେଟେରୀ ଭାବରେ ବାସନ୍ତୀକୁ ସେ ଡ଼କାଇ ଥିଲେ, ମହିଳା ସମିତିର କାଗଜପତ୍ର ତନଖି ପାଇଁ ।"

ଯଦି କାଗଜପତ୍ର ତନଖି କଥା, ତେବେ ଆପଣମାନେ ଝିଅଟିକୁ ଏକା ନ ପଠାଇ ତା' ସଙ୍ଗରେ ତ ଜଣେ ଦି'ଜଣ ପୁରୁଷ ଲୋକ ପଠାଇ

ପାରିଥାନ୍ତେ ? ତାଙ୍କୁ ଏକା ପଠାଇ ଦେବାର ଉଦ୍ଦେଶ୍ୟ କ'ଣ ଜଣା ପଡୁନି ?" ହେଉ, ଏ ବାହାଘର ବନ୍ଦ କରନ୍ତୁ । ଆମେ ଏ ବାହାଘର କରି ପାରିବୁ ନାହିଁ ? ଗୋଟାଏ କୁଳଟାକୁ ମୁଁ ବୋହୂ କରି ନେବାକୁ ପ୍ରସ୍ତୁତ ନୁହେଁ ।

ଅମରେଶ ଏ ସବୁ କଥାବାର୍ତ୍ତା ଶୁଣି କିଛି ବୁଝିପାରୁ ନ ଥାଏ । ଗାଁ ଲୋକମାନେ ବରପିତାଙ୍କୁ ଏହା ମିଥ୍ୟା ବୋଲି ଯେତେ ବୁଝାସୁଝା କଲେହେଁ ସେ ବୁଝିବାକୁ ପ୍ରସ୍ତୁତ ନ ଥିଲେ । ଚାଲି ଯାଉଥିବା ବର ଓ ବରଯାତ୍ରୀ ଦଳକୁ ବୁଝାଇବାକୁ ଚେଷ୍ଟା କଲି ଅମରେଶ । ସେମାନେ ଗଲାବେଳେ କହିଦେଇଗଲେ "ଦେଖନ୍ତୁ ଅମରେଶ ବାବୁ, ଆପଣ ସେ ସବୁ କିଛି ଜାଣିନାହାନ୍ତି । ସେ ଝିଅର ଚରିତ୍ର ନେଇ ଆମ୍ଭମାନଙ୍କର ଯଥେଷ୍ଟ ସନ୍ଦେହ ଅଛି । ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କର ସେହି ଝିଅ ସହିତ ଗୁପ୍ତ ପ୍ରଣୟ ଅଛି ବୋଲି ଆମେ ସ୍ପଷ୍ଟ ପ୍ରମାଣ ପାଇଛୁଁ ।

ଏହି ଗୋଳମାଳ ଲଗାଇଦେଇ ବି. ଡି. ଓ. କେତେବେଳୁ ସେଠୁ ଖସି ଚାଲିଗଲେଣି କାହାରିକୁ ଜଣାନାହିଁ । ଏହି ଗୋଳମାଳ ମୂଳରେ ଯେ ସେହି ବଦମାସ୍ ବି. ଡି. ଓ. ଅଛି ଏହା ପରିଷ୍କାର ଜଣାପଡ଼ିଗଲା । ଗ୍ରାମବାସୀମାନେ ବି.ଡି.ଓ.ଙ୍କୁ ଖୋଜିବାବେଳକୁ ସେ କେତେବେଳୁ ଅନ୍ତର୍ଦ୍ଧାନ ହୋଇଗଲେଣି । ଅମରେଶ, ଗ୍ରାମବାସୀ, ହରିବାବୁ, ବରପକ୍ଷଙ୍କ ହାତ ଧରି ଯେତେ ଅଟକା-ଇଲେ ହେଁ ସେମାନେ କଥା ନ ମାନି ବରକୁ ନେଇ ଚାଲିଗଲେ ।

ବାସନ୍ତୀ କୁଳଟା, ବାସନ୍ତୀ ଅସତୀ, ବାସନ୍ତୀ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ରକ୍ଷିତା ବୋଲି ହରିବାବୁଙ୍କ ଘରେ ରଷ୍ଟ୍ର ହୋଇଗଲା । ସେଥିପାଇଁ ବର ଓ ବରଯାତ୍ରୀ-ମାନେ ଫେରିଗଲେ ଶୁଣି ହରିବାବୁଙ୍କ ସ୍ତ୍ରୀ ବେହୋସ ହୋଇଗଲେ । ଗାଁର ଅନ୍ୟ ସ୍ତ୍ରୀଲୋକ ମାନେ ପାଟିକରି କନ୍ଦାକଟା ଆରମ୍ଭ କରିଦେଲେ । ବାସନ୍ତୀ ଭଳି ଝିଅ ନାଁରେ ଦୁର୍ନାମ, ସଜ ଫୁଲରେ ପୋକ ପକାଇଲା ଭଳି ହେବ କ'ଣ ଏହା ସମ୍ଭବ ? ବାସନ୍ତୀ ଦେଖିଲା, ଏତେବଡ଼ ମିଛ ଦୁର୍ନାମ ନେଇ ସେ କ'ଣ ବଞ୍ଚି ପାରିବ ?

ସେ ବିବାହ ବେଦୀକୁ ଆସୁଥିବା ପୋଷାକ ପିନ୍ଧି ଘରୁ ବାହାରି ଗଲା ସମସ୍ତଙ୍କ ଅଜାଣତରେ । ଲୋକେ କାନ୍ଦ ବୋବାଳିରେ ବ୍ୟସ୍ତ । ବାସନ୍ତୀ କୁଆଡ଼େ ଗଲା ସେଆଡ଼କୁ କାହାରି ଲକ୍ଷ୍ୟ ନାହିଁ । ସେ ଘରୁ ବାହାରି ଅନ୍ଧାରରେ ଧାଇଁଲା ଗାଁ ପୋଖରୀ ଆଡ଼େ, ପୋଖରୀରେ ଝାସ ଦେଇ ଆତ୍ମହତ୍ୟା କରିବ ବୋଲି ।

ହଠାତ୍ ବାସନ୍ତୀ କୁଆଡ଼େ ଗଲବୋଲି ଖୋଜା ପଡ଼ିଲା । ସମସ୍ତେ ତାକୁ ଲଣ୍ଠନ, ବଣ୍ଡି ଧରି ଖୋଜିବାକୁ ବାହାରିଗଲେ । ଅମରେଶ ଧରିନେଲା, ଏହି କୁତ୍ସାରଟନା ଶୁଣି ବାସନ୍ତୀ ନିଶ୍ଚୟ ଆତ୍ମହତ୍ୟା କରିବା ପାଇଁ ଗାଁର ବଡ଼ ପୋଖରୀ ଆଡ଼କୁ ଧାଇଁଥିବ । ବାସନ୍ତୀ କେଉଁ ପ୍ରକୃତିର ଝିଅ ଅମରେଶକୁ ଭଲ ରୂପେ ଜଣା । ଏତେ ବଡ଼ ମିଥ୍ୟା ଅପବାଦ ତା ମୁଣ୍ଡରେ ଲଦି ଦେଲେ ସେ କ'ଣ ଆଉ ଜୀବନ ଧରି ରହିପାରିବ ?

ଅମରେଶ ଏହି ଆଶଙ୍କା କରି ଦୌଡ଼ିଲା ଗାଁର ସେଇ ପୋଖରୀ କୂଳକୁ । ସେ ବାସନ୍ତୀ, ବାସନ୍ତୀ ଡ଼ାକି ସେଇ ପୋଖରୀ ଆଡ଼େ, ଧାଇଁଛି, ଗାଁର ଅନ୍ୟ ଲୋକମାନେ ତା' ପଛରେ ଧାଇଁଥାନ୍ତି । ଅମରେଶ ଯାଇ ପୋଖରୀକୂଳରେ ପହଞ୍ଚିଛି କି ନାହିଁ, ବାସନ୍ତୀ ଏକ ଲମ୍ଫ ପ୍ରଦାନ କଲା ପୋଖରୀ ଭିତରକୁ । ଅମରେଶ ଆଉ ଅପେକ୍ଷା ନକରି ତା ପଛରେ ପୋଖରୀକୁ ଲମ୍ଫ ପ୍ରଦାନ କଲା । ପୋଖରୀର ଗଭୀର ଜଳରେ ବୁଡ଼ି ଯାଉଥିବା ବାସନ୍ତୀକୁ ବହୁ କଷ୍ଟରେ ଉଦ୍ଧାର କରି କୂଳକୁ ନେଇ ଆସିଲା ଅମରେଶ ।

ସେତେବେଳକୁ ବାସନ୍ତୀର ଚେତା ନ ଥାଏ । ବାସନ୍ତୀର ପାଟିବାଟେ ପାଣି ତା ପେଟ ଭିତରେ ପଶିଯାଇ ଥାଏ । ଗାଁର ଅନ୍ୟମାନେ ସେତେବେଳକୁ ସେଠାରେ ପହଞ୍ଚି ଗଲେଣି । କେତେ ଜଣ ଲୋକ ବାସନ୍ତୀକୁ ଶୁଆଇ ଦେଇ ତା' ପେଟ ଭିତରୁ ପାଣି ବାହାର କରିବାକୁ ଲାଗିଗଲେ ।

କିଛି ସମୟ ପରେ ବାସନ୍ତୀର ଚେତା ଆସିଲା । ସେତେବେଳକୁ ହରିବାବୁ ଓ ତାଙ୍କ ସ୍ତ୍ରୀ ସେଠାରେ ଆସି ପହଞ୍ଚି ଗଲେଣି । ସେମାନେ ଟେକାଟେକି କରି ଝିଅକୁ ଘରକୁ ନେଲେ । ଯେଉଁ ଝିଅ ମଙ୍ଗୁଳା ସରିଛି, ସେ ଝିଅକୁ ବାହାହେବ କିଏ ? ବର୍ତ୍ତମାନ ସମସ୍ତଙ୍କ ମୁଣ୍ଡରେ ଚିନ୍ତା ପଶିଲା କ'ଣ କରାଯିବ ?

ରାଧାମଣୀ ଦେବୀ ଏହି ଅଧଘଣ୍ଟାଏ ଭିତରେ ତାଙ୍କ ଆଖି ଆଗରେ ଛୁପେଇ ପରଦା ଭଳି କ'ଣ ସବୁ ଘଟି ଗଲା ଭାବି ପାରିଲେନି । ମଙ୍ଗୁଳା ହୋଇଥିବା ଝିଅଟି ତ ଅବିବାହିତା ରହି ପାରିବନି । ସେ ଅମରେଶକୁ ଏକାନ୍ତରେ ଡାକିନେଇ କହିଲେ, "ବାପ ଅମରେଶ ତୁ ତ ବାସନ୍ତୀକୁ ଭଲ

ଭାବରେ ଜାଣୁ । ତା ଉପରେ ଏହି ଯେଉଁ ଅପବାଦ ଲଦି ଦିଆଯାଇଛି ମୋତେ ପୁରାପୂରି ମିଥ୍ୟା ବୋଲି ଜଣାପଡ଼ୁଛି । ତୋର ଏହି ବେଳରେ କିଛି କର୍ତ୍ତବ୍ୟ ଥିଲି ବୋଲି ମୋର ମନେ ହେଉଛି । ତୁ ଯଦି ରାଜି କହ, ମୁଁ ହରିବାବୁଙ୍କୁ ପ୍ରସ୍ତାବ ଦେବି । ଝିଅଟିକୁ ତୁ ଯେତେବେଳେ ମୃତ୍ୟୁମୁଖରୁ ଫେରାଇ ଆଣିଛୁ, ତାକୁ ଗ୍ରହଣ କରି ତା'କୁ ଏ ଅପବାଦରୁ ରକ୍ଷାକର ବାପ ।"

ବାସନ୍ତୀର ବିଭାଘର ଅମରେଶ ସହିତ ସମ୍ପନ୍ନ ହୋଇଗଲା । ଗାଁ ସାରା ଚାରିଆଡ଼େ ଆନନ୍ଦର ଢେଉ ଖେଳିଗଲା । ବାସନ୍ତୀଟି କେଡ଼େ ସୌଭାଗ୍ୟବତୀ ସତେ ? ଅମରେଶ ଭଳି ସ୍ୱାମୀ ପାଇଲା । ଗାଁ ଲୋକେ ଅମରେଶର ଏଭଳି ଉଦାରତା ଦେଖି ଧନ୍ୟ ଧନ୍ୟ କଲେ । କାହିଁ ଅମରେଶ, କାହିଁ ବାସନ୍ତୀ ? ସେ ଉଦାର ହୋଇ ନ ଥିଲେ ବାସନ୍ତୀକୁ କ'ଣ ସ୍ତ୍ରୀ ଭାବରେ ଗ୍ରହଣ କରିଥାନ୍ତେ ? ବିଭାଘରରେ ଅମରେଶ ଯେ ଅସୁଖୀ ତା ନୁହେଁ । ଗୋବିନ୍ଦପୁରକୁ ଆସିଲା ଦିନଠାରୁ ଅମରେଶ ବାସନ୍ତୀର ସୌନ୍ଦର୍ଯ୍ୟରେ ଖାଲି ମୁଗ୍‌ଧ ହୋଇନି, ତାର ସରଳତା ଓ ନିଷ୍କପଟତାରେ ସେ ତା ଆଡ଼କୁ ଅତ୍ୟଧିକ ଟାଣି ହୋଇଯାଇଛି ।

ରାଧାମଣି ଦେବୀଙ୍କର ଖୁବ ଆନନ୍ଦ ବାସନ୍ତୀ ଭଳି ଝିଅକୁ ସେ ବୋହୂ ଭାବରେ ପାଇଛନ୍ତି ବୋଲି । ସେ ମନେ ମନେ ଅମରେଶ ପାଇଁ ଯେତେ ଝିଅ ଦେଖିଥିଲେ କେହି ବାସନ୍ତୀ ପାସଙ୍ଗରେ ପଡ଼ିବେନି । ଝିଅଟି ଅଳ୍ପପାଠ ପଢ଼ିଥିଲେ କଅଣ ହେବ, ଅମରେଶକୁ ଜୀବନରେ ସୁଖୀ କଲାଭଳି ଝିଅଟିଏ ।

ଅମରେଶର ବିଭାଘର ପରେ ରାଧାମଣି ଦେବୀ ଖୁସି ହୋଇଥିଲେ ସିନା, କିନ୍ତୁ ତାଙ୍କ ମନ ଭିତରେ ଏକ ପ୍ରକାର ଡ଼ର ଉଙ୍କି ମାରି ଉଠୁଥାଏ । ଅମରେଶର ବାପାଙ୍କୁ ନ ପଚାରି, ତାଙ୍କ ମତକୁ ନ ନେଇ ସେ ପୁଅକୁ ବିଭା କରେଇଥିବାରୁ ସେ ମନେ ମନେ ଭୟ କରୁଥିଲେ କାଳେ ଅମରେଶ ବାପା ତାଙ୍କର ଏଭଳି କାମକୁ ନାପସନ୍ଦ କରିବେ ବୋଲି । ପୁଅ ଉପରେ ତ ମୂଳରୁ ଏତେ ରାଗ, ପୁଣି ସେ ନ ପଚାରି ବିଭା ହୋଇଥିବାରୁ ସେହି ରାଗ ଯେ ପୁଣି କେତେ ଗୁଣକୁ ବୃଦ୍ଧି ପାଇଥିବ କଳନା କରିପାରୁ ନଥାନ୍ତି ରାଧାମଣି ଦେବୀ ।

ବିଭାଘର ଗୋଳମାଳ ତୁଟାଇ ଅମରେଶର ପୁରାପୁରି ଦାୟିତ୍ୱ ବାସନ୍ତୀ ହାତରେ ଦେଇ ରାଧାମଣି ଦେବୀ ମୁଙ୍ଗେରକୁ ଫେରି ଗଲେ ।

ଅମରେଶ କେଉଁ ପରିସ୍ଥିତିରେ ପଡ଼ି ବାଘ ହେଲା, ତାଙ୍କୁ ଖବର ଦେଇ ତାଙ୍କ ଅନୁମତି ନେବା କଭଳି ସମ୍ଭବ ନ ଥିଲା, ସେ ସମ୍ପର୍କରେ ସ୍ୱାମୀଙ୍କୁ ଅବଗତ କରାଇବା ଥିଲା ତାଙ୍କର ଉଦ୍ଦେଶ୍ୟ ।

ରାଧାମଣି ଦେବୀ ସ୍ୱାମୀଙ୍କ ପାଖରେ ପହଞ୍ଚିବା ପୂର୍ବରୁ ବିପିନ ବାବୁ ପୁଅର ବାଘଘର କଥା ଖବର ପାଇ ସାଇଥିଲେ । ପୁଅ ତ ପରୁରିଲାନ ଗୁରୁ, ତାଙ୍କ ନିଜ ସ୍ତ୍ରୀ ବି ଥରିଏ ପଚାରିଲେନ ? ଏତେ ବଡ଼ କାମ ତାଙ୍କୁ ନ ଜଣାଇ କରି ଥିବାରୁ, ମନେ ମନେ ବଡ଼ କ୍ଷୋଭ କଲେ ବିପିନ ବାବୁ । ରାଧାମଣି ଦେବୀ ଘରେ ପହଞ୍ଚିଛନ୍ତି କି ନାହିଁ, ବିପିନ ବାବୁଙ୍କର ଗାଳି ଆରମ୍ଭ ହୋଇଗଲା । ପୁଅର ଏହିଭଳି ମନମୁଖୀ କାରବାର ପାଇଁ ସେ ତାଙ୍କୁ ସବୁଦିନ ପାଇଁ ପୁଅ ତାଲିକାରୁ କାଟି ଦେଇଥିଲେ, ଏବେ ତାଙ୍କ ସ୍ତ୍ରୀ ମଧ୍ୟ ସେହି ପଥର ପଥିକ ହେଲେ । ତାଙ୍କ ପାଇଁ ଖାଲି ଅମରେଶ ମରିନି , ରାଧାମଣୀ ଦେବୀ ମଧ୍ୟ ମରି ଯାଇଛନ୍ତି ।

## ( ସାତ )

ଗାଁରେ ସାଧାରଣ ସଭା ବସିଥାଏ । ଗାଁର ଘରଦ୍ୱାର ଗୁଡ଼ିକୁ କେମିତି ନୂତନ ଭାବରେ ଏକ ଯୋଜନାନୁଯାୟୀ ତିଆରି କରାଯିବ, ସେଇଥାଏ ଆଲୋଚନାର ବିଷୟ ବସ୍ତୁ । ଆଠଗୋଟି ଗାଁକୁ ନୂଆ ଢାଞ୍ଚରେ ଗଢ଼ିବାକୁ ହେଲେ ଅନ୍ତତଃ ପକ୍ଷେ ପାଞ୍ଚବର୍ଷରୁ କମ୍ ସମୟ ଲାଗିବ ନାହିଁ ।

ଗାଁଟି କେଉଁ ଭାବରେ ନୂଆ ହୋଇ ତିଆରି ହେବ, ତାହାର ଏକ ନକ୍ସା ତିଆରି କରିଥାଏ ନିଜେ ଅମରେଶ । ଏ ପର୍ଯ୍ୟନ୍ତ ଗାଁର ଲୋକମାନେ ରହି ଆସିଥିଲେ ନିଜ ନିଜ ଘରେ । ଘର ଗୁଡ଼ାକ ଚାଳଘର । ନିଆଁ ପାଣିର ଡ଼ର ଖୁବ୍ ବେଶି । ଘରଗୁଡ଼ିକ ଯୋଜନା ଅନୁଯାୟୀ ତିଆରି ହୋଇ ନ ଥିବାରୁ ପବନ ଚଳାଚଳ ଭଲ ନୁହେଁ । ଗୋଟିଏ ଗୋଟିଏ ଗାଁରେ ଚାରୋଟି ପାଞ୍ଚୋଟି ଘରକୁ ଛାଡ଼ିଦେଲେ ଅନ୍ୟ ଘରଗୁଡ଼ାକ ଘର ପଦବାଚ୍ୟ ନୁହେଁ; ମାତ୍ର କୁଡ଼ିଆ ଖଣ୍ଡେ ଖଣ୍ଡେ । କେଉଁ କୁଡ଼ିଅର କବାଟ ନାହିଁ ତ କାହାର ଝରକା ନାହିଁ ତ କାହା ଚାଳରେ ଛଅଣ ନାହିଁ ।

ଘରଗୁଡ଼ିକ ପୁଣି ଏଠି ସେଠି ହୋଇ ପୁରୁଣାକାଳିଆ ଢାଞ୍ଚରେ ତିଆରି ହୋଇଛି । ଗାଁ ଗୁଡ଼ିକୁ ଏକ ଯୋଜନା ଅନୁଯାୟୀ ତିଆରି କରିବା ପାଇଁ ଏକ ପ୍ରସ୍ତାବ ଆଣିଲା ଅମରେଶ । ପାଞ୍ଚବର୍ଷ ଭିତରେ ଆଠ ଗୋଟି

ଗାଁର ଘରଗୁଡ଼ିକ ତିଆରି ହେବାର ଯୋଜନା ଓ ନକ୍ସା ସେହି ସଭାରେ ଉପସ୍ଥାପିତ କଲା । ଗାଁ ଭିତରେ ଯେଉଁ ସୁବିସ୍ତୃତ ପଡ଼ିଆ ଓ ଉଚ୍ଚ ଜମି ରହିଛି, ସେହିଠାରେ ଘରଗୁଡ଼ିକ ତିଆରି ହେବା ଉଚିତ ବୋଲି ଯୁକ୍ତି ବାଢ଼ିଲା ।

ଅମରେଶର ପ୍ରସ୍ତାବ ଉପରେ ଆଲୋଚନା ଚାଲିଲା । ଗାଁର ମୁଖିଆ ମୁଖିଆ ଲୋକେ କିଏ କେତେ ପ୍ରକାର ପ୍ରସ୍ତାବ ଦେଲେ । ପ୍ରତିବର୍ଷ ହାରାହାରି କେତୋଟି ଘର ତିଆରି କରିବାକୁ ପଡ଼ିବ ତାହା ଠିକ୍ ହେଲା । ତା ନ ହେଲେ ପାଞ୍ଚବର୍ଷ ଭିତରେ ଏହି ଆଠ ଗୋଟି ଗାଁର ସମସ୍ତଙ୍କ ପାଇଁ ନୂଆ ଘର ତିଆରି ହୋଇ ପାରିବନି ।

ଗାଁ ମଧ୍ୟରେ ନୂଆ ରାସ୍ତା ତିଆରି ହେବ, ରାସ୍ତା ଦୁଇ ପାଖରେ ଘର ଗୁଡ଼ିକ ରହିବ । ପ୍ରତ୍ୟେକ ଘର ସାମନାରେ ଛୋଟ ଫୁଲ ଉଦ୍ୟାନଟିଏ ରହିବ । ଘର ପଛ ପାଖରେ ପନିପରିବା ଲଗିବା ଭଳି ବଗିଚାଟିଏ ରହିବ । ପ୍ରତି ଚାରିଗୋଟି ଘର ପାଇଁ ଗୋଟିଏ ଲେଖାଏଁ କୂଅ ରହିବ ।

ବହୁ ଆଲୋଚନା ପରେ ଯେତେବେଳେ ଏହି ଯୋଜନା ସମସ୍ତଙ୍କର ସ୍ୱୀକୃତି ପାଇଲା, ଶୁଭଦିନ ଦେଖି କାମ ଆରମ୍ଭ ହେବା ଠିକ୍ ହେଲା । ଘର ଗୁଡ଼ିକ ମାଟିରେ ତିଆରି ନ ହୋଇ ଇଟାରେ ତିଆରି ହେବ । ଘର ଛଣରେ ନ ହୋଇ ଟାଇଲରେ ହେବ । ଏ ଭଳି ଘର କଲେ ଆଉ ନିଆଁ ପାଣିର ଭୟ ନ ଥିବ ।

ଅମରେଶ ଦେଖିଲା ଏଥିପାଇଁ ଛୋଟ ଟାଇଲ କାରଖାନାଟିଏ ଗାଁ ମୁଣ୍ଡରେ ବସାଇଦେଲେ ଆଉ ବାହାରୁ ଟାଇଲ କିଣିବା ଦରକାର ପଡ଼ିବନି । ପାଞ୍ଚବର୍ଷ ଭିତରେ ଯେତିକି ଟାଇଲ ଆଠଗୋଟି ଗାଁ ପାଇଁ ଦରକାର ହେବ, ସବୁ ଟାଇଲ ଏହି କାରଖାନାରେ ତିଆରି ହୋଇପାରିବ ।

ଲୋକମାନଙ୍କୁ ବାହାରକୁ ପଠାଇ ଏହି ଟାଇଲ ତିଆରି ପାଇଁ ତାଲିମ ଦେଇ ନେଇ ଆସିଲା । ଏହି ଘର ତିଆରିର ଦାୟିତ୍ୱ ଅନ୍ୟମାନେ କାଳେ ଠିକ୍ ଭାବରେ ତୁଲାଇ ପାରିବେ ନ ଭାବି ଅମରେଶ ନିଜେ ନେଲା । ଗୋଟିଏ ଗୋଟିଏ ଗାଁ ମାଷ୍ଟର୍ ପ୍ଲାନ୍ ହୋଇ ଗାଁର ସବୁଠାରୁ ଉଚ୍ଚା ଯାଗାରେ ଘର ଓ ରାସ୍ତା ତିଆରିର ଚିହ୍ନମାନ ଦିଆଗଲା ।

ଏହି ଘରଗୁଡ଼ାକ ତିଆରି ହୋଇଗଲେ ଲୋକମାନେ ପୁରୁଣା ଘରେ ଭାଙ୍ଗି ଦେଇ ନୂଆ ଘରେ ରହିବେ । ଏଇ ଘର ତିଆରି ପାଇଁ ଯେଉଁ ଇଟା ଦରକାର, ତାହା ମଧ୍ୟ ଗାଁର ଗୋଟିଏ ମୁଣ୍ଡରେ ତିଆରି ହେଲା । ନିଜର ସମ୍ବଳ ଓ ଲୋକମାନଙ୍କ ଚଳିବା ସୁବିଧା ଦେଖି ଘରଗୁଡ଼ିକର ଆକାର ଠିକ୍ ହେବା ସ୍ଥିର ହୋଇଥାଏ ।

ଗାଁର ଗୃହ ପାଇଁ ସର୍ବନିମ୍ନ ଶ୍ରମିକଙ୍କୁ ବାଦ ଦେଇ ଅନ୍ୟ ସବୁ ଶ୍ରମିକ ଲାଗିଗଲେ ଘର ତିଆରିରେ । ନିଜେ ନିଜ ଘର ତିଆରି କରୁଛନ୍ତି ବୋଲି ଜାଣି ଶ୍ରମିକମାନେ ଉତ୍ସାହିତ ହୋଇ ଆଠଘଣ୍ଟା ଯାଗାରେ ଖଟିଲେ ଦଶ ଘଣ୍ଟା, କେଉଁ କେଉଁ ଦିନ ବାରଘଣ୍ଟା ।

ପାଞ୍ଚବର୍ଷ ଭିତରେ ଏହି ଆଠ ଖଣ୍ଡି ଗାଁର ରୂପ ପୂରାପୂରି ବଦଳିଗଲା । ସମସ୍ତଙ୍କର ବର୍ତ୍ତମାନ ଟାଇଲ ଘର । ରାସ୍ତା ଦୁଇ ପାଖରେ ଧାଡ଼ିକୁ ଧାଡ଼ି ଘର । ପ୍ରତ୍ୟେକ ଘର ସାମନାରେ ଫୁଲ ବଗିଚା, ପଛଆଡ଼େ ପନିପରିବା ଗଛ ଲାଗିଛି । ପ୍ରତ୍ୟେକଙ୍କ ଘରେ ବରପାଲ ପାଇଖାନା । ଲୋକେ ଆଉ ଗାଁ ବାଲିକୁ ଝାଡ଼ା ଫେରିବା ପାଇଁ ଯିବେନି । ଏହା ଫଳରେ ଗାଁର ବାୟୁମଣ୍ଡଳ ଯେଉଁ ଦୂଷିତ ହେଉଥିଲା ତାହା ବନ୍ଦ ହେଲା । ଏହି ଗାଁ ଗୁଡ଼ିକୁ ଯେ ଦେଖିଲା ଘରଗୁଡ଼ିକର ସୌନ୍ଦର୍ଯ୍ୟରେ ମୁଗ୍ଧ ନ ହୋଇ ରହିପାରିଲାନି ।

ଅମରେଶ ଓ କାର୍ଯ୍ୟକାରୀ ସମିତିର ସଭ୍ୟମାନେ ଜାଣି ନ ଥିଲେ ଘରଗୁଡିକ ତିଆରି ପାଇଁ ଅଟକଳଠାରୁ ଏତେ ଅଧିକ ଖରଚ ଲାଗିଯିବ । ସେମାନେ ମୂଳରୁ ଯାହା ଅଟକଳ କରିଥିଲେ, ତା'ଠାରୁ ଢେର ଅଧିକ ଖରଚ ହୋଇଗଲା ଏହି ଘର ତିଆରିରେ ।

ନିଜର ଦୁଧ, କୁକୁଡ଼ା, ଚେଳି, ମାଛ, ପନିପରିବା, ତୈଳବୀଜ, ଝୋଟ, ଆଖୁ ଆଦିରୁ ପାଞ୍ଚବର୍ଷ ଭିତରେ ଯେତେ ଯାହା ଆୟ ହେଲା, ସବୁ ପାଣି ଭଳି ଖରଚ ହୋଇଗଲା ଗାଁ ଗୁଡ଼ିକର ରାସ୍ତା ଓ ଘର ତିଆରିରେ । ଶେଷ ଆଡ଼କୁ ହାତରେ ଯଥେଷ୍ଟ ମୂଳଧନ ନ ରହିବାରୁ ଅମରେଶ କାର୍ଯ୍ୟକାରୀ କମିଟିର ମତ ନେଇ ଶ୍ରମିକମାନଙ୍କର ମଜୁରୀହାର କମାଇବାକୁ ବାଧ୍ୟ ହେଲା । ଶ୍ରମିକମାନେ ଏଥିରେ ଆପତ୍ତି କରି ନ ଥିଲେ । କାରଣ ସେମାନେ ଜାଣିଥିଲେ ସେମାନେ ଯାହା କରୁଛନ୍ତି ନିଜ ପାଇଁ, ସମ୍ବଳ ଅଭାବରୁ ଯଦି ମଜୁରୀ କମିଲା, ତେବେ ଦୁଃଖ କରିବାର କିଛି ନାହିଁ । ଆସନ୍ତା ବର୍ଷକୁ ହୁଏତ ତାହା ଦୂର ହୋଇଯିବ ।

ଆଠ ଗୋଟି ଗାଁର ସବୁ ଘର ଯେଉଁଦିନ ଭିଆରି ସରିଲା, ସେହିଦିନ ଅମରେଶର ପୁଅଟିଏ ହେଲା । ବିବାହ ପୂର୍ବରୁ ଅମରେଶ ନିଜ ଚଳିବା ପାଇଁ ଗ୍ରାମଦାନ ସଂସ୍ଥାଠାରୁ ଏକ ଷ୍ଟେଟଖୋଟିଆ ଭତ୍ତା ପାଉଥିଲା । ବିବାହ ପରେ ବାସନ୍ତୀ ସ୍କୁଲର ଶିକ୍ଷୟିତ୍ରୀ ହୋଇଥିବାରୁ ସେ ସରକାରଙ୍କଠାରୁ ଦରମା ପାଏ । ସେ ଯାହା ଦରମା ପାଏ, ଅମରେଶର ଭତ୍ତାଠାରୁ ଢେର ଅଧିକ ।

ବାସନ୍ତୀର ରୋଜଗାର ଦେଖି ଅମରେଶ ଆଉ ଭତ୍ତା ନେବା ବନ୍ଦ କରି-ଦେଲା । ତା' ମତ ବାସନ୍ତୀର ଦରମାରେ ସେ ତ ଚଳିପାରିବ, ଆଉ ଗୋଟାଏ ଭତ୍ତା କ'ଣ ହେବ ତା'ର ? ସେହି ଭତ୍ତା ଗାଁ ଲୋକଙ୍କ ଉନ୍ନୟନ କାମରେ ଲଗିଲେ କିଛି ଲାଭ ଅଛି । ପୁଣି ପୁରି ଅବୈତନିକ କର୍ମୀ ଭାବରେ ସେ ଗାଁ ପାଇଁ ନ ଖଟିବ କାହିଁକି ? ପୁଅଟିର ଏକୋଶିଆ ବେଶ୍ ଆଡ଼ମ୍ବର ସହକାରେ କରିବା ପାଇଁ ଗାଁ ଲୋକଙ୍କର ଇଚ୍ଛା ଥିଲେ ହେଁ ଅମରେଶ ସେମାନଙ୍କୁ ସେଥିରୁ ନିବର୍ତ୍ତାଇଲା । ଗାଁର ଆର୍ଥିକ ପରିସ୍ଥିତି ଭଲ ନ ଥିବାରୁ ସେମାନଙ୍କୁ ସେଥିରୁ ନିବର୍ତ୍ତାଇବା ଛଡ଼ା ଅନ୍ୟ ଉପାୟ ନ ଥିଲା ତା'ର ।

ବାସନ୍ତୀ ପୁଅ ଏକୋଶିଆ ପାଇଁ ନିଜ ଦରମାରୁ କାଟିକୁଟି ଯାହା ରଖିଥିଲା, ତାକୁ ମଧ୍ୟ ଖରଚ କରିବାକୁ ବାରଣ କଲା ଅମରେଶ ।

ଆସନ୍ତା ବର୍ଷକୁ ଗାଁର ଆର୍ଥିକ ପରିସ୍ଥିତି ଭଲ ହେଲେ ପୁଅର ଜନ୍ମ ଦିନ ଭଲ ଭାବରେ କରିବ ବୋଲି ବାସନ୍ତୀକୁ ବୁଝାଇଦେଲା । ସ୍ୱାମୀଙ୍କ କଥାରେ ବାସନ୍ତୀ କେବେହେଲେ ଯୁକ୍ତି କରେନି, ସେ ଜାଣେ ସ୍ୱାମୀ ତା'ର ଯାହା କରୁଛନ୍ତି ତାହା ନିଜର ଭଲ ପାଇଁ ଓ ଗ୍ରାମବାସୀଙ୍କ ଭଲ ପାଇଁ ।

ଘର ଭିଆରି ପରେ ପରେ ଅମରେଶ ଭାବିଥିଲା ଗାଁର ଫସଲ ଭଲ ହେଲେ ଗାଁର ଅଭାବ ସେତେ ରହିବ ନାହିଁ । କିନ୍ତୁ ଦୁର୍ଯୋଗକୁ ଦେଖାଦେଲା ନାହିଁ ନ ଥିବା ମରୁଡ଼ି । ବର୍ଷା ଅଭାବରୁ ଧାନ କ୍ଷେତ ଶୁଖିଗଲା । କେନାଲ ବ୍ୟବସ୍ଥା ନଥିବାରୁ ପାଣି ମଡ଼ାଇ ଗୁଣ୍ଡକୁ ରକ୍ଷା କରିବା ସମ୍ଭବ ହେଲାନି । ପୋଖରୀ ଆଦିରୁ ଟେଣ୍ଡା ଲଗାଇ ପାଣି ଉଠାଇ କେତେକ ଜମିକୁ ଆବାଦ କରାଗଲା ସତ; କିନ୍ତୁ ତାହା ସମୁଦ୍ରକୁ ଶଙ୍ଖେ ପଣା ପରି । ଗ୍ରାମର ବହୁତ ଜମି ଉଜୁଡ଼ି ଗଲା ।

ଅମରେଶ ଭାବିଲା ହାତରେ ଯଦି ସମ୍ବଳ ଥାଆନ୍ତା, ତେବେ ସେ ପମ୍ପ ଆଣି ପାଣି ଉଠାଇ ଆହୁରି କିଛି ଜମିକୁ ଆବାଦ କରି ପାରିଥାନ୍ତା । ହାତରେ

ଧମ୍ବଳ ନ ଥିବାରୁ କିଛି କରିପାରିଲିନ ସେ । ପାଚରେ ବେଙ୍କ ଆଦି ଥିଲେ, ସେମାନଙ୍କଠାରୁ କରଜ ଆଣି ପମ୍ପସେଟ କିଣିପାରିଥାନ୍ତା । ବେଙ୍କ ଗୁଡ଼ାକ ତ ସବୁ ସହରରେ, ଏ ମୋଫସଲ ଅଞ୍ଚଳକୁ ଋଣଦେବ ବା କିଏ ?

ସେହି ବର୍ଷ ଧାନ ଅମଳ ହେଲା ପୂର୍ବ ବର୍ଷର ଅଧା । ଯାହା ଅମଳ ହେଲା ସବୁ ଗ୍ରାମବାସୀମାନଙ୍କୁ ବାଣ୍ଟି ଦିଆଗଲା ସେମାନଙ୍କ ବାର୍ଷିକ ଚଳିବା ନିମିତ୍ତ । ସଂସ୍ଥା ହାତରେ ଆଉ କିଛି ଧାନ ରହିଲା ନାହିଁ । ତେବେ ଏହି ମରୁଡ଼ି ଅର୍ଥକରୀ ଫସଲର ବିଶେଷ କିଛି କ୍ଷତି କରି ପାରିଲିନ । ସେହିସବୁ ଫସଲରୁ ଯାହା ଲାଭ ହେଲା, ଗାଁର ଉନ୍ନୟନ ପାଇଁ ପାଣ୍ଠି ଯୋଗାଇଲା ସେତିକ ।

ଗାଁ ଚାରିପାଖରେ ଯେଉଁ ହଜାର ହଜାର ଏକର ଜମି ରହିଛି, ତାକୁ ସବୁଦିନ ପାଇଁ ମରୁଡ଼ି ଦାଉରୁ ରକ୍ଷା କରିବା ପାଇଁ ଉଠା ଜଳ ସେଚନ ବ୍ୟବସ୍ଥା କରିବା ନିହାତି ଦରକାର ବୋଲି ଅନୁଭବ କଲା ଅମରେଶ । ଉଠା ଜଳସେଚନ ପାଇଁ ଠାଏ ଠାଏ ପମ୍ପ ଘର ଓ ନାଳମାନ କରିବା ଦରକାର ଏଥିପାଇଁ ଦରକାର ପ୍ରଚୁର ଅର୍ଥ । ଗାଁ ଭିତରେ ଯଦି ବେଙ୍କଟିଏ ଥାଆନ୍ତା, ତେବେ ସେମାନଙ୍କ ଠାରୁ ଋଣ ସୂତ୍ରରେ କିଛି ଟଙ୍କା ନେଇ ଏଥିରେ ଖଟାଇ-ଥାନ୍ତା ଓ ଫସଲ ଆମଦାନିରୁ ଯାହା ଲାଭ ହୁଅନ୍ତା, ସେଥିରେ ଶୁଝି ଦିଅନ୍ତା କରଜକୁ ।

ସେଥିପାଇଁ ପ୍ରଥମତଃ ସେ ଗାଁ ଭିତରେ ଗୋଟିଏ ବେଙ୍କ ପ୍ରତିଷ୍ଠା କରିବା ପାଇଁ ଲାଗି ପଡ଼ିଲା । ସହରରେ ଯେଉଁ ବଡ଼ ବଡ଼ ବ୍ୟବସାୟୀ ବେଙ୍କ ଥିଲେ ସେମାନଙ୍କୁ ଡାକି ଆଣି ଗାଁର ଉନ୍ନତି କଥା ବୁଝାଇଲା । ସେମାନଙ୍କ ଭିତରୁ ଗୋଟିଏ ବେଙ୍କ ସ୍ୱତଃ ପ୍ରବୃତ୍ତ ହୋଇ ଏଠାରେ ଏକ ଶାଖା ଖୋଲିବା ପାଇଁ ଇଚ୍ଛା ପ୍ରକାଶ କଲେ, କିନ୍ତୁ ଗୋଟିଏ ସର୍ତ୍ତରେ । ଗ୍ରାମଦାନ ସଂସ୍ଥା ଯଦି ସେମାନଙ୍କୁ ଗୋଟିଏ ଘର ଯୋଗାଇ ଦିଏ ତେବେ ସେମାନେ ଏଠାରେ ଗୋଟିଏ ବେଙ୍କ ଖୋଲିପାରନ୍ତି । ଅମରେଶ ବେଙ୍କର ଏହି ସର୍ତ୍ତରେ ସଙ୍ଗେ ସଙ୍ଗେ ରାଜି ହୋଇଗଲା ।

ଯେଉଁ ଦିନ ଗୋବିନ୍ଦପୁର ଗାଁରେ ବେଙ୍କଟିଏ ଖୋଲିଲା, ସେ ଦିନ ଗାଁ ଲୋକଙ୍କ ଖୁସି କହିଲେ ନ ସରେ । ଗାଁ ଲୋକେ ନିଜ ଅର୍ଜନରୁ ଯାହା କିଛି ବଳାଇ ପାରିଲେ ତାକୁ ଏହି ବେଙ୍କରେ ରଖିବା ସୁବିଧା ପାଇଲେ । ଗ୍ରାମଦାନ

ଫଷ୍ଟାର ଯାହା ବାର୍ଷିକ ଆୟ, ସେଥିରୁ କିଯଦଂଶ ଏହି ବେଙ୍କରେ ରଖିବା ଠିକ୍ ହେଲା । ବାକିତକ ଯେଉଁ ପୋଷ୍ଟ ଅଫିସରେ ରହୁଥିଲା, ସେଥିରେ ରହିଲା ।

ଇତି ମଧ୍ୟରେ ପୋଷ୍ଟ ଅଫିସକୁ ଗୋଟିଏ ନୂଆ ଘର ଯୋଗାଇଦିଆ ଯିବାରୁ ପୋଷ୍ଟ ଅଫିସ ଗୋବର୍ଦ୍ଧନପୁରକୁ ଉଠି ଆସିଲା । ବେଙ୍କଠାରୁ ସାହାଯ୍ୟ ନେଇ ଅମରେଶ ପ୍ରଥମେ ଗୋଟିଏ ଗାଁରେ ଉଠା ଜଳସେଚନର ବ୍ୟବସ୍ଥା କଲା । ଧାନବିଲକୁ ଉଠା ଜଳସେଚନ ଯିବା ଫଳରେ ଧାନ ଜମିରେ ଦୁଇଟି ଧାନ ଫସଲ କରିବା ସୁବିଧା ହେଲା ।

ବେଙ୍କ ଯାହା ଋଣ ଦେବ, ବର୍ଷ କେଇଟାରେ ଅଧିକା ଫସଲରୁ ଯେଉଁ ଆୟହେବ, ସେଥିରେ ଶୁଝି ଦେଇ ଦେବେ । ସେ ଯଦି ଏହିଭଳି ଭାବରେ ଗୋଟିଏ ଦୁଇଟି ଗାଁକୁ ଉଠା ଜଳସେଚନ ଯୋଗାଏ ତେବେ ଚାରି ପାଞ୍ଚ ବର୍ଷ ଭିତରେ ସବୁ ଗାଁର ଜଳାଭାବ ଦୂର ହେବା ଯୋଗୁଁ ମରୁଡ଼ି ଭୟ ସବୁ ଦିନ ପାଇଁ ଗାଁମାନଙ୍କରୁ ଦୂର ହେବ ।

ଗାଁର ଆର୍ଥିକ ସ୍ୱଚ୍ଛଳତା ଦେଖି ଏ ଦିଗରେ ସାହାଯ୍ୟ ଦେବାକୁ ପଛାଇଲା ନାହିଁ ବେଙ୍କ । ସବୁ ଜମିକୁ ଜଳସେଚନ ବ୍ୟବସ୍ଥା ହୋଇଗଲେ ସବୁ ଜମିରେ ଦୁଇଟି ଧାନ ଫସଲ ବ୍ୟତୀତ ରବି ଫସଲ ମଧ୍ୟ କରି ହେବ ।

ଏହିଭଳି ଭାବରେ ଦିନକୁ ଦିନ ଗ୍ରାମ ଗୁଡ଼ିକର ଆର୍ଥିକ ସ୍ୱଚ୍ଛଳତା ବଢ଼ିବାରେ ଲାଗିଲା । ଏହି ସମୟରେ ଗାଁମାନଙ୍କରେ ଫଳଗଛ ଲଗାଇବା ଯୋଜନା ସରକାରଙ୍କ ତରଫରୁ ଆସିଲା । ବି. ଡ଼ି. ଓ. ନିଜେ ଆସି ଏହି ସଂସ୍ଥା ଅଧୀନରେ ଥିବା ସ୍ଥାନଗୁଡ଼ିକ ତନଖି କରିଗଲେ । କେଉଁଠି କି କି ଗଛ ଲଗାଇଲେ ଭଲ ହେବ ଅମରେଶ ସହିତ କଥାବାର୍ତ୍ତା କରିବାକୁ ବି. ଡ଼ି. ଓ. ଭୁଲିଲେନି ।

ଏହାର କିଛି ଦିନ ପରେ ଗୋଟିଏ ବଡ଼ଟ୍ରକରେ ବିଭିନ୍ନ ଜାତିର ଆମ୍ବ, ପଣସ, ପିଜୁଳି, ନଡ଼ିଆ, ଆଦି ଚାରାଗଛ ଗାଁରେ ପହଞ୍ଚିଗଲା । ଏହିସବୁ ଗଛ କେଉଁଠି ଲଗାହେବ ଅମରେଶ ତାହାର ଏକ ଯୋଜନା ଆଗରୁ ତିଆରି କରି-ସାରିଥିଲା । ଗାଁରେ ନୂଆ କରି ତିଆରି ହୋଇଥିବା ରାସ୍ତା ଦୁଇ କଡ଼ରେ ଆମ୍ବଗଛ, ପଣସ ଗଛ, ଭିତରୁ କେତେକ ଲଗାଇ ବାକି ଗୁଡ଼ିକୁ ଖୋଲା ପଡ଼ିଆରେ ଲଗାଇ ନୂଆ ନୂଆ ଫଳ ବଗିଚା ତିଆରିବା ପାଇଁ ଚେଷ୍ଟା ଚାଲିଲା ।

ଏଥିପୂର୍ବରୁ ଗାଁରେ ଗୋଟିଏ ଫଳ ଆଶା କରିବା ସ୍ୱପ୍ନ ଥିଲା । ବର୍ତ୍ତମାନ ବହୁତ ଗୁଡ଼ିଏ ଫଳଗଛ ଲଗା ହୋଇଯିବାରୁ ଗ୍ରାମବାସୀମାନଙ୍କର ଆନନ୍ଦର ସୀମା ରହିଲନି । ଆଉ କିଛି ବର୍ଷ ପରେ ସେମାନଙ୍କ ଗାଁରେ ସବୁ ପ୍ରକାର ଫଳ ମିଳିପାରିବ । ଫଳଟିଏ ପାଇଁ ସେମାନଙ୍କୁ ଆଉ ହାଟ ବଜାରକୁ ଦୌଡ଼ିବାକୁ ପଡ଼ିବନି ।

ଏହି ସମୟରେ କୁଆଡ଼େ କିଛି ନ ଥିଲି । ହଠାତ୍ ଗୋବିନ୍ଦପୁରରେ ଦେଖାଦେଲା ବସନ୍ତ ମହାମାରୀ । ଫଗୁଣ ମାସ । ନୂଆ ଧାନ ଫସଲ ଆମଦାନୀ ସରି ଡାଳୁଅ ଧାନ ଜମିରେ ଲଗା ହେଉଥାଏ । ଉଠା ଜଳସେଚନ ଯୋଗୁ ଜମିରେ ପାଣି ମଡ଼ାଇବା ସମସ୍ୟା ଆଉ ନ ଥାଏ ।

ଏହି ରୋଗରେ ଆକ୍ରାନ୍ତ ହୋଇ ଗୃହିଁ ଗୃହିଁ ହିନ କେଇଟାରେ ଭେଣ୍ଡିଆ ମାନେ ଟଳି ପଡ଼ିଲେ । ଅମରେଶ ଦୌଡ଼ିଲା ସହରର ପବ୍ଲିକ ହେଲ୍ଥ ଦପ୍ତରକୁ । ସେମାନଙ୍କ ଦପ୍ତରରୁ ଡାକ୍ତରମାନେ ଆସି ଗାଁ ସାରା ଗୋଟିକ ଟୀକା ଦେଇଦେଲେ । ଅମରେଶ ଆଇନ କରି ଦେଇଥାଏ, ସମସ୍ତେ ଗୋଟିକ ଟୀକା ନେବାକୁ ବାଧ୍ୟ । କେହି ଏଥିରୁ ଛାଡ଼ ପାଇପାରିବେନି ।

ଭାରତରେ ଅନ୍ୟ ଅଞ୍ଚଳରୁ ବସନ୍ତ ରୋଗ ପୁରାପୁରି ନିର୍ମୂଳ ହୋଇ ଯାଇଥିବାର ଖବର ବାହାରି ଥିଲେହେଁ ଏହା ସମ୍ଭବତଃ ଥିଲି ଏ ଦେଶର ଶେଷ ବସନ୍ତ ମହାମାରୀ ।

ଏହି ଖବର ଶୁଣି ବିଶ୍ୱସ୍ୱାସ୍ଥ୍ୟ ସଂଗଠନର କର୍ମକର୍ତ୍ତାମାନେ ଏଠି ଆସି ହାଜର ହୋଇଗଲେ । ନାନା ପରୀକ୍ଷା ନିରୀକ୍ଷା କରି ସେମାନେ ଜାଣିଲେ ଏହା ପ୍ରକୃତରେ ବସନ୍ତ ରୋଗ । ଗାଁର ପ୍ରତ୍ୟେକ ଲୋକଙ୍କୁ ଟୀକା ଦେବା ଫଳରେ ବସନ୍ତ ପୁରାପୁରି ନିୟନ୍ତ୍ରଣାଧୀନକୁ ଚାଲି ଆସିଲା । ·ହିନ କେଇଟାରେ ଏହା ପୁରାପୁରି ଗାଁ ଛାଡ଼ି ଚାଲିଗଲା, ସମ୍ଭବତଃ ଏହା ଥିଲି ପୃଥିବୀର ଶେଷ ବସନ୍ତ ମହାମାରୀ ।

ଭବିଷ୍ୟତରେ ଏହିଭଳି ଅନ୍ୟ ମହାମାରୀ କାଳେ ବ୍ୟାପିବ, ଅମରେଶର ଚିନ୍ତା ହେଲା ଏହି ଗାଁରେ କେମିତି ଗୋଟିଏ ଡାକ୍ତରଖାନା ବସାଇବ । ଅନ୍ତତଃ ପକ୍ଷେ ଗୋଟିଏ ପ୍ରାଇମେରୀ ହେଲ୍ଥ ସେଣ୍ଟର ନ କଲେ ନହୁଏ । ସଂସ୍ଥା ତରଫରୁ

ଏକ ଦରଖାସ୍ତ ହେଲା ସ୍ୱାସ୍ଥ୍ୟ ବିଭାଗକୁ । ପାଖ ଆଖ ୪୦।୫୦ ଖଣ୍ଡ ଗାଁରେ ଗୋଟିଏ ବୋଲି ଡାକ୍ତରଖାନା କେଉଁଠି ନାହିଁ । ରୋଗବ୍ୟାଧି ହେଲେ ସେମାନଙ୍କୁ କେହି ଦେଖିବାକୁ ଆସନ୍ତିନି କି ସେମାନଙ୍କ ସାହା ଭରସା କେହି ନାହିଁ ।

ଅମରେଶ ନିଜେ ଯାଇ ସ୍ୱାସ୍ଥ୍ୟବିଭାଗ କର୍ମକର୍ତ୍ତାମାନଙ୍କ ସହିତ ଏ ସଂପର୍କରେ ଆଲୋଚନା କଲା । ସେମାନେ ଅମରେଶର ଦାବୀକୁ ସ୍ୱୀକାର କଲେ ସତ, କିନ୍ତୁ ସ୍ୱାସ୍ଥ୍ୟ ବିଭାଗର ଖର୍ଚ୍ଚକାଟ ଯୋଗୁଁ ସେମାନେ ନୂଆ କରି ପ୍ରାଇମେରୀ ହେଲ୍‌ଥ ସେଣ୍ଟର ବସାଇ ପାରିବେନି ବୋଲି ଅକ୍ଷମତା ଜଣାଇଦେଲେ । ତେବେ ଗ୍ରାମବାସୀମାନେ ଯଦି ଡାକ୍ତରଖାନା ପାଇଁ ଘର, ଡାକ୍ତର, ନର୍ସଙ୍କ ରହିବା ପାଇଁ କ୍ୱାର୍ଟର ଓ ଆବଶ୍ୟକୀୟ ଔଷଧମାନ କିଣିବା ପାଇଁ ଅର୍ଥ ବ୍ୟବସ୍ଥା କରି ପାରନ୍ତି, ତେବେ ସେମାନେ ଡାକ୍ତର, ନର୍ସ ଯୋଗାଇ ଦେଇ ପାରିବେ ।

ଅମରେଶ ଦେଖିଲା ଏହି ପ୍ରସ୍ତାବରେ ସେ ଯଦି ରାଜି ନ ହେଉଛି, ଗାଁରେ ଡାକ୍ତରଖାନାଟିଏ ଖୋଲି ହେବନି । ତେଣୁ ବାଧ୍ୟ ହୋଇ ସେ ପ୍ରସ୍ତାବରେ ହଁ ଭରିଲା ।

ସେଠାରୁ ଫେରି କାର୍ଯ୍ୟକାରୀ ସମିତି ସହିତ ଆଲୋଚନା କରି ଏଥିପାଇଁ ଘର ତିଆରି ଆରମ୍ଭ କରିଦେଲା । ଘର ତିଆରି ସରିବା ସଙ୍ଗେ ସଙ୍ଗେ ଡାକ୍ତର ନର୍ସ, ସହରରୁ ଆସି ଗାଁରେ ପହଞ୍ଚିଗଲେ । ସେମାନଙ୍କ ସହିତ ଆଲୋଚନା କରି ଔଷଧାଦି କିଣିବାପାଇଁ ପ୍ରଥମରୁ କୋଡିଏ ହଜାର ଟଙ୍କା ବ୍ୟୟ ବରାଦ କଲା କାର୍ଯ୍ୟକାରୀ ସମିତିର ସମ୍ମତି ନେଇ ।

ଅମରେଶର ଆନନ୍ଦ ବହୁଦିନର ସ୍ୱପ୍ନ ତା'ର ସାର୍ଥକ ହେଲା । ଏବେ ଏଣିକି ପ୍ରତିବର୍ଷ କଲେରା, ଟାଇଫଏଡ଼ ଆଦି ରୋଗର ପ୍ରତିଷେଧକ ଗାଁର ପ୍ରତ୍ୟେକ ଲୋକଙ୍କୁ ଦିଆଯିବ, ଯେମିତି କି ଏହି ରୋଗ ଭୁଲିରେ ବି ଏହି ଗ୍ରାମ ଭିତରକୁ ପଶିବନି ।

ଅମରେଶର ଧାରଣା ହେଲା ନିଜେ କରୁଥିବା ବିଭିନ୍ନ ଉନ୍ନୟନ-ମୂଳକ କାମ ଠିକ୍ ଭାବରେ ଆଗେଇ ପାରିବନି, ଯଦି ଗାଁ ଗୁଡ଼ିକରେ ବିଦ୍ୟୁତ୍ ଶକ୍ତି ଯୋଗାଇଦିଆ ନ ହୁଏ । ବିଦ୍ୟୁତ୍‌ଶକ୍ତି ହେଲେ ଗାଁରେ ଲୋକମାନଙ୍କ ଶ୍ରମ ଲାଘବ ହେବ, ଗାଁ ଲୋକ ଘର ଭିତରେ ଭଲ ଆଲୁଅ ଓ ପବନ ପାଇପାରିବେ । ବିଦ୍ୟୁତ୍‌ଚାଳିତ ଧାନ କଳ, ଅଟା କଳ, ଚୂଡ଼ା କଳ,

ତେଲ କଳ ଆଦି ବସିଲେ ଲୋକଙ୍କୁ ପୂର୍ବ ଭଳି ଅଧିକ ପରିଶ୍ରମ କରି ହାତରେ ସେଗୁଡ଼ିକ ତିଆରି କରିବାକୁ ପଡ଼ିବ ନାହିଁ ।

ସରକାରଙ୍କ ସେହି ବର୍ଷ ନିୟମ ହୋଇଥାଏ, ଯେଉଁ ଗାଁ ବଣ୍ଟନ୍ତ୍ର ଓ ବିଦ୍ୟୁତ୍ ତାରର ଅଧା ଖର୍ଚ୍ଚ ବହନ କରିବ, ସେହି ଗାଁକୁ ସଙ୍ଗେ ସଙ୍ଗେ ବିଦ୍ୟୁତ୍ ଶକ୍ତି ଯୋଗାଇ ଦିଆଯିବ । ଅମରେଶ ହିସାବ କରି ଦେଖିଲା, ଲକ୍ଷେ ପଚିଶ ହଜାର ଟଙ୍କା ଖରଚ କଲେ, ଆଠ ଗୋଟି ଗାଁରେ ନୂଆ ହୋଇ ତିଆରି ହୋଇ ଥିବା ସବୁ ଘରକୁ ବିଦ୍ୟୁତ୍ ଶକ୍ତି ଯୋଗାଯାଇପାରିବ । ତେଣୁ ସେଥିରେ ଅରାଜି ହେବାର କିଛି କାରଣ ସେ ଦେଖିଲା ନାହିଁ । କାର୍ଯ୍ୟକାରୀ ସମିତି ଏତେ ଗୁଡ଼ିଏ ଟଙ୍କା ବିଜୁଳି ଲାଇନ ପାଇଁ ଖରଚ କରିବାକୁ ମୂଳରୁ ପ୍ରସ୍ତୁତ ନ ଥିଲେ, କିନ୍ତୁ ଅମରେଶର ଚାପରେ ସେମାନେ ରାଜି ହେଲେ ।

ଅମରେଶ ସେମାନଙ୍କୁ ବୁଝାଇଦେଲା ଦୁନିଆରେ ସାଧାରଣ ନାଗରିକ ଭାବରେ ଚଳିବାକୁ ହେଲେ ବିଜୁଳି ଶକ୍ତି ନହେଲେ ନ ଚଳେ । ଗାଁର ରାସ୍ତାରେ ବିଜୁଳି ଆଲୋକ ଦିଆଗଲେ ଚଲା ଚଳରେ ବହୁତ ସୁବିଧା ହେବ, ନୂଆ ନୂଆ ଛୋଟ ଛୋଟ ଶିଳ୍ପ ଗଢ଼ି ଉଠିବ । ଏହିଭଳି ଭାବରେ ବୁଝାଇ ଦେଲାରୁ ସଭ୍ୟମାନେ ରାଜି ହୋଇଗଲେ ।

ଗୁହୁଁ ଗୁହୁଁ ଦିନ କେଇଟାରେ ଆଠଗୋଟି ଯାକ ଗ୍ରାମ ବିଜୁଳି ଆଲୋକରେ ହସି ଉଠିଲା । ଏହି ଗାଁ ଗୁଡ଼ିକ ଯେତିକିରେ ବିଜୁଳି ଆଲୋକରେ ଉଦ୍‌ଭାସିତ ହୋଇ ଉଠୁଥିଲା ବେଳେ ପାଖ ଗାଁର ଲୋକେ ସେହି ଡିବିରି, ଲଣ୍ଠନ, ସହ ଅନ୍ଧାରରେ ଉଜାଣି ହେଉଥିଲେ ।

ଗାଁର ବଡ଼ ବଡ଼ ସମସ୍ୟା ଓ ଅଭାବ ଏହିଭଳି ତୁଟିଗଲା ପରେ ଲୋକଙ୍କର ଇଚ୍ଛାହେଲା କେତେ ଗୋଟି ଧର୍ମ କାମ କରିବାକୁ । ଗାଁରେ କେତୋଟି ମନ୍ଦିର ନ ହେଲେ ନ ହୁଏ । ଲୋକେ ପୂଜା ଆଉ ପର୍ବ ଦିନମାନଙ୍କରେ କେତେ ଅଉ ଅନ୍ୟ ଗାଁର ମନ୍ଦିରମାନଙ୍କୁ ଯିବେ ? ଏଥିପାଇଁ ଗୋଟିଏ ଶିବ ମନ୍ଦିର, ଗୋଟିଏ ଜଗନ୍ନାଥ ମନ୍ଦିର, ଗୋଟିଏ ବିଷ୍ଣୁ ମନ୍ଦିର ଏହି ସଂସ୍ଥା ଅଧୀନରେ ଥିବା ତିନୋଟି ଅଲଗା ଅଲଗା ଗାଁରେ ପ୍ରତିଷ୍ଠିତ ହେଲା । ଗାଁ ଗୁଡ଼ିକ ଏମିତି ଭାବରେ ବସିଗଲା ଯେମିତି କି ପୂଜା ପର୍ବଦିନମାନଙ୍କରେ ଗାଁ ଲୋକଙ୍କୁ ଅଧିକ ଦୂର ଚାଲି କରି ଯିବାକୁ ପଡ଼ିବ ନାହିଁ ।

ଏଥି ପୂର୍ବରୁ ଗାଁରେ ଗୋଟିଏ ମହିଳା ସମିତି, କ୍ଳବ୍ ଘର ତିଆରି ସରିଥାଏ। ଗାଁମାନଙ୍କରେ ପିଲମାନଙ୍କ ଅଧିକ ପାଠ ପଢ଼ିବାପାଇଁ ବାରମ୍ବାର ଗୃପ ଫଳରେ ଗୋବର୍ଦ୍ଧନପୁର ମାଇନର ସ୍କୁଲଟିକୁ ହାଇସ୍କୁଲରେ ପରିଣତ କରି ଦିଆଗଲଣି । ସବୁ ଗାଁରେ ଗୋଟିଏ ଗୋଟିଏ ପ୍ରାଇମେରି ସ୍କୁଲ ବ୍ୟତୀତ ଆଉ ଦୁଇଟି ମାଇନର ସ୍କୁଲ ବସିଗଲଣି। ଅମରେଶର ସବୁବେଳେ ଆଖି ଏହି ଶିକ୍ଷା ଉପରେ । ପିଲମାନଙ୍କୁ ଯଦି ଉପଯୁକ୍ତ ଶିକ୍ଷା ଦିଆ ଯାଇଥାଏ, ତେବେ ଭବିଷ୍ୟତରେ ଗ୍ରାମର ଉନ୍ନୟନ ଅପେକ୍ଷାକୃତ ସହଜ ହେବ ।

ବାସନ୍ତୀ ଏହି ହାଇସ୍କୁଲ ଅଧୀନରେ ଥିବା ମାଇନରସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀ ଭାବରେ ଦାୟିତ୍ୱ ନେଲଣି । ଆଠ ଗୋଟି ଗାଁରେ ଶିକ୍ଷାର ପ୍ରସାର ପାଇଁ ଅମରେଶ ଯେତେ ଦାୟୀ ନୁହେଁ, ବେଶି ଦାୟୀ ବାସନ୍ତୀର ବାପା ହରିବାବୁ । ଆଜି ତାଙ୍କର ପ୍ରଚେଷ୍ଟାରୁ ଗୋଟିଏ ପ୍ରାଇମେରି ସ୍କୁଲରୁ ଆଠଟି ପ୍ରାଇମେରି ସ୍କୁଲ, ଦୁଇଟି ମାଇନର ସ୍କୁଲ ଓ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠିତ ହେଲଣି । ଏହି ସ୍କୁଲ ଗୁଡ଼ିକରେ ଯେ ଖାଲି ଏହି ଗାଁ ଗୁଡ଼ିକର ପିଲଏ ପଢ଼ନ୍ତି, ତା ନୁହେଁ, ଆଖ ପାଖ ଗାଁର ପିଲମାନେ ମଧ୍ୟ ଏହି ସ୍କୁଲ ମାନଙ୍କରେ ପଢ଼ିବାର ସୁବିଧା ପାଆନ୍ତି । ତେବେ ତଫାତ୍ ହେଉଛି ଏହି ଗାଁର ପିଲମାନଙ୍କୁ ବହି, ପତ୍ର, ଖାତା ପେନ୍‌ସିଲ ଆଦି ଗ୍ରାମଦାନ ସଂସ୍ଥା ଯୋଗାଇଦିଏ । ବାହାର ଗାଁର ପିଲମାନେ ସେମାନଙ୍କ ହାତରୁ ସେ ସବୁ କିଣି ପଢନ୍ତି ।

ଗାଁର ଉନ୍ନୟନ କାମ ଯେଉଁ ଗତିରେ ବଢ଼ି ବଢ଼ି ଚାଲିଛି, ଅମରେଶର ଦାୟିତ୍ୱ ଓ କାମ ସେହି ଅନୁପାତରେ ବଢ଼ି ଯାଇଛି । ତାହାଛଡ଼ା ଅଫିସ କାମ ତଦାରଖ ସବୁବେଳେ ନ କଲେ ନ ହୁଏ । ଦିନେ ସେ ବାସନ୍ତୀକୁ ପ୍ରସ୍ତାବ ଦେଲ, ବାସନ୍ତୀ ଚାକିରି ଛାଡ଼ି ଦେଇ ତାଙ୍କୁ ଏ କାମରେ ସାହାଯ୍ୟ କର ।

ବାସନ୍ତୀକୁ ଶିକ୍ଷୟିତ୍ରୀ କାମ ଭଲ ଲାଗେ. ଅଫିସର କାଗଜ ପତ୍ର ଘାଣ୍ଟି ତାକୁ ମୋଟେ ଆସେ ନାହିଁ । ବାସନ୍ତୀର ଅନୁରୋଧରେ ବାସନ୍ତୀର ସାନଭାଇକୁ ସେହି କାମ ଦିଆଗଲା । ବାସନ୍ତୀର ସାନ ଭାଇ ମାଧବ ଗତବର୍ଷ ଟାଟା ନଗର କଲେଜରୁ ବି କମ୍ ପାସ କରି ଘରେ ଆସି ଅଛି । ଅମରେଶ ତାକୁ ଆଣି ଅଫିସ କାର୍ଯ୍ୟରେ ତା'ର ଏକ ସହକାରୀ ଭାବରେ ନିଯୁକ୍ତ ଦେଇଦେଲ । ଗାଁର

ସେ ହେଉଛି ସର୍ବପ୍ରଥମ ବି: କମ୍: ପାସ୍ କରିବାଲା ଯୁବକ । ତାକୁ ସେ ଭଳି କାମ ନଦେଇ ଆଉ ବା କ କାମ ଦିଆଯାଇ ପାରିଥାନ୍ତା ?

ହରିବାବୁଙ୍କ ଇଚ୍ଛା ଥିଲା, ମାଧବ ବାହାରକୁ ଯାଇ କିଛି ଗୋଟିଏ ଚାକିରି କରିଥାନ୍ତା । କିନ୍ତୁ ବାସନ୍ତୀର ଚାପରେ ହରିବାବୁଙ୍କ ମତ ବଦଳିଲା । ଗାଁ ପିଲା ଗାଁ ଉନ୍ନତିରେ ଲାଗିବ ନାହିଁ ତ ଆଉ କେଉଁଥିରେ ଲାଗିବ ? ପିଲାଟି ଭାରି ପରିଶ୍ରମୀ, ସଚ୍ଚୋଟ ଓ ସାଧୁ ପ୍ରକୃତିର । ସେମିତି ପିଲାକୁ ଟ୍ରେନିଂ ଦେଇ ଅଫିସ ତଦାରଖ କାମରେ ରଖିଲେ ଭବିଷ୍ୟତକୁ ଖୁବ୍ ସାହାଯ୍ୟକାରୀ ହେବ । କାର୍ଯ୍ୟକାରୀ ସମିତିର ସମ୍ମତି ନେଇ ତା ପାଇଁ ଏକ ଦରମା ବ୍ୟବସ୍ଥା କରିବାକୁ ପଡ଼ିଲା ଅମରେଶଙ୍କୁ । ବିନା ଦରମାରେ ତ ସେ କାହାରିକୁ ଖଟାଇ ପାରିବନି ଗାଁ ପାଇଁ । ନିଜେ ସିନା ବିନା ଦରମାରେ କାମ କରୁଛି, ନିଜେ ଏହି ସଂସ୍ଥାର ସ୍ରଷ୍ଟା ବୋଲି । ଅନ୍ୟମାନଙ୍କୁ ବିନା ଦରମାରେ ଖଟାଇଲେ ଅନ୍ୟାୟ ହେବ ।

ମାଧବ ଯୋଗଦେବା ଦିନଠାରୁ ଅମରେଶର ଅଫିସ ଦାୟିତ୍ୱ ଟିକିଏ ହାଲୁକା ହେଲାଭଳି ଜଣାପଡ଼ିଲା । ଅମରେଶ ଦାୟିତ୍ୱର ଅନେକ ଅଂଶ ମାଧବ ତା ଉପରକୁ ନେଇଗଲାଣି । ମାଧବ ବି.କମ୍: ପାସ କରିଥିବାରୁ ତାକୁ ଅଫିସର କାମଦାମ, ହିସାବ କିତାବ ବେଶ ଭଲ ଭାବରେ ଜଣା । ଏଭଳି ଏକ ସୁଯୋଗ୍ୟ ସହକର୍ମୀ ପାଇଥିବାରୁ ଅମରେଶ ଭାରି ଖୁସି ! ମାଧବର ଅଫିସ କାମ ତା'ର ଭାରି ପସନ୍ଦ ।

ଏହି ସମୟରେ ଏହି ସଂସ୍ଥା ପରିଚାଳନାରେ ଅମରେଶର ଏକ ଭୁଲ ନିଷ୍ପତ୍ତି ତାକୁ ଏକ ଅଖାଡ଼ୁଆ ପରିସ୍ଥିତିରେ ପକାଇଦେଇଥାଏ । ଗ୍ରାମଦାନ ସଂସ୍ଥା ଆରମ୍ଭ ହେଲା ଦିନରୁ ଅମରେଶ ନିୟମ କରିଦେଇଛି ଗ୍ରାମବାସୀମାନଙ୍କୁ ସେମାନଙ୍କ ବର୍ଷକର ଧାନ ଖର୍ଚ୍ଚ ଅମଳ ସମୟରେ ସେମାନଙ୍କୁ ସାହାଯ୍ୟ ଭାବରେ ଦିଆଯିବ । ତେଣୁ କୌଣସି କାମ ପାଇଁ ଯେତେବେଳେ ମଜୁରି ଦିଆଯାଏ ତାହା ଆଖପାଖ ଅଞ୍ଚଳର ମଜୁରି ସହିତ ସମାନ ନ ହୋଇ ତା'ଠାରୁ କିଛି କମ୍ ରଖାଯାଇଥାଏ । ବର୍ଷସାରା ଖାଇବା ପାଇଁ ଧାନ ପାଉଥିବାରୁ ଗ୍ରାମର ଲୋକେ ଗ୍ରାମପାଇଁ ଖଟିଲେ, ଆଉ ସମାନ ମଜୁରି ନେବେ ବା କାହିଁକି ? ମଜୁରି କମ୍ ଦିଆଯାଉଥିବାରୁ ଅମରେଶ ଆଉ ଏକ ନିୟମ କରି ଦେଇଥାଏ, ଗାଁରେ ଉତ୍ପାଦିତ ହେଉଥିବା ଦୁଧ, ଅଣ୍ଡା, ମାଂସ, ପନିପରିବା ଆଦି ରିହାତି ଦରରେ

ସେମାନଙ୍କୁ ଯୋଗାଇ ଦିଆଯିବ । ଅମରେଶର ଯୁକ୍ତି ହେଲା, ଯେହେତୁ ସେମାନଙ୍କୁ କମ୍ ମଜୁରି ଦିଆଯାଉଛି, ଶସ୍ତା ଦରରେ ଏହିସବୁ ଖାଦ୍ୟପଦାର୍ଥ ନ ଯୋଗାଇଦେଲେ ଅନ୍ୟାୟ ହେବ ।

ଏହା କରିବା ଫଳରେ କ'ଣ ହେଲନା ଗାଁର କେତୋଟି ଯୁବକ ଗାଁରୁ ଶସ୍ତା ଦରରେ ଦୁଧ, ଅଣ୍ଡା, ମାଂସ କିଣିନେଇ ପାଖ ଗାଁରେ ଅଧିକ ଦରରେ ବିକ୍ରୀ କରିବା ଆରମ୍ଭ କରିଦେଲେ । ଏହା ଫଳରେ ଗାଁରୁ ବହୁ ଜିନିଷ ଗ୍ରାମବାସୀଙ୍କ ବ୍ୟବହାରରେ ନ ଲାଗି ସେମାନଙ୍କ ଅଜାଣତରେ ଗା ବାହାରକୁ ଚାଲିଗଲା । ଗାଁରେ ଦେଖାଦେଲା ଦୁଧ, ଅଣ୍ଡା, ମାଂସର ଅଭାବ । ଅମରେଶକୁ ଜଣାନାହିଁ ଏହା ଭିତରେ କେତେଜଣ ଗାଁର ଯୁବକ ଅନ୍ୟ ଗାଁର ଯୁବକଙ୍କ ସହିତ ସଲାସୂତ୍ର ହୋଇ ଏଭଳି ବ୍ୟବସାୟ ଆରମ୍ଭ କରିଦେଇ ଅଧିକ ଦୁଇପଇସା ଉପାର୍ଜନରେ ଲାଗି ଯାଇଛନ୍ତି । ସେମାନେ ବୁଝିପାରୁ ନ ଥାନ୍ତି, ଏହା କରିବା ଦ୍ୱାରା ସେମାନେ ଗାଁର କେତେ କ୍ଷତି କରୁଛନ୍ତି ।

ଅମରେଶ କିଛିଦିନ ପରେ ଶୁଣିବାକୁ ପାଇଲା ଗାଁରେ ଯେଉଁ ଦୁଧ, ଅଣ୍ଡା ଆଦି ବିକ୍ରୀ ପାଇଁ ଦିଆଯାଉଛି ତାହା ମୋଟେ ଅଣ୍ଟୁନି । ଅମରେଶ ଚିନ୍ତା କରି ବସିଥିଲା ଗାଁରେ ସେଗୁଡିକର ଉତ୍ପାଦନ ପରିମାଣ ବଢ଼ାଇଦେବା ପାଇଁ । କିନ୍ତୁ ବଢ଼ାଇବା ପୂର୍ବରୁ ନିଜେ ହଠାତ୍ ହିସାବ କରି ବସିଲା । ଦେଖିଲା ଯାହା ଗାଁ ପାଇଁ ଦିଆଯାଉଛି, ତା' ତ ଯଥେଷ୍ଟ, ଅଭାବ ପଡ଼ିବା କଥା ନୁହେଁ ?

ମାଧବକୁ ଏ ବିଷୟରେ ଅନୁସନ୍ଧାନ କରିବା ପାଇଁ ଦାୟିତ୍ୱ ଦିଆଗଲା । ସେ ଗାଁର ବିଭିନ୍ନ ମାଂସ, ଅଣ୍ଡା, ଦୁଧ ଦୋକାନ ବୁଲି ନାନା ତଥ୍ୟ ସଂଗ୍ରହ କରି ପ୍ରମାଣ କରିଦେଲା ଯେ ଗାଁ ପାଇଁ ଉଦ୍ଦିଷ୍ଟ ଜିନିଷ ଅନ୍ୟାୟ ଭାବରେ ଗା ବାହାରକୁ ଚାଲିଯାଉଛି, ଯା' ଫଳରେ ଏହି କୃତ୍ରିମ ଅଭାବ ସୃଷ୍ଟି ହୋଇଛି । ନାନା ପ୍ରକାର ପଚରା ଉଚରା ପରେ ମାଧବର ସନ୍ଦେହ ସତ୍ୟ ବୋଲି ଜଣା ପଡିଲା ।

ଅମରେଶ ଦେଖିଲା ଏହାକୁ ବନ୍ଦ କରିବା ପାଇଁ ଏକ ମାତ୍ର ଉପାୟ ହେଉଛି, ଏଗୁଡ଼ିକୁ ଆଉ ଶସ୍ତା ଦରରେ ନଦେଇ ଉଚିତ୍ ଦରରେ ବିକ୍ରୟ କରିବା । ଗାଁ ଲୋକଙ୍କୁ ଅଳ୍ପ ମଜୁରି ନଦେଇ ଅନ୍ୟ ଗାଁ ମଜୁରି ସହିତ

ସମାନ କରିଦେବା ଦରକାର । ମଜୁରିରେ ଯାହା ଅଧିକ ଖର୍ଚ୍ଚ ହେବ, ଜିନିଷ ବିକ୍ରୀର ଲାଭରୁ ତାହା ମେଣ୍ଟିଯିବ । ଗାଁ ଜିନିଷ ଆଉ ଅନ୍ୟାୟ ଭାବରେ ଗାଁ ବାହାରକୁ ଚାଲିଯିବନି ।

• ଅମରେଶ ଗାଁରେ ଯେଉଁ ଛୋଟିଆ କରି ଡ଼ାଏରୀ ଫାର୍ମଟି ଆରମ୍ଭ କରିଥିଲା ତାହା ବର୍ତ୍ତମାନ ବଢ଼ି ବଢ଼ି ଏକ ବିରାଟ ଫାର୍ମରେ ପରିଣତ ହେଲାଣି । ଜର୍ସି, ହରିଆନା, ସିନ୍ଧିଗାଈ ଠାରୁ ଆରମ୍ଭ କରି କେତେ ଭିନ୍ନ ଭିନ୍ନ ଜାତିର ବିଦେଶୀ ଗାଈ କିଣାହୋଇ ଏହି ଫାର୍ମରେ ରହିଲେଣି । ଫାର୍ମରେ ଦୁଧ ଉତ୍ପାଦିତ ହେଉଛି ଦିନକୁ ଦେଢ଼ ହଜାର ଲିଟର । ଗାଁ ମାନଙ୍କରେ ପାଞ୍ଚ ଶହ ଲିଟର ବିକ୍ରୀପାଇଁ ରଖାଯାଇ ବାକିତକ ସହରକୁ ବିକ୍ରୀପାଇଁ ପଠାଇ ଦିଆଯାଏ ।

ଗୋବିନ୍ଦପୁର ଡ଼ାଏରୀ ଦୁଧ ବିଶୁଦ୍ଧତା ପାଇଁ ସେ ଅଞ୍ଚଳରେ ଅତି ପ୍ରସିଦ୍ଧ । ବଜାରକୁ ଗଲେ କ୍ଷଣି ସଙ୍ଗେ ସଙ୍ଗେ ବିକ୍ରୟ ହୋଇଯାଏ । କୁକୁଡ଼ା ଓ ଛେଳି ଫାର୍ମ ମଧ୍ୟ ସେମିତି ବଢ଼ିଗଲାଣି ।

ଏହି ପ୍ରାଣୀମାନଙ୍କର ଯତ୍ନ ନେବାପାଇଁ ନିଜ ଖର୍ଚ୍ଚରେ ଗୋଟିଏ ପଶୁ ଡ଼ାକ୍ତରଖାନା ଖୋଲିଛି ଅମରେଶ । ଦରମା ଦେଇ ବାହାରୁ ପଶୁ ଡ଼ାକ୍ତର ଆଣି ରଖାଇଛି ଏହି ଗାଁରେ । ଫାର୍ମ ଗୁଡ଼ାକର ପ୍ରାଣୀମାନଙ୍କ ଯତ୍ନ ନେବା ଦାୟିତ୍ୱ ଏହାଙ୍କ ଉପରେ । କେଉଁ ଗାଈର ଦେହ ଖରାପ ହେଲା, କିଏ ଦୁଧ ଦେଉନି, ଏ ସବୁ ବୁଝିବା ପଶୁ ଡ଼ାକ୍ତରଙ୍କ ଦାୟିତ୍ୱ । କୁକୁଡ଼ାମାନଙ୍କ ମଡ଼କ ଆସିଲେ, ସେମାନଙ୍କୁ ପ୍ରତିଷେଧକ ଦେବା କାମ ଏହାଙ୍କର ।

× × × ×

ଖରା ଦିନିଆ ସନ୍ଧ୍ୟାବେଳ । ସେ ଦିନ ସେ ଅଞ୍ଚଳକୁ ଖୁବ୍ ଗରମ ପଡ଼ିଥାଏ । ଅମରେଶ ଶୀଘ୍ର ଫେରି ଆସିଥାଏ ଗାଁ ଚନ୍ଦନଗିରୁ । ବାହାରେ ଆରାମ ଚୌକି ପକାଇ ବସିଥାଏ ଅମରେଶ । ଆଉ ଗୋଟିଏ ଚେୟାରରେ ବସିଥାଏ ବାସନ୍ତୀ, ବୁଣୁଥାଏ ନିଜ ପୁଅପାଇଁ ସ୍ୱେଟର । ପିଲା ଦୁଇଟି ସାମନା ପଡ଼ିଆରେ ଖେଳୁଥାନ୍ତି । ବାସନ୍ତୀ ପଚାରିଲା, "ଆମ ହାଇସ୍କୁଲଟି କଲେଜ ହେବା କଥା କ'ଣ ହେଲା ?"

ଅମରେଶ କ'ଣ ଗୋଟାଏ ଭାବୁଥିଲା, ବାସନ୍ତୀର ପ୍ରଶ୍ନରେ ହଠାତ୍ ପ୍ରକୃତିସ୍ଥ ହୋଇ କହିଲା" ତୁମେ ବର୍ତ୍ତମାନ ମୋତେ କ'ଣ ପଚାରିଲ ବାସନ୍ତୀ ?

"ତୁମେ କ'ଣ ଅନ୍ୟ ମନସ୍କ ଥିଲ ?

"ହଁ, ହଁ, ମୁଁ ଆଜ ଗୋଟିଏ କଥା ଭାବୁଥିଲି ।

"କଣ ଏହି ଗାଁ କଥା, ନା ଗାଁ ବାହାର କଥା ? "ନା ତୁମର ସେଇ ଛାତ୍ରୀଟି ଆମେରିକାରୁ ଯେଉଁ ଚିଠି ଦେଇଛି, ସେହି ଛାତ୍ରୀଙ୍କ କଥା ?

ହସିଲା ଅମରେଶ, "ତୁମେ ସେ ଛାତ୍ରୀଟିକୁ ଦେଖିଛ ବାସନ୍ତୀ ?"

'ନାଁ, ମୁଁ ଦେଖିଲି କେମିତି ! "ତେବେ ଚିଠିରୁ ଯାହା ଜାଣିଛି ବଢ଼ିଆ ଝିଅଟିଏ ହୋଇଥିବ ନିଶ୍ଚୟ ।"

"ସେ ଏକ ଅଦ୍ଭୁତ ଝିଅ ବାସନ୍ତୀ । ବାପା ତା'ର ଏକ ବଡ଼ ବଡ଼ ଲୋକ । ଏ ଦେଶ ଛାଡ଼ି ବିଜ୍ଞାନରେ ଗବେଷଣା କରୁଛି ଆମେରିକାରେ । ମୋ ଠାରେ ପି:ଏଚ୍.ଡ଼ି: କରି ପାଟନା କଲେଜରୁ ଯାଇଛି । ମୋତେ ବଡ଼ ଖୁସି ଲାଗେ ବାସନ୍ତୀ, ଝିଅଟି ମୋତେ ମନେ ରଖିଛି । ବହୁ ଛାତ୍ର ଛାତ୍ରୀ ମୋ ଠାରୁ ପାଠ ପଢ଼ି ପାସକରି ଦେଶ ବିଦେଶରେ ଚାକରୀ କରୁଛନ୍ତି । କେହି କେବେ ମୋତେ ଭୁଲରେ ବି ମନେ ପକାନ୍ତି ନାହିଁ । କିନ୍ତୁ ଏହି ଝିଅଟି ତା'ର ବ୍ୟତିକ୍ରମ । ସେ ବେଳେ ବେଳେ ଚିଠି ଦେଇ ମୋ ଭଲ ମନ୍ଦ କଥା ପଚାରେ । ମୁଁ ଶୁଣୁଛି ଝିଅଟି ଗୋଟିଏ ଖୁବ୍ ବିଖ୍ୟାତ ଅଧ୍ୟାପିକାଙ୍କ ପାଖରେ ଗବେଷଣା କରିବାର ସୁଯୋଗ ପାଇଛି । ପିଲାଟି ମେଧାବୀ । ସେ ଯେ ନିଶ୍ଚୟ ଖୁବ୍ ନାଁ କରିବ ଏଥିରେ ମୋର ସନ୍ଦେହ ନାହିଁ ।"

'ତା ପାଖକୁ ତ ଉତ୍ତର ଦେଇନ ?"

"ନା, ଦେଇନ । ଭୁଲି ଯାଇଥିଲି । ତୁମେ ମୋତେ କହିଲାରୁ ତା' କଥା ମନେ ପଡ଼ିଲା । ଏଠା ପୋଷ୍ଟ ଅଫିସରେ ଆମେରିକା ଲଫାଫା ମିଳେନା । ମାଧବକୁ ପଇସା ଦେବ, ସେ ଯେତେବେଳେ ସହରକୁ ଯାଉଛି ଗୋଟିଏ ଆମେରିକା ଲଫାଫା କିଣି ଆଣିବ ।

କେଉଁ କଥା କହୁଁ କହୁଁ କେଉଁ କଥା ପଡ଼ିଲା ? ତୁମେ ମୋତେ କ'ଣ ପଚାରୁଥିଲଟି ବାସନ୍ତୀ ?

"ମୁଁ ପଚାରୁଥିଲି ଆମ ହାଇସ୍କୁଲଟି କେବେ କଲେଜରେ ପରିଣତ ହେବ ?" ବାସନ୍ତୀ କହିଲା ?

"ହାଇସ୍କୁଲଟିକୁ କଲେଜ କରିବା ମତଲବରେ ମୁଁ ନାହିଁ ବାସନ୍ତୀ । କଲେଜ ନକରି ହାଇସ୍କୁଲରେ ଧନ୍ଦାମୂଳକ ପାଠ୍ୟକ୍ରମ ଭରତ୍ତି କରିବାକୁ ମୋର ଇଚ୍ଛା । ଆମ ହାଇସ୍କୁଲରେ କେମିତି ନାନା ପ୍ରକାରର ଧନ୍ଦାମୂଳକ ଶିକ୍ଷା ଦିଆଯିବ ସେଥିପାଇଁ ମୁଁ ଲାଗିଚ୍ଛି । ଧନ୍ଦାମୂଳକ ପାଠ ଭିତରେ କାଗଜ ତିଆରି କାଠ କାମ, ରାଜମିସ୍ତ୍ରୀ କାମ, ଟେକନିସିଆନ କାମଠାରୁ ଆରମ୍ଭ କରି ମାଛଚାଷ, ଡ଼ାଏରି, କୁକୁଡ଼ା ଚାଷ, ଆଦି ସମ୍ବନ୍ଧରେ ଶିକ୍ଷା ପାଇବା ପାଇଁ ସମସ୍ତ ବ୍ୟବସ୍ଥା ରହିବ । ଆମ ଗାଁରେ ତ ଏହି ସବୁ ଲୋକଙ୍କୁ ଯୋଗାଇବା ପାଇଁ ବହୁତ କାମ ଅଛି । ତେଣୁ ସେମାନେ ସେ ସବୁ ଶିକ୍ଷା ନ କରିବେ କାହିଁକି ? ସଙ୍ଗେ ସଙ୍ଗେ ଆମ ଗାଁରେ କାମ ମିଳିଯିବ ।"

"ତାହେଲେ ଆମେ ଆଉ କଲେଜ ମୁହଁ ଦେଖିବା ନାହିଁ କି ଆମ ଏଠୁଁ ଆଉ ଆଇ: ଏ., ବି: ଏ. ପାସ କଲା ଲୋକ ବାହାରିବେ ନି ?" ଫଳରେ ଆମ ଏ ଅଞ୍ଚଳରେ ବେଶି ପାଠ ପଢ଼ୁଆ ଲୋକେ ସ୍ୱପ୍ନ ହୋଇଯିବେ । ତୁମର ଏହି ସିଦ୍ଧାନ୍ତ ସହିତ କାର୍ଯ୍ୟକାରୀ କମିଟିର ସଭ୍ୟମାନେ କ'ଣ ଏକମତ ? କିନ୍ତୁ ମୋ ମନକୁ ମୋଟେ ପାଉନି ।"

"ତେବେ କଲେଜ ଓ ଧନ୍ଦା ମୂଳକ ଶିକ୍ଷା ଭିତରୁ କେଉଁଟି ତୁମେ ପସନ୍ଦ କରୁଛ ଶୁଣେ ?

"ଉଭୟ ଯାକର ଉପାଦେୟତା ଆମ ଗାଁ ପାଇଁ ଅଛି । ଦୁଇଟା ଯଦି ବର୍ତ୍ତମାନ କରାଯାଇ ନ ପାରେ, ତେବେ—।"

ତେବେ ଆଉ କ'ଣ ?

ଶୁଣ ବାସନ୍ତୀ, ମୋ ମୁଣ୍ଡକୁ ଗୋଟିଏ ବୁଦ୍ଧି ପଶିଛି । ବର୍ତ୍ତମାନ ଆମେ ଏଠି ଧନ୍ଦାମୂଳକ ପାଠ୍ୟ କ୍ରମ ଭରତ୍ତି କରିବା । କେତେ ପ୍ରକାର କୁଟୀରଶିଳ୍ପ, ଛୋଟ ଛୋଟ ଶିଳ୍ପ ଆମ ଏଠି ହୋଇପାରିବ, ସେ ସମ୍ବନ୍ଧରେ ପିଲାମାନଙ୍କୁ ଶିକ୍ଷା ଦେବା । ଯେଉଁମାନେ ଏହି ଧନ୍ଦାମୂଳକ ଶିକ୍ଷାକୁ ଆଦରିବେ ନାହିଁ, ଅଥଚ ମେଧାବୀ ଗୁଣ ଭାବରେ କୃତିତ୍ୱ ଅର୍ଜନ କରିଥିବେ ଆମେ ସେମାନଙ୍କୁ ବୃତ୍ତି ଦେଇ ଟାଉନର କଲେଜରେ ପଠାଇବା । ଥରକେ ପାଞ୍ଚ ଦଶ ଜଣରୁ ଅଧିକ ପିଲାଙ୍କୁ ସୁବିଧା ଦେବାନି । କାହିଁକି ନା ଆମ ଆର୍ଥିକ ସମ୍ବଳ ଉପରେ ଆଞ୍ଚ ଆସିବ । ଆମେ ଆମ ଖର୍ଚ୍ଚରେ ଏହି ଧନ୍ଦାମୂଳକ ପାଠ୍ୟକ୍ରମ ପ୍ରବର୍ତ୍ତନ କଲେ,

ଆମ ଆର୍ଥିକ ଅବସ୍ଥା ଉପରେ କମ୍ ବେଶି ଚାପ ପଡ଼ିବନି । ତେବେ ମୁଁ ଭାବୁଛି ଆମେ ଏହାକୁ ସମ୍ଭାଳି ନେଇ ପାରିବା ।"

"ଶିଳ୍ପ ବିଭାଗକୁ ଲେଖିଲେ ସେମାନେ ଏଥିପାଇଁ କ'ଣ କିଛି ସାହାଯ୍ୟ ଦିଅନ୍ତେନି ?"

"ଶିକ୍ଷା ବିଭାଗ ଯେମିତି ଦେଉଛି ସେମିତି ଦେବେ । ଘର, ଯନ୍ତ୍ରପାତି ଖରଚ ଆମର, ଶିକ୍ଷକ ଦେବା ଓ ସେମାନଙ୍କ ଦରମା ଦାୟିତ୍ୱ ଶିଳ୍ପ ବିଭାଗର । ଏହି ପୁଣି ନିର୍ଭର କରୁଛି ସେତେବେଳର ସରକାରଙ୍କ ଆର୍ଥିକ ସମ୍ବଳ ଉପରେ ।

"ତା ଯଦି ହୁଏ, ମନ୍ଦ ହେବନି ! ତେବେ ସେ ଦିଗରେ ଚେଷ୍ଟା କର । କଲେଜ ଶିକ୍ଷା ପାଇଁ ତୁମେ ଯାହା କହୁଛ, ବର୍ତ୍ତମାନ ପାଇଁ ତାହାହିଁ ଉଚିତ ହେବ । ଭବିଷ୍ୟତରେ ଯଦି ଆମର ଆର୍ଥିକ ସ୍ୱଚ୍ଛଳତା ଆହୁରି ଭଲ ହୁଏ, ତେବେ କଲେଜଟିଏ ବସାଇବାକୁ ଚେଷ୍ଟା କରିବ ନିଶ୍ଚୟ ।"

ମୁଁ କେତେଦିନ ହେଲା ତୁମକୁ କହିଲିଣି ବାସନ୍ତୀ, ତୁମ ସ୍କୁଲ ଓ ଅନ୍ୟାନ୍ୟ ସ୍କୁଲଗୁଡ଼ିକର ଆଉ ଅଭାବ, ଅସୁବିଧା କ'ଣ ରହିଗଲା କିଛି କହିଲନି ମୋତେ । ମୁଁ ସବୁ ଅସୁବିଧାକୁ କିଛିଦିନ ପାଇଁ ଗଡ଼ାଇଦେଇ ପାରେ, କିନ୍ତୁ ସ୍କୁଲମାନଙ୍କର ଅଭାବ ଅସୁବିଧାକୁ ମୁହୂର୍ତ୍ତେ ପାଇଁ ଗଡ଼ାଇ ଦେବାକୁ ଚାହେଁନି । ଏହି ବିଭାଗ ଉପରି ଆମର ଭବିଷ୍ୟତ ଗ୍ରାମବାସୀଙ୍କୁ ଗଢ଼ୁଛି ।"

"ମୋ ଜାଣିବାରେ ଆମର କୌଣସି ସ୍କୁଲରେ ସେମିତି କିଛି ଅଭାବ ଅସୁବିଧା ଥିଲା ଭଳି ମୋର ମନେ ହେଉନି । ସବୁ ପ୍ରାୟ ଦୂର ହୋଇଯାଇଛି । ପିଲାମାନଙ୍କୁ ଯଥାରୀତି ବହି, ସ୍ଲେଟ, ଖାତା, ପେନସିଲ ଆଦି ଯୋଗାଇ ଦିଆଯାଉଛି, ପିଲାମାନଙ୍କୁ ପ୍ରତିଦିନ ଦୁଧ ମିଳିବାକୁ ଦିଆଯାଉଛି । ପିଲାମାନଙ୍କ ସ୍ୱାସ୍ଥ୍ୟ ଡାକ୍ତରଙ୍କ ଦ୍ୱାରା ନିୟମିତ ପରୀକ୍ଷିତ ହେଉଛି । ପିଲାମାନଙ୍କ ଖେଳ ପାଇଁ ଫୁଟବଲ ଠାରୁ ଆରମ୍ଭ କରି ସବୁ ପ୍ରକାର ଖେଳ ଯୋଗାଇ ଦିଆଯାଇଛି । ପିଲାମାନଙ୍କ ସ୍କୁଲ ଲାଇବ୍ରେରୀରେ ଯଥେଷ୍ଟ ସଂଖ୍ୟକ ଭଲ ଭଲ ବହି ପଢ଼ିବା ପାଇଁ ଅଛି । ପିଲାମାନଙ୍କୁ ଉତ୍ସାହିତ କରିବା ପାଇଁ ପ୍ରତିବର୍ଷ ପ୍ରାଇଜ୍ ହେଉଛି ଓ ଭଲ ଭଲ ମେଧାବୀ ପିଲାଙ୍କୁ ନାନାପ୍ରକାର

ପୁରସ୍କାର, ବୃତ୍ତି ଆଦି ଦିଆଯାଉଛି । ତେବେ ଗୋଟିଏ ମାତ୍ର ଅଭାବ ଅଛି, ତାହା ହେଉଛି ପିଲମାନଙ୍କୁ ଏକ୍‌ସକରସନ ପାଇଁ ସୁଯୋଗ ଦେବା ।"

"ଠିକ୍ ବେଳେ ମନେ ପକାଇ ଦେଇଛୁ ବାସନ୍ତୀ । ସେଇ କଥାଟା ମୁଁ ପ୍ରବପ୍ରର ଭୁଲିଯାଇଥିଲି । ଏଥର ମୁଁ ସେଥିପାଇଁ ବ୍ୟବସ୍ଥା କରୁଛି । ମାଇନର ସ୍କୁଲ, ହାଇସ୍କୁଲ ଓ ପ୍ରାଇମେରୀ ସ୍କୁଲ ପିଲାମାନେ ଏହି ଶୀତଦିନ ଛୁଟିରେ ଆଖ ପାଖ ଅଞ୍ଚଳର କଳ କାରଖାନା, ଦର୍ଶନୀୟ ସ୍ଥାନମାନ ଦେଖିବାକୁ ଯିବେ । ସେମାନଙ୍କ ପାଇଁ ଖର୍ଚ୍ଚ ଅଟକଳ କରି ଗୋଟିଏ ଗ୍ରାଣ୍ଟ କରାଇ ଦେଇଛି । ତେବେ କେଉଁ ସ୍କୁଲ ପିଲା କେଉଁ ସ୍ଥାନକୁ ଗଲେ ଭଲ ହେବ, ମୋତେ ଗୋଟିଏ ଯୋଜନା କରିଦେଲ ।"

"ତା' ଛଡ଼ା ପିଲମାନଙ୍କୁ ମଝିରେ ମଝିରେ ଶିକ୍ଷଣୀୟ ଚଳଚିତ୍ର ଆଣି ଦେଖାଇଲେ ହୁଅନ୍ତାନି ? ସବୁ ସ୍କୁଲର ପିଲଙ୍କୁ କହନ୍ତେ ଗୋଟିଏ ଯାଗାରେ ଏକାଠି ହୁଅନ୍ତେ, ଚଳଚିତ୍ର ଦେଖାଯାନ୍ତା ।" ବାସନ୍ତୀ କହିଲା ।

"ଖାଲି ପିଲାଏ କାହିଁକି, ଆମ ଗାଁର ସବୁ ଲୋକେ ଦେଖି ପାରନ୍ତେ । ମୁଁ ସେ ସଂପର୍କରେ ଶିକ୍ଷା ବିଭାଗ ସହ ଆଲୋଚନା କରୋଇଛି । ସେମାନେ କହୁଛନ୍ତି ଆମେ ଯଦି ଗୋଟିଏ ପ୍ରୋଜେକ୍ଟର କିଣି ଦିଅନ୍ତେ, ତେବେ ସେମାନେ ପ୍ରତି ଶନିବାର ଦିନ ଆମ ପାଖକୁ ନାନା ଶିକ୍ଷଣୀୟ ଫିଲ୍ମ ପଠାଇ ଦିଅନ୍ତେ । ଆମ ଲୋକ ଆମ ଯନ୍ତ୍ରରେ ଦେଖାଇ ପୁଣି ଶିକ୍ଷାବିଭାଗକୁ ଫେରାଇ ଦିଅନ୍ତେ । ଶିକ୍ଷା ବିଭାଗ ଛଡ଼ା ସ୍ୱାସ୍ଥ୍ୟ ବିଭାଗ, ବନ୍ୟ ବିଭାଗ, ମୃତ୍ତିକା ସଂରକ୍ଷଣ ବିଭାଗ, ଶିଳ୍ପ ବିଭାଗ ଆଦିଙ୍କର ବିଭିନ୍ନ ଶିକ୍ଷଣୀୟ ଫିଲ୍ମ ଲୋକମାନଙ୍କୁ ଦେଖାହେବା ପାଇଁ ଅଛି । ମୁଁ ଭାବୁଛି ଆଉ ଡେରି ନକରି ପ୍ରୋଜେକ୍ଟରଟିଏ ଓ ପରଦାଟିଏ କିଣି ଦେଲେ ହୋଇଯିବ । ଏହା ସେମିତି କିଛି ଖର୍ଚ୍ଚାନ୍ତ ଜନକ ଯନ୍ତ୍ର ନୁହେଁ । ଆମେ ସ୍ୱଚ୍ଛନ୍ଦରେ କିଣି ପାରିବା ।

"ତା ସହିତ ଆମ ଗାଁରୁ ଜଣେ ଦୁଇଜଣ ଲୋକଙ୍କୁ ଏହାକୁ ଚଳାଇବା ପାଇଁ ଟ୍ରେନିଂ ଦେଇ ନେଇ ଆସିଲେ ଆଉ କିଛି ଅସୁବିଧା ହେବନି ଦେଖାଇବାରେ ।" ବାସନ୍ତୀ କହିଲା ।

## ( ଆଠ )

ଉପରେ ୫ଟା ପ୍ରାୟ ପାଞ୍ଚଟା ହେବ । ସନ୍ଧ୍ୟାବେଳେ କାର୍ଯ୍ୟକାରୀ କମିଟିର ମିଟିଂ ଥିବାରୁ ଅମରେଶ ଗାଁ କାମ ଦେଖି ଯାଇ ନ ଥାଏ । ମିଟିଂ ପାଇଁ କାଗଜ ପତ୍ର ସବୁ ସଜାଡୁଥାଏ ସେ ।

ହଠାତ୍ ଏକ ମଟରଗାଡି ଆସି ତା ଘରର ଗେଟ୍ ପାଖରେ ରହିଲା । ଗାଡିରେ କିଏ ଆସିଲା ଭାବି ସ୍କ୍ରିନ ଫାଙ୍କ ଦେଇ ଲକ୍ଷ୍ୟକଲା ଅମରେଶ । ମଟର ଗାଡ଼ିରୁ ଓହ୍ଲାଇଲେ ଜଣେ ଭଦ୍ର ମହିଳା, ଆଖିରେ କଳା ଚଷମା, ମୂଲ୍ୟବାନ ଶାଢ଼ୀଟିଏ ପିନ୍ଧିଛନ୍ତି । ହାତରେ ଏକ ଭେନିଟି ବ୍ୟାଗ୍ । କିଏ ତାଙ୍କ ଘରକୁ ଆସିଲା ଜାଣିବା ପାଇଁ ଅମରେଶ ଦୁଆର ପାଖକୁ ଚାଲିଗଲା । ଗାଡ଼ିରୁ ଓହ୍ଲାଇ ତା ଆଡ଼କୁ ଆସୁଥିବା ଭଦ୍ର ମହିଳାଙ୍କୁ ଅନାଇ ତା' ପାଟିରୁ ବାହାରି ପଡ଼ିଲା "କିଏ ଶୁଭ୍ରା ? ତୁମେ ହଠାତ୍ କୁଆଡ଼େ ଚାଲି ଆସିଲ ? ଆମେରିକାରୁ କେବେ ଆସିଲ ଶୁଣେ ?

ଶୁଭ୍ରା ଘଙ୍କେ ସଙ୍ଗେ ଅମରେଶର ପାଦତଳେ ପ୍ରଣାମ କରି ଗୋଡ଼ ଧୂଳି ନେଇଁ ନେଇଁ କହିଲା, "ସାର, ଆପଣ ସିନା ମୋତେ ଭୁଲିଯାଇଛନ୍ତି ? ମୁଁ କିନ୍ତୁ ଆପଣଙ୍କୁ ଭୁଲି ପାରିନ । ଗତକାଲି ଆମେରିକାରୁ ଆସି ପାଟନାରେ ପହଞ୍ଚିଲି । ବାପାଙ୍କୁ ଆପଣଙ୍କ କଥା ପଚାରିଲାରୁ ସେ କହିଲେ ଆପଣ ବର୍ତ୍ତମାନ ଏଠି

ରହୁଛନ୍ତି । ଆପଣ ପାଟନା କଲେଜର ଅଧ୍ୟାପକ ଚାକରୀ ଛାଡ଼ି ଦେଇ ଏହି ଗଠନମୂଳକ କାମକୁ ଆଦର୍ଶ ଦେଇଥିବାରୁ ସେ ଦୁଃଖ କରୁଥିଲେ ।

'ହଁ, ଶୁଭ୍ରା, ଯିଏ ମୋର ଏହି କାର୍ଯ୍ୟକୁ ଶୁଣୁଛି ସେ ଦୁଃଖ କରୁଛି । ମୋ ବାପା ତ ମୋ ସହିତ ସଂପର୍କ ଛାଡ଼ାଇ ଦେଇଛନ୍ତି; ଏଥିପାଇଁ । ଏଥିରେ ତୁମ ବାପା ଦୁଃଖ କଲେ ବୋଲି ଶୁଣିଲେ କାହିଁକି ମନ କଷ୍ଟ କରିବ ?

'ଆରେ, ତୁମେ ବାଣ୍ଡଟାରେ ଠିଆ ହୋଇ ରହିଲ ଯେ ? ଆସ, ଭିତରକୁ ଆସ ।" ଏତକ କହି ଶୁଭ୍ରାକୁ ଘର ଭିତରକୁ ଡ଼ାକନେଲି ଅମରେଶ । ଶୁଭ୍ରାକୁ ବାଣ୍ଡ ଘରେ ବସାଇ ଦେଇ ଭିତରକୁ ଚାଲିଯାଇ ଡ଼ାକିଆଣିଲି ବାସନ୍ତୀକୁ ।

ବାସନ୍ତୀକୁ ଶୁଭ୍ରା ସହିତ ପରିଚୟ କରିଦେବା ପାଇଁ କହିଲି, 'ଦେଖ, ବାସନ୍ତୀ, ଇଏ ହେଉଛନ୍ତି ମାର୍କିନ ଦେଶବାସୀ ସେହି ଭାରତୀୟ ଲଳନା ଶୁଭ୍ରା, ଯାହାଙ୍କ କଥା ତୁମେ ମୁଁଙ୍କ ଠିରୁ ସେ ଦିନ ମୋତେ ପଚାରୁଥିଲ ।

ଶୁଭ୍ରା ଆଡ଼କୁ ଅନାଇ, "ଇଏ ହେଉଛନ୍ତି ମୋର ସହଧର୍ମିଣୀ ବାସନ୍ତୀ ।" ବାସନ୍ତୀକୁ ଦେଖି ଶୁଭ୍ରା ଚେୟାରୁ ଉଠିପଡ଼ି ନମସ୍କାର ଜଣାଇ କହିଲି, ' ଆପଣଙ୍କୁ ଦେଖି ଅତ୍ୟନ୍ତ ଖୁସି ହେଲି ବାସନ୍ତୀ ଦେବୀ । ସାରଙ୍କ ତତ୍ତ୍ୱନେବା ପାଇଁ ଯାହାହେଉ ଆପଣ ଆସି ଯାଇଛନ୍ତି ଦେଖି ଖୁସି ହେଉଛି । ଆମେରିକାରେ ରହିଲେ ବି ସାରଙ୍କ ତତ୍ତ୍ୱ କିଏ ନେଉଥିବ, ସେଇଥାଏ ମୋର ସବୁବେଳେ ଚିନ୍ତା । ଯାହା ହେଉ, ଆପଣ ଆସି ଯାଇଛନ୍ତି, ମୋର ଚିନ୍ତା ଗଲା ।

ବାସନ୍ତୀ ହସି, ହସି, କହିଲି, "ଆପଣ ତାହା ହେଲେ ସେହି ଶୁଭ୍ରା ଦେବୀ—"ଯେ—"

"ନାଁ, ନାଁ, ବାସନ୍ତୀ, ସେ ଦେବୀ ନୁହଁନ୍ତି, ସେ ହେଉଛନ୍ତି ମିସ୍ ଶୁଭ୍ରା ମାଲ୍‌ହୋତ୍ରା" ଅମରେଶ କହିଲା ହସି ହସି !

ସାର ଆପଣଙ୍କର ସବୁବେଳେ ସେହି କଥା । ମୋତେ ଚିଡ଼ାଇବାକୁ ଖୁବ ଭଲ ଲାଗେ ଆପଣଙ୍କୁ ? କେଉଁ ଦିନଆ କଥା ଆପଣ ମନେ ରଖିଛନ୍ତି—? ମୁଖରେ କୃତ୍ରିମ ରାଗ ଫୁଟାଇ କହିଲା ଶୁଭ୍ରା ।

"ମୁଁ ଆପଣଙ୍କ ଚିଠିରୁ ଆପଣଙ୍କୁ ଯାହା ଅନୁମାନ କରିଥିଲି, ଆପଣେ ନିଶ୍ଚୟ ଚମତ୍କାର ହୋଇଥିବେ, ବାସ୍ତବରେ ମୁଁ ଆଜି ଆପଣଙ୍କୁ ତାହାହିଁ ଦେଖୁଛି ।

"ତୁମେ କେତେ ଦିନ ପାଇଁ ଭାରତ ଆସିଛ ଶୁଭ୍ରା ?" ଅମରେଶ ପଚାରିଲେ ।

"ସାର୍, ମୋଟେ ମାସଟିଏ ପାଇଁ ଆସିଛି । ବାପା ଏବେ ଆମେରିକା ଯାଇ-ଥିଲେ, ତାଙ୍କରି ସଙ୍ଗରେ ଚାଲିଆସିଲି, ଅପଣ ସମସ୍ତଙ୍କୁ ଦେଖିବା ପାଇଁ । ଆସନ୍ତା ସେପ୍ଟେମ୍ବର ମାସ ୧୦ ତାରିଖ ଦିନ ଭାରତରୁ ବିଦାୟ ନେଇ ଚାଲିଯିବି ।

"ଆମେରିକାରେ ତୁମ ଗବେଷଣା କେମିତି ଚାଲିଛି କୁହ ଶୁଭ୍ରା ?"

"ସାର୍, ଖୁବ୍ ଭଲ । ମୁଁ ମୋ ଗବେଷଣାରେ ଏତେ ଖୁସି ଯେ ମୁଁ ବେଳେ ବେଳେ ନିଜକୁ କାମ ଭିତରେ ହଜାଇଦିଏ, ମୋ ଅଧ୍ୟାପିକା ମିସ୍ କ୍ୟାରେଲିନ୍ କାରୁସେ । ବର୍ତ୍ତମାନ କଲମ୍ବିଆ ବିଶ୍ୱବିଦ୍ୟାଳୟର ପ୍ରଧାନ ଅଧ୍ୟାପିକା ଅଛନ୍ତି । ତାଙ୍କର କେନସର ରୋଗ ବିରୋଧି ଭେଷଜ ଉପରେ ଯେଉଁ ଗବେଷଣା ଚାଲିଛି, ତାହା ସାରା ପୃଥିବୀରେ ପ୍ରସିଦ୍ଧି ଅର୍ଜନ କରିଛି । ସେହି ଗବେଷଣାରେ ମୁଁ ତାଙ୍କର ଏକ ସହକର୍ମୀ ଭାବରେ କାମ କରୁଛି । କି ଚମତ୍କାର ସେ ଗବେଷଣା, ମୁଁ ଭୁଲି ପାରିବନି ସାର । ଆମେ ବର୍ତ୍ତମାନ କ୍ୟାନସର ରୋଗ ପାଇଁ ଏମିତି ଏକ ଭେଷଜ ଆବିଷ୍କାର କରିବାକୁ ଯାଉଛୁ, ଯାହା ଫଳରେ କ୍ୟାନସର ରୋଗ ଆଉ ପୂର୍ବ ଭଳି ଏତେ ମାରାତ୍ମକ ହୋଇ ରହିବନି । ବହୁ ପ୍ରକାର କେନସର ରୋଗକୁ ଏହା ଭଲ କରିପାରିବ । ଏହା ଏକ ଏଣ୍ଟିବାୟୋଟିକ୍ସ ଶ୍ରେଣୀର ଭେଷଜ, ଏହାର ଦକ୍ଷତା ନେଇ ବର୍ତ୍ତମାନ ରୋଗୀମାନଙ୍କ ଉପରେ ପରୀକ୍ଷା ଚାଲିଛି । ଆମେ ଯଦି କୃତକାର୍ଯ୍ୟ ହେଉ ଏ ଗବେଷଣାରେ, ମୋ ଜୀବନରେ ଏହା ସବୁଠାରୁ ମହତ୍ତ୍ୱ ପୂର୍ଣ୍ଣ କାର୍ଯ୍ୟ ହେବ । ଏହା ଫଳରେ ଲକ୍ଷ ଲକ୍ଷ କ୍ୟାନସର ରୋଗୀ ଯେ ମୃତ୍ୟୁ ମୁଖରୁ ଫେରି ଆସିବେ, ଏଥିରେ ସନ୍ଦେହ ନାହିଁ । ଏହା କ'ଣ କମ୍ ଆନନ୍ଦର କଥା ହେବ ସାର୍ ?"

"ମୁଁ କ'ଣ ମୋ ବିଷୟରେ ଏତେ କହି ଗଲିଣି । ଆପଣ ଏଠି କ'ଣ କରୁଛନ୍ତି, ଦେଖିବାକୁ ଆସିଛି । ଅଥଚ ମୁଁ ମୋ କଥା ଶୁଣିବା ପରିବର୍ତ୍ତରେ ମୋ ନିଜ କଥାହିଁ କହି ଚାଲିଛି । ଆପଣ ଜୀବନରେ ଆଇ. ଏ. ଏସ୍. ଚାକିରି ଛାଡ଼ିଲେ,

ବୈଜ୍ଞାନିକ ଗବେଷଣା ଛାଡ଼ିଲେ, ଅଧ୍ୟାପକ ଚାକିରି ଛାଡ଼ିଲେ ବର୍ତ୍ତମାନ ଆପଣ ଯାହାକୁ ଆଦର ନେଇଛନ୍ତି, ତାହା ଉପରେ ଆପଣଙ୍କୁ ଆନନ୍ଦ ଦେଉଛି, ତାହାକୁ ଦେଖିବା ପାଇଁ ମୁଁ ଏତେ ବାଟ ଧାଇଁ ଆସିଛି ସାର୍ ।"

"ତୁମ କୃତିତ୍ୱ ତୁଳନାରେ ମୋ କୃତିତ୍ୱ କିଛି ନୁହେଁ ଶୁଭ୍ରା ? ତୁମେ ଯେତେବେଳେ ସାରା ଜନସମାଜର କଲ୍ୟାଣ ଦିଗରେ ନିଜକୁ ନିୟୋଜିତ କରିଛ ମୁଁ ମାତ୍ର କେତୋଟି ପରିବାରର କଲ୍ୟାଣ ପାଇଁ ଲାଗି ପଡ଼ିଛି । ଗାଁ ମାନଙ୍କର ଉନ୍ନତି, ଗାଉଁଲି ଲୋକଙ୍କ ସେବା ହୋଇଛି ମୋ ଜୀବନର ପ୍ରଧାନ କର୍ତ୍ତବ୍ୟ । ସେଥିରେ ମୁଁ ଯାହା ଶାନ୍ତି ପାଉଛି । ତେବେ ଏହା ନିଶ୍ଚିତ ଯେ ଆଇ. ଏ. ଏସ ଜୀବନ. ଅଧ୍ୟାପକ ଜୀବନ କି ଗବେଷକ ଜୀବନଠାରୁ ଅଧିକ ଶାନ୍ତି ମିଳୁଛି ଏଠି । ତେବେ ତୁମ ଶାନ୍ତି ଓ ଏ ଶାନ୍ତି ଭିତରେ ଆକାଶ ପାତାଳ ପ୍ରଭେଦ । ତୁମେ କାହିଁ ନିଉୟର୍କର ନିବେୁ ମ୍ୱୀ ସ୍କାଏସ୍କ୍ରେପର ଏମ୍ପାୟାର ଷ୍ଟେଟ ବିଲଡ଼ିଂ, ମୁଁ କାହିଁ ନିଗ୍ନ ପଲ୍ଲୀର ଚାଳିଆ ଘର ।ଦୁଇଟି ଭିତରେ ତୁଳନା କରଯାଇ ନ ପାରେ ଶୁଭ୍ରା ।"

"ଆପଣ ଏତେ ଦୂରରୁ ଅସିଲେଣି ଶୁଭ୍ରାଦେବୀ, କିଛି ଖାଇ ନ ଥିବେ ନିଶ୍ଚୟ । ଆପଣମାନେ କଥା ହେଉଥାନ୍ତୁ, ମୁଁ କିଛି ଜଳଖିଆ ତିଆରି କରି ଆଣେ । କିନ୍ତୁ ଶୁଭ୍ରାଦେବୀ, ଆପଣ ଆମ ଦେଶର ଘରଶିଆ ଜଳଖିଆ ଖାଆନ୍ତି ତ ?

"ତୁମେ କ'ଣ ଯେ କହୁଛ ବାସନ୍ତୀ" "ଅମରେଶ କହିଲ "ମୁଁ କିଛି ବୁଝି ପାରୁନି । ଶୁଭ୍ରା ବର୍ତ୍ତମାନ ମାର୍କିନ ବାସିନ୍ଦା, ସେ କ'ଣ ଆଉ ଆମ ଦେଶର ଜଳଖିଆ ଖାଉଥିବ ? ସେ ବର୍ତ୍ତମାନ ଆମେରିକାର ହେମବର୍ଗର, ଫ୍ରାଙ୍କଫର୍ଟରେ ହଟ ଡ଼ଗ, ଆଦିରେ ନିଜକୁ ବୁଡ଼ାଇ ଦେଇଥିବ । କିଶୋରୀ ବୟସରେ ଯେ ଆମେରିକା ନ ଯାଇ ଆମେରିକା ପୋଷାକ ଛଡ଼ା ଅନ୍ୟ କିଛି ପିନ୍ଧୁ ନ ଥିଲ, ସେ ବର୍ତ୍ତମାନ ଖୋଦ୍ ଆମେରିକାରେ ଥାଇ ସେଇ ଘରଶିଆ ଖାଦ୍ୟ କେମିତି ଖାଉଥିବ କହିଲ ?

"ଇସ୍. ଆପଣ କ'ଣ ଯେ କହୁଛନ୍ତି ? ଆପଣଙ୍କ ଛାତ୍ରୀ ଆପଣଙ୍କଠାରୁ ଯେଉଁ ଶିକ୍ଷା ନେଇଛି, ସେ କେବେ ନିଜ ଦେଶର ଖାଦ୍ୟ, ସଂସ୍କୃତିକୁ ଛାଡ଼ି ଅନ୍ୟ

ଦେଶର ଖାଦ୍ୟ ସଂସ୍କୃତିକୁ ଆଦର ନେଇପାରେ ? ଆପଣଙ୍କ ସହ ମୋର ପ୍ରଥମ ସାକ୍ଷାତରେ ସେହି ଯେଉଁ ଘାଷା ପ୍ରବଚନ, ମୁଁ କେବେ ତାକୁ କ'ଣ ଭୁଲି ପାରିବ ସାର୍ ? "ଆଖିକୁ ନଚାଇ କହିଲା ଶୁଭ୍ରା ।

"ହେଲେବି, ତୁମେତ ଭାରତୀୟ ଖାଦ୍ୟ ଭୁଲି ସାରିବଣି ।" ବାସନ୍ତୀ ହସି ହସି ପଚାରିଲା ।

ହସିଲା ଶୁଭ୍ରା, "ଆପଣ ଜାଣିନାହାନ୍ତି ବାସନ୍ତୀ ଦେବୀ, ମୁଁ ଆମେରିକାରେ ରହିଲେ ବି ଭାରତୀୟ । ମୁଁ ଆମେରିକାରେ ସିନା ରହେ, ହାତରେ ରାନ୍ଧିକରି ଖାଏଁ । ଆମେରିକାରେ ଥାଇ ମଧ୍ୟ ମୋର ସବୁବେଳେ ଭାରତୀୟ ଖାଦ୍ୟ, ଭାରତୀୟ ରନ୍ଧା ଓ ଭାରତୀୟ ପୋଷାକ ।

"ତୁମେ କ'ଣ ରାନ୍ଧି ଜାଣିଛ ଶୁଭ୍ରା ?"

"ସାର, ଆପଣ କ'ଣ ଯେ କହୁଛନ୍ତି ମୁଁ ବୁଝିପାରୁନି ? ଯେତେହେଲେ ବି ଆମେ ନାରୀ ଜାତି, ରାନ୍ଧିବାଟା ଆମର ବାର୍ଥରାଇଟ୍ । ରାନ୍ଧି ନ ଜାଣିବି କେମିତି ?

ହେଲେ ତୁମେ ଧନୀର ଦୁଲାଳୀ, ରନ୍ଧା ଘର ଦୁଆର ଦେଖିବା ଦୁର୍ଭାଗ୍ୟ ତୁମର କେବେ ଆସିବା କ'ଣ ସମ୍ଭବ ?"

"ଇସ୍ ?" ଆଖିକୁ ନଚାଇ ଉତ୍ତର ଦେଲା ଶୁଭ୍ରା ।

"ଆପଣଙ୍କର ଦେଶପ୍ରୀତି ଦେଖି ମୁଁ ଅତ୍ୟନ୍ତ ଖୁସି ହେଉଛି ଶୁଭ୍ରାଦେବୀ । ଧନୀର ଦୁଲାଳୀ ହୋଇ ଧନୀ ଦେଶରେ ରହି ମଧ୍ୟ ଆପଣ ଆମ ଗରିବ ଦେଶକୁ ଯେ ଭୁଲିପାରିନାହାନ୍ତି, ଏହା ଆମ ଦେଶ ପକ୍ଷରେ କମ୍ ବଡ଼ ଗୌରବର ବିଷୟ ନୁହେଁ ।"

ଅମରେଶ ଏହି ଗାଁ ଗୁଡ଼ିକରେ କ'ଣ କ'ଣ ସବୁ କରିଛି, ଦିନେ ଶୁଭ୍ରାକୁ ନେଇ ସେ ସବୁ ବୁଲାଇ ଦେଖାଇ ଆଣିଲା । ଗାଁର ଲୋକଙ୍କ ଅବସ୍ଥା କ'ଣ ଥିଲା; ବର୍ତ୍ତମାନ କ'ଣ ହୋଇଛି, ନିଜ ଆଖିରେ ଦେଖି ଶୁଭ୍ରା ସ୍ତମ୍ଭୀଭୂତ ହୋଇ ପଡ଼ିଲା । ବାହାରୁ ଯେମିତି କିଛି ସରକାରୀ ସାହାଯ୍ୟ ନ ପାଇ ଗାଁର ଲୋକଙ୍କୁ ସଂଗଠିତ କରାଇ ଗାଁ ଲୋକଙ୍କ ଦୈହିକ ପରିଶ୍ରମ ଫଳରେ ସେ ସେ

ଏସବୁ କରିପାରିଛନ୍ତି ଦେଖି ନିଜ ଆଖିକୁ ବିଶ୍ୱାସ କରି ପାରିଲାନି ଶୁଭ୍ରା । ଲୋକେ କହନ୍ତି ଗିରିଜନମାନେ ଅଳସୁଆ, ଦିନରେ ଶୁଅନ୍ତି, କାମ କରିବା ଜାଣିନାହାନ୍ତି, ଦାୟିତ୍ୱ କ'ଣ ବୁଝନ୍ତି ନାହିଁ । ସେହିମାନଙ୍କୁ ନେଇ କ'ଣ ଯେ କରାଯାଇପାରେ, ପୃଥିବୀର ଲୋକମାନେ ଏଠାକୁ ଆସି ଥରେ ନିଜ ଆଖିରେ ଦେଖିଯିବା ଉଚିତ୍ ।

ଅମରେଶର ଏହିସବୁ କୃତିତ୍ୱ ଦେଖି ଦେଖି ଶୁଭ୍ରା କହିଲା "ସାର, ଆପଣ ଜୀବନର ପ୍ରକୃତ ଉଦ୍ଦେଶ୍ୟକୁ ଠିକ ଭାବରେ ଉପଲବ୍ଧି କରି ପାରିଛନ୍ତି । ଆପଣ ଏହି ଯେଉଁ ଜନମଙ୍ଗଳ କାମରେ ଲାଗିଛନ୍ତି, ଏହାହିଁ ଆପଣଙ୍କୁ ପ୍ରକୃତ ଶାନ୍ତି ଆଣିଦେଇ ପାରିବ । ଆପଣଙ୍କର ଏହି କାର୍ଯ୍ୟ ଦ୍ୱାରା ମାନବ ସମାଜର ଯେଉଁ ଉପକାର ହେଉଛି, ଶତ ଶତ ବ୍ୟଥିତ ଆତ୍ମାର କେତେ ଅସୁମାରି ସ୍ନେହାଶିଷ ଯେ ଆପଣଙ୍କ ଉପରେ ବର୍ଷଣ ହେଉଥିବ, ଆପଣ ଜାଣିପାରୁ ନାହାନ୍ତି ସାର । ଆପଣ ଆଜି ଯାହା କରି ଦେଖାଇ ଦେଇଛନ୍ତି, ସାରା ପୃଥିବୀ ଏହାକୁ ସ୍ୱାଗତ କରିବା କଥା । ପୃଥିବୀରେ ଅନ୍ୟ କେଉଁଠି କେହି ଏମିତି ଏକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି କି ନାହିଁ ସନ୍ଦେହ । ମହାତ୍ମାଗାନ୍ଧିଙ୍କ ଅହିଂସା ପରୀକ୍ଷା ପରେ ଏହା ହେଉଛି ଆପଣଙ୍କର ଦ୍ୱିତୀୟ ପରୀକ୍ଷା । ମହାତ୍ମା ଗାନ୍ଧିଙ୍କ ଅହିଂସା ଭଳି ଆପଣଙ୍କ କାମ ସବୁଦିନ ପାଇଁ ଲୋକଙ୍କ ଆଖିରେ ଆଦର୍ଶ ହୋଇ ରହିଥିବ । ଆପଣ ଯଥାର୍ଥରେ ମହାତ୍ମା ଗାନ୍ଧିଙ୍କ ପରେ ଦ୍ୱିତୀୟ ମହାତ୍ମା ।"

ହସିଲା ଅମରେଶ, "ଛି, ଶୁଭ୍ରା, ତୁମେ ଯୁଗମାନବ ମହାତ୍ମା ଗାନ୍ଧିଙ୍କ ସହିତ ମୋତେ କ'ଣ ତୁଳନା କରୁଛ ? କାହିଁ ମହାତ୍ମା ଗାନ୍ଧି, କାହିଁ ମୁଁ ?"

"ଆପଣ ସେଭଳି କହିବା ଆପଣଙ୍କ ମହାନୁଭବତାର ପରିଚାୟକ ସାର୍ । ତେବେ ମୋତେ ଦୁଃଖ ଲାଗେ ଯେଉଁ ଦେଶ ମହାତ୍ମା ଗାନ୍ଧିଙ୍କର ଏତେ ବଡ଼ ଆଦର୍ଶକୁ ରଖି ପାରିଲାନି, ମହାତ୍ମା ଗାନ୍ଧିଙ୍କୁ ହତ୍ୟା କରିସାରି ତାଙ୍କ ଆଦର୍ଶକୁ ତିଳେ ତିଳେ କରି ହତ୍ୟା କରି ଚାଲିଛି, ସେହି ଦେଶରେ ଆପଣଙ୍କ ଆଦର୍ଶ କି ପ୍ରତିକ୍ରିୟା ସୃଷ୍ଟି କରିବ, ମୁଁ ଭାବି ପାରୁନି ସାର୍ । ମହାତ୍ମା ଗାନ୍ଧିଙ୍କ ବିରାଟ ଆଦର୍ଶକୁ ଯଦି ଏ ଦେଶ ରଖି ପାରିଲାନି, ଆପଣଙ୍କ ଏ ଆଦର୍ଶ ଯେ ରହିବ, ସେ ବିଶ୍ୱାସ ମୋର ନାହିଁ ସାର୍ । ଆପଣଙ୍କ ଏ ବିରାଟ ସ୍ୱାର୍ଥ ତ୍ୟାଗ ଆପଣଙ୍କ ନିଜ ଭାଷା ଚଷୁକୁଟାରେ ଯେମିତି

ପର୍ଯ୍ୟବସିତ ନ ହୁଏ, ଆମ ଦେଶର ଅଜ୍ଞ ଜନତା କ'ଣ ଏହାକୁ ଉପଲବ୍ଧି କରି ପାରିବେ ?

"ଛାଡ଼ ସେକଥା ଶୁଭ୍ରା । ସେଥିପ୍ରତି ମୋର ଦୃଷ୍ଟି ନାହିଁ । ମୁଁ ଯେ କେତୋଟି ପରିବାରର ଉପକାର କରି ଯାଉଛି, ସେତିକ ମୋର ଯଥେଷ୍ଟ । ମୁଁ ସେମିତି କିଛି ଆଦର୍ଶ ସୃଷ୍ଟି କରି ଯାଉନି ଯାହା ଧ୍ୱଂସ ପାଇଗଲେ ମୋର ମନ କଷ୍ଟ ହେବ ।

× × ×

ଅମରେଶଙ୍କର ପଦଧୂଳି ନେଇଁ ନେଇଁ ବାଷ୍ପ ଗଦଗଦ କଣ୍ଠରେ କହିଲା ଶୁଭ୍ରା, "ସାର, ମୁଁ ଆଜି ଚାଲି ଯାଉଛି । କିନ୍ତୁ ଆପଣଙ୍କର ଏହି ଆଦର୍ଶ ମୋ ଜୀବନରେ ଚିରଦିନ ଉଜ୍ଜ୍ୱଳିତ ହୋଇ ରହିଥିବ । ଆପଣଙ୍କୁ ଅନ୍ୟମାନେ ମହାତ୍ମା କହନ୍ତୁ ବା ନ କହନ୍ତୁ ଆପଣ ମୋ ହୃଦୟରେ ମହାତ୍ମା ଭାବରେ ଚିରଦିନ ରହିଯିବେ । ଆପଣ ମୋର ଖାଲି ନମସ୍ୟ ନୁହଁନ୍ତି, ସାରା ବିଶ୍ୱର ନମସ୍ୟ ।"

ହସିଲେ ଅମରେଶ, "କ'ଣ ଏସବୁ ଜେଣୁ ଗୁଡ଼ାଏ କହୁଛ ଶୁଭ୍ରା । ତୁମକୁ ଯେତେବେଳେ ଦେଖିଲେ ହେଁ ମୋର ତୁମ ସହିତ ପ୍ରଥମ ସାକ୍ଷାତର ସେହି ଦୃଶ୍ୟ ଆଖି ଆଗରେ ନାଚିଯାଏ । ଆଜି ସେହି ଚପଳମତି ବାଳିକାସୁଲଭ ମନୋଭାବ ସଂପନ୍ନା ଶୁଭ୍ରାର ସମାଧି ଉପରେ ଠିଆ ହୋଇଛି ଅତି ଦାୟିତ୍ୱ ସମ୍ପନ୍ନା ପୃଥିବୀର ଜଣେ ଅଦ୍ୱିତୀୟା ପ୍ରଖ୍ୟାତନାମା ବୈଜ୍ଞାନିକ ଶୁଭ୍ରା । ମୋତେ ବଡ଼ ଖୁସି ଲାଗେ ଶୁଭ୍ରା, ତୁମେ ମୋତେ ଭୁଲି ନ ପାରି ମନେ ରଖିଛ । ବେଳେବେଳେ ମନେ ପକାଇ ଚାଲି ଆସୁଛ । ତୁମଭଳି ବହୁ ଝିଅ ମୋଠାରୁ ପାଠ ପଢ଼ି ଯାଇଛନ୍ତି, କେହି ମୋତେ ଦ୍ୱିତୀୟ ଥର ପାଇଁ ସ୍ମରଣ କରନ୍ତି ନାହିଁ । ତୁମେ କିନ୍ତୁ ଏହାର ଏକ ବିରାଟ ବ୍ୟତିକ୍ରମ । ତୁମ ଭଳି ଛାତ୍ରୀଟିଏ ପାଇ ମୁଁ ଆଜି ନିଜକୁ ଗୌରବାନ୍ୱିତ ମନେ କରୁଛି ଶୁଭ୍ରା ।"

କାର୍‌ରେ ବସିବା ପୂର୍ବରୁ ବାସନ୍ତୀଙ୍କୁ ନମସ୍କାର ଜଣାଇ ବିଦାୟ ନେଲା ଶୁଭ୍ରା । କାର୍‌ଟି ଗାଁ ଭିତରୁ ଛୁଟି ଚାଲିଲା ବଡ଼ ରାସ୍ତାରେ । କାର୍‌ଟି ଦୃଷ୍ଟି ପଥରୁ ଅନ୍ତର୍ହିତ ହେଲା ପର୍ଯ୍ୟନ୍ତ ଅନାଇ ରହିଥିଲେ ଅମରେଶ ଓ ବାସନ୍ତୀ ।

× × ×

"ଶୁଣିଲଣି, ବୋଉ ଆଜ ଚିଠି ଦେଇଛନ୍ତି । ବାପାଙ୍କର ବଦଳି ହୋଇଛି ପାଟନାକୁ । ମୁଙ୍ଗେର କଲେଜ ଛାଡି ସେ ବର୍ତ୍ତମାନ ପାଟନା ସାଏନ୍ସ କଲେଜର ପ୍ରିନ୍ସିପାଲ ଭାବରେ ଯୋଗ ଦେଇଛନ୍ତି । ପାଟନାରେ ଭଆର ହୋଇଥିବା ଘରଟି ଭଡ଼ା ଲଗାଇ ଦିଆଯାଇଛି । ସେମାନେ ରହୁଛନ୍ତି ସରକାରୀ ବାସଭବନରେ ।"

"ଆଉ, କଣ ଲେଖିଛି ବୋଉ ? ବାପାଙ୍କ ଦେହଟା ଭଲ ଅଛି ତ ? ବାପା ଆମ୍ଭ କଥା ପଚାରନ୍ତି କି ନାହିଁ ସେ କଥା କିଛି ଲେଖିଛି ବୋଉ ?"

"ବୋଉ ଆଗ ଚିଠିରେ ଲେଖିଥିଲେ ବାପା ଭୁଲରେ ଆମ କଥା ପଚାରନ୍ତି ନାହିଁ । ବାପାଙ୍କ ରାଗ କ'ଣ ଏତେ ଶୀଘ୍ର ଥଣ୍ଡା ହେବ, ଯେ ସେ ପୁଣି ଆମ କଥା ପଚାରିବେ ?

"ମୁଁ ଆଉ ସେ ବିଷୟ କିଛି ଭାବୁନି ବାସନ୍ତୀ । ଯାହା ହେବାର ଥିଲା ହୋଇଗଲା, ପୁଣି ଯାହା ହେବାର ଥିବ, ତାହା ହେବ । ଆମକୁ ତ ଏହି ଗାଁ କଥା ଚିନ୍ତା କରିବାକୁ ବେଳ ମିଳୁନି । ନିଜ କଥା ଚିନ୍ତା କରିବାକୁ ବେଳ କେଉଁଠିବେଳେ ?

× × ×

ଆମ ଗାଁରେ ଛୋଟ ଛୋଟ କାରଖାନା ବସିବା କଥା କେତେ ଦୂର ଗଲା ? ଟାଟା ନଗରର ପଲିଟେକନିକ ସ୍କୁଲରେ ଆମର ଯେଉଁ ପିଲାମାନେ ପଢ଼ୁଥିଲେ, ସେମାନେ ତ ଏହି ବର୍ଷ ପାସ କରି ଆସିବେ । ସେମାନଙ୍କୁ ତ କାମ ଯୋଗାଇବାକୁ ପଡ଼ିବ ।" ବାସନ୍ତୀ ପଚାରିଲା ।

"ତୁମେ ତ ଜାଣିଛ, ଆମ କାର୍ଯ୍ୟକାରୀ ସମିତିରେ ବର୍ତ୍ତମାନ କେତୋଟି କାରଖାନା ବସିବା ସ୍ଥିର ହୋଇଛି । ସେହି ସବୁ କାରଖାନା ଭିତରେ ଛୋଟ ଛୋଟ କାଗଜ କଳ, ଚିନି କଳ, ତେଲ କଳ, ଖୋଟ କାରଖାନା, ଅଟାକଳ, ଧାନକଳ, ଆଦି ବସାଇବା ପାଇଁ ଠିକ୍ କରାଯାଇଛି । ଏହି କାରଖାନା

ଗୁଡ଼ିକର କଞ୍ଚାମାଲ ଆମର ଏଠି ଉତ୍ପାଦିତ ହୁଏ । ତେଣୁ କାରଖାନାଗୁଡ଼ିକୁ ଚଳାଇବାରେ ଅସୁବିଧା ହେବନି । କଞ୍ଚାମାଲର ପରିମାଣ ବେଶି ନ ଥିବାରୁ କାରଖାନା ଗୁଡ଼ିକୁ ଛୋଟ ଆକାରରେ ଆରମ୍ଭ କଲେ ଆମର କିଛି ଅସୁବିଧା ହେବନି ।''

''ଆମର ଯେଉଁସବୁ କଞ୍ଚାମାଲ ଏଠି ଉତ୍ପାଦିତ ହେଉଛି ସେଥିରେ କାଗଜ କଳ ପାଇଁ କଞ୍ଚାମାଲ ଥିଲାଭଳି ମୋର ତ ମନେ ହେଉନି ?'' ବାସନ୍ତୀ ପଚାରିଲା ।

''କାହିଁକି, ଏ ଯେଉଁ କାଗଜ କଳ ବସିବ ଏହା କ'ଣ ଆକାରରେ ବଡ଼ ହେବକି ? ଏହାର ଆକାର ଛୋଟ । ଏଥିରେ ନଡ଼ା, ବାଲିଙ୍ଗ ଦଳକୁ ବ୍ୟବହାର କରି କାଗଜ ତିଆରି କରିହେବ । ଆମର ଏ ଅଞ୍ଚଳରେ କେତେ ବାଲିଙ୍ଗ ଦଳ ହେବାର ଦେଖୁଛି ତ ? ସେ ଗୁଡ଼ିକ ବଢ଼ିଆ କାଗଜରେ ପରିଣତ ହୋଇପାରିବ । ତା' ଛଡ଼ା ନଡ଼ାର ତ କିଛି ବ୍ୟବହାର ଆମର ଏଠି ନାହିଁ । ସେ ସବୁ କାଗଜ ତିଆରି କଲେ ଲାଭ ଅଛି ।

''କିନ୍ତୁ ଏତେଗୁଡ଼ିଏ କାରଖାନା ପାଇଁ ଆମର ଆର୍ଥିକ ସମ୍ବଳ କାହିଁ ?'' ବାସନ୍ତୀ ପଚାରିଲା ।

''ଆମ ବେଙ୍କ ସହିତ ମୁଁ କଥାବାର୍ତ୍ତା କରିସାରିଛି । ସେମାନେ ଆମକୁ ଏ ଦିଗରେ ଅର୍ଥ ସାହାଯ୍ୟ ଦେବାକୁ ରାଜି ହୋଇଛନ୍ତି । ସେମାନଙ୍କ ଭରସା ପାଇ ମୁଁ ସେ ସବୁ କାରଖାନା ପାଇଁ ଯନ୍ତ୍ରପାତି ବରାଦ୍ କରି ଦେଇଛି । ସବୁ କାରଖାନାକୁ ଗୋଟିଏ ସ୍ଥାନରେ ନ ବସାଇ ଆଠ ଗୋଟି ଗାଁ ଭିତରେ ଗୋଟିଏ ଦୁଇଟି କରି ବାଣ୍ଟି ଦେଇଛି ଓ ପ୍ରତ୍ୟେକ ଦାୟିତ୍ୱରେ କିଏ କିଏ ରହିବେ ଠିକ୍ ହୋଇ ଯାଇଛି ।

ମୋର ଯାହା ବିଶ୍ୱାସ ଆମେ ଏଥି ପୂର୍ବରୁ ଯେଉଁ କଞ୍ଚାମାଲ ଯଥା ଝୋଟ, ଗୁଡ଼, ତୈଳବୀଜ, ବିକ୍ରି କରୁଥିଲେ, ବର୍ତ୍ତମାନ ସେଥିରୁ ଜାତ ବିଭିନ୍ନ ଶିଳ୍ପ ପଦାର୍ଥ ବିକଲେ ଆମର ଅଧିକ ଲାଭ ହେବ ଓ ଆମର ଲୋକମାନେ ଅଧିକ କାମ ପାଇପାରିବେ । ତେଣୁ ଆମର ଦୁଇଆଡ଼ୁ ଲାଭ ହେବ । ଏହି କାରଖାନା ସବୁ ଠିକ୍ ଭାବରେ ଚାଲିଲେ ମୋର ବିଶ୍ୱାସ ଆସନ୍ତା ପାଞ୍ଚବର୍ଷ ଭିତରେ ଆମ ଗାଁର ସବୁ ଘର କୋଠାଘରରେ ପରିଣତ ହୋଇ ପାରିବ, ରାସ୍ତା ସବୁ ଉଚ୍ଚା ହୋଇ ପିଚ୍ ହୋଇପାରିବ । ପ୍ରତ୍ୟେକଙ୍କ ଘରେ ସେପ୍ଟିକ ଟାଙ୍କ ପାଇଖାନା, କଳ ପାଣି

ଯୋଗାଇ ଦେଇ ହେବ । ସହରରେ ଯେଉଁ ସବୁ ସୁଖ ସୁବଧା ମିଳୁଛି, ସେହି ସବୁ ସୁବଧା ମୁଁ ଏହି ଗାଁ ଭିତରକୁ ନେଇ ଆସିବାକୁ ଆଗ୍ରହୀ ।

"ବେଙ୍କରୁ ଯେଉଁ ଅଧିକା ଅଧିକା ଋଣ ହେଉଛି, ସେ ତୁଡ଼କ ଠିକ୍ ସମୟରେ ଶୁଝା ଯାଉଛି ତ ? ନଚେତ୍ ଏହି ଋଣ ଆମ ଗାଁ ଉପରେ ଗୋଟିଏ ବଡ଼ଠ ବୋଝ ହୋଇ ଠିଆ ହେବ ନ ?

"ପ୍ରତିବର୍ଷ ଆମର ଯାହା ଆୟ ହୁଏ, ବାସନ୍ତୀ ସେଥିରୁ ବେଙ୍କର ସୁଧ ସହ କରଜର ମୂଳ ବାବଦକୁ କିଛି ଟଙ୍କା ଦିଆ ହୋଇଯାଏ । ଆମ ଯୋଜନା-ନୁଯାୟୀ ଆସନ୍ତା ପାଞ୍ଚବର୍ଷ ଭିତରେ ଆମର ସମସ୍ତ କରଜ ଶୁଝିଯିବ । ସେତେ-ବେଳକୁ ହୁଏତ ଅନ୍ୟ ଉନ୍ନୟନ ପାଇଁ ଆହୁରି ଅଧିକ କରଜ ନେବାକୁ ପଡ଼ିବ ।

"ଗୁଡ଼ାଏ ଟଙ୍କା ବେଙ୍କ ଆମଠାରୁ ସୁଧବାବଦକୁ ତ ନେଇ ଯାଉଛି ? ସେତକ ଥିଲେ ଆମେ ଅଧିକ ଉନ୍ନୟନ କାମରେ ସେ ଟଙ୍କାକୁ ତ ଲଗାଇ ପାରନ୍ତେ ?"

ହସିଲା ଅମରେଶ" ଦେଖ ବାସନ୍ତୀ, ଆମେ ସିନା କରଜ ଆଣିଥିଲେ ବୋଲି ଆମର ଅଧିକ ଲାଭ ହେଲା । ଯଦି କରଜ ନ ଆଣିଥାନ୍ତେ, ଆମର ତ କମ୍ ଲାଭ ହୋଇଥାଆନ୍ତା । ତେଣୁ ଯାହା ଆମର ଅଧିକ ଲାଭ ହେଲା ସେତକ ଟଙ୍କା ବେଙ୍କକୁ ଦେଇଦେଲେ ଆମର କ୍ଷତି ହେଉଛି କେଉଁଠି ? ପାଞ୍ଚ ବର୍ଷପରେ କରଜ ଶୁଝିଗଲେ ଆମକୁ ଆଉ କିଛି ଦେବାକୁ ପଡ଼ିବନି । ଏହି ଟଙ୍କା ସେତେବେଳେ ଆମର ଗ୍ରାମ ଉନ୍ନୟନରେ ଅନେକ ସାହାଯ୍ୟ କରିବ ।

"ଆମ ଗାଁରେ ଢ଼େର ଗୁଡ଼ଏ କୁଟୀର ଶିଳ୍ପ ଥିଲା, ସେ ଗୁଡ଼କର ଉନ୍ନୟନ ନିମିତ୍ତ ଆମର କିଛି ଅର୍ଥ ବ୍ୟବସ୍ଥା ହୋଇଛି କି କଅଣ ଜାଣିନି", ବାସନ୍ତୀ କହିଲା ।

"କେଉଁ କେଉଁ କୁଟୀର ଶିଳ୍ପ କଥା କହୁଛ ବାସନ୍ତୀ ?"

"କୁମ୍ଭାର, କମାର, ବଢ଼େଇ, ଶଙ୍ଖକାର ଏମାନଙ୍କ ବେଉସା ଆମ ଗାଁରେ ମୂଳରୁ ରହି ଆସିଛି । ସେମାନଙ୍କ ଉନ୍ନୟନ ପାଇଁ—

"ନିଶ୍ଚୟ, ନିଶ୍ଚୟ, ବର୍ତ୍ତମାନ ଏସବୁ ଯାଗାକୁ ବିଦ୍ୟୁତଶକ୍ତି ଯୋଗାଇ ଦିଆଯାଉଛି, ଫଳରେ ସେମାନଙ୍କୁ ଦୈହିକ ପରିଶ୍ରମ ସେତେ କରିବାକୁ ପଡ଼ିବ ନାହିଁ । ଆମେ ସେ ସବୁ ସ୍ଥାନକୁ ବିଦ୍ୟୁତ୍‌ଶକ୍ତି ଯୋଗାଇ ଦେବା ଫଳରେ କୁମ୍ଭାରକୁ ଆଉ ଚକ ବୁଲାଇବାକୁ ପଡ଼ୁନି । ବିଜୁଳି ଶକ୍ତି ଚକ ବୁଲାଉଛି । କେତେ ସୁବିଧା ହେଲା କୁହତ ? ସେମିତି ବଢ଼େଇ ଓ କମାରର । ଏହା ଫଳରେ ସେମାନଙ୍କ ଉତ୍ପାଦନ ଅଧିକ ଭଲ ହେଉଛି । ତୁମେ ଦେଖିବ ବାସନ୍ତୀ ଏଥିଯୋଗୁ ଆମ ହାଟ ଓ ଅନ୍ୟ ହାଟମାନଙ୍କରେ ଆମ ଗାଁ ଉତ୍ପାଦିତ ଜିନିଷର କାଟତି ବେଶୀ ହେବ । ତେଣୁ ଆମର ଲାଭର ପରିମାଣ ଦିନକୁ ଦିନ ବଢ଼ି ବଢ଼ି ଚାଲିବ ।"

"ତୁମେ ଯେଉଁ ମିନି କାରଖାନା ସବୁ ବସାଇବାକୁ କହୁଛ ମୁଁ କେଉଁଠି ଗୋଟିଏ ଯାଗାରେ ପଢ଼ିଥିଲି, ସେଥିରେ ଉତ୍ପାଦିତ ପଦାର୍ଥର ମୂଲ୍ୟ କାଳେ ଅଧିକ ହୁଏ ବୋଲି ? ତା ଯଦି ସତ ହୁଏ, ଆମ ଜିନିଷ ବଜାରରେ ପ୍ରତିଯୋଗିତା କରିବ କିପରି ? ବଡ଼ ବଡ଼ କାରଖାନାରେ ଉତ୍ପାଦିତ ଜିନିଷ ସହିତ ଆମ ଜିନିଷ କ'ଣ ପ୍ରତିଯୋଗିତା କରି ଠିଆ ହୋଇ ପାରିବ ? ଯଦି ନ ପାରେ, ଆମର ତ କ୍ଷତି ହେବ ଅପର୍ଯ୍ୟାପ୍ତ ?"

"ତୁମେ ଯାହା ଆଶଙ୍କା କରୁଛ ତାହା ଠିକ୍ ବାସନ୍ତୀ । ଅବଶ୍ୟ ଆମ ଜିନିଷର ଦାମ କିଛି ଅଧିକ ହେବ । ବର୍ତ୍ତମାନ ବଜାରରେ ତ ସବୁ ଜିନିଷର ଏକାନ୍ତ ଅଭାବ । ତେଣୁ ସାମାନ୍ୟ କିଛି ଅଧିକ ଦର ହେଲେବି ଏହା ଯେ ନ କଟି ରହିଯିବ ତାହା ମୁଁ ଭାବୁନି । ବଜାରରେ ଯଦି ବଡ଼ ବଡ଼ କାରଖାନାର ପଦାର୍ଥ ଅଧିକ ପରିମାଣରେ ମିଳୁଥାନ୍ତା, ଆମକୁ ଚିନ୍ତା କରିବାକୁ ପଡ଼ନ୍ତା । କିନ୍ତୁ ଆମ ଲୋକ ସଂଖ୍ୟା ବୃଦ୍ଧି ହେତୁ ସବୁ ଦିନ ପାଇଁ ଆମ ବଜାର ନିଅଣ୍ଟିଆ ହୋଇ ରହିଥିବ, ତେଣୁ ଆମ ଜିନିଷ କାଟତିରେ କିଛି ଅସୁବିଧା ହେବନି ବୋଲି ମୁଁ ଭାବୁଛି ।"

## ( ନଅ )

"ଆମ ଗାଁମାନଙ୍କରେ କ'ଣ ଦିନକୁଦିନ କ୍ୟାନସର ରୋଗ ବ୍ୟାପିବାରେ ଲାଗିଲାଣି । ତିନି ସପ୍ତାହ ତଳେ ଗୋବର୍ଦ୍ଧନର ବାପା ଆମ ହସ୍ପିଟାଲ୍‌କୁ ଯାଇଥିଲେ । ଆମ ଡାକ୍ତରବାବୁ ପରୀକ୍ଷା କରି କହିଲେ ତାଙ୍କ ପାଟିରେ କର୍କଟ ରୋଗ ହୋଇଛି । କର୍କଟ ରୋଗର ଚିକିତ୍ସା ପାଇଁ ଆମ ଡାକ୍ତରଖାନାରେ କିଛି ବ୍ୟବସ୍ଥା ନାହିଁ । ତାକୁ ଡାକ୍ତରବାବୁ ଚିଠି ଲେଖି ପଠାଇଲେ ଟାଟାନଗର ବଡ଼ ଡାକ୍ତରଖାନାକୁ । ପୁଣି କାଲି ଧଡ଼ି ଦାସ ଡାକ୍ତରଖାନାକୁ ଯାଇଥିଲା, ଡାକ୍ତର କ'ଣ କହୁଛନ୍ତି, ତାର ବି ସେହି ପାଟି କେନ୍‌ସର । ହଠାତ୍ ଏତେଗୁଡ଼ିଏ କେନ୍‌ସର ରୋଗ ଗୋଟିକ ପରେ ଗୋଟିଏ ଆମ ଗାଁକୁ ଆସିଲା କୁଆଡ଼ୁ ?

"ଆଁ, ପାଟି କେନ୍‌ସର ?" ଚମକି ପଡ଼ିଲା ଅମରେଶ ? "ତୁମକୁ କିଏ କହିଲା ?"

"ବାପା ମୋତେ କହୁଥିଲେ । ଗୋବର୍ଦ୍ଧନର ବାପାକୁ ନେଇ ସେ ଟାଟାନଗର ବଡ଼ ଡାକ୍ତରଖାନାକୁ ଯାଇଥିଲେ । ଗୋବର୍ଦ୍ଧନର ବାପା ବର୍ତ୍ତମାନ ସେହି ଡାକ୍ତରଖାନାରେ ଅଛି । ବାପା କହୁଛନ୍ତି, କାଳେ ତା'ର ପାଟିର ଅଧେ ଅଂଶ କାଟି ଦିଆଯିବ । ପାଟିରୁ ଅଧେ କାଟିଦେଲେ ମୁହଁଟା ଫାଳକିଆ ଦିଶିବ ।"

"ଏହା ଭିତରେ ଏତେ କଥା ହୋଇଗଲାଣି, ମୁଁ କେମିତି ଜାଣି ପାରିଲିନ ବାସନ୍ତୀ ?"

"ବାପା ଟାଟାନଗରରୁ ଫେରି ତୁମକୁ ସେ କଥା କହିବା ପାଇଁ ଆସି-ଥିଲେ । ତମେ ତ ନ ଥିଲ । ତୁମେ ଯାଇଥିଲ ଇନ୍‌ସପେକ୍ଟରଙ୍କ ଅଫିସକୁ ।

"ଦୁଇଟା କେସ ଯେତେବେଳେ ଧରା ପଡ଼ଲାଣି ନିଶ୍ଚୟ ଅନେକ ଟୁଡ଼ିଏ କେସ ଆମ ଲୋକଙ୍କ ଭିତରେ ଥିବ । ସେଗୁଡିକ ସଅଳ ସଅଳ ଡ଼ିଟେକସନ ହେବା କଥା । ମୁଁ ଯାଏ ଡ଼ାକ୍ତରଙ୍କ ସହ ପରାମର୍ଶ କରି ଆସେ ।"

ଅମରେଶ ସଙ୍ଗେ ସଙ୍ଗେ ଡ଼ାକ୍ତର ବାବୁଙ୍କ ଘରେ ଯାଇ ପହଞ୍ଚିଗଲା । ଡ଼ାକ୍ତରବାବୁ ଡ଼ାକ୍ତରଖାନାକୁ ବାହାରୁ ଥିଲେ । ଅମରେଶଙ୍କୁ ତାଙ୍କ ଘରଠାରେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କୁ ନେଇ ଘରେ ବସାଇ ଆସିବାର କାରଣ ପଚାରିଲେ ।"

ତାଙ୍କ ଗାଁରେ ଧରା ପଡିଥିବା ଦୁଇଗୋଟି କେନ୍‌ସର ରୋଗୀ କଥା ଅମରେଶ ଡ଼ାକ୍ତରବାବୁଙ୍କୁ ପଚାରିଲେ । ଡ଼ାକ୍ତରବାବୁ ରୋଗୀ ଦୁଇଟି ସମ୍ବନ୍ଧରେ ତାଙ୍କ ଅଭିଜ୍ଞତା ବର୍ଣ୍ଣନା କରିଗଲେ । ଏହି ପାଟି କେନସର ସମ୍ଭବତଃ ଏହି ଗାଁର ଲୋକେ କଳରେ ଦୁଙ୍କୁଡା ଜାଳୁଥିବାରୁ ହୋଇଥାଇ ପାରେ ବୋଲି ସେ ତାଙ୍କ ଆଶଙ୍କା ପ୍ରକାଶ କଲେ । ଏହି ଦୁଇଟି କେଶ୍ ଧରା ପଡ଼ିବା ପରେ ଆଉ ଯେ ସେମିତି ରୋଗ ଗାଁରେ ଅନ୍ୟମାନଙ୍କ ଠାରେ ନ ଥିବ, ତା' ବି ନୁହେଁ । ତେଣୁ ଶୀଘ୍ର ଏହି ଗାଁ ଗୁଡ଼ିକର ସମସ୍ତ ଲୋକଙ୍କୁ ପରୀକ୍ଷା କରି ଏହି ରୋଗ ଆଉ କାହା ଠାରେ ଅଛି କି ନାହିଁ ଜାଣିନେବା ସର୍ବାଦୌ ବାଞ୍ଛନୀୟ ।"

"ତାହେଲେ ଆପଣ କ'ଣ କହୁଛନ୍ତି ଡ଼ାକ୍ତର ବାବୁ ? ପାଟି କେନ୍‌ସର ପାଇଁ ଗାଁର ପ୍ରତ୍ୟେକ ସ୍ତ୍ରୀ ଓ ପୁରୁଷଙ୍କ ପାଟିକୁ ପରୀକ୍ଷା କରିବାକୁ ପଡ଼ିବ ?"

"ତାହାହେଲେ ତ ସବୁଠାରୁ ଭଲ ହୁଅନ୍ତା । ଏହି ରୋଗ ଆଉ କାହା-ଠାରେ ଯଦି ଆରମ୍ଭ ହେଉଥିବାର ପ୍ରମାଣ ପାଆନ୍ତେ, ତେବେ ସେମାନଙ୍କୁ ରୋଗମୁକ୍ତ କରିବା ସହଜସାଧ୍ୟ ହୁଅନ୍ତା ।"

"ତାହେଲେ, ଡ଼ାକ୍ତରବାବୁ, କାଲଠାରୁ ଆପଣ ପ୍ରତ୍ୟେକଙ୍କ ଘରକୁ ଯାଇ ସେମାନଙ୍କୁ ପରୀକ୍ଷା କରିଦେବା ଆରମ୍ଭ କରି ଦିଅନ୍ତୁ । ଆପଣଙ୍କୁ ସାହାଯ୍ୟ କରିବା ପାଇଁ ମୁଁ ଆଉ ଦୁଇଜଣ ଲୋକ ଦେଉଛି । ଦେଖିବେ, ଯେମିତି ଗାଁର କୌଣସି ଲୋକ ଏହି ପରୀକ୍ଷାରୁ ଛାଡ଼ ନଯାଏ ।"

ଆଠଗୋଟି ଗାଁର ପ୍ରତ୍ୟେକ ଲୋକକୁ ପରୀକ୍ଷା କରି ସେମାନଙ୍କ ଠାରେ କର୍କଟ ରୋଗ ଅଛି କି ନାହିଁ ଜାଣିବା ପାଇଁ ଡାକ୍ତରବାବୁଙ୍କୁ ପ୍ରାୟ ମାସଟିଏ ସମୟ ଲାଗିଗଲା । ଡାକ୍ତରଖାନାର ଗତାନୁଗତିକ କାମ ସାରି ଗାଁ ଭିତରକୁ ଯାଇ ପରୀକ୍ଷା କରିବାକୁ ପଡ଼ିଲା । ଡାକ୍ତର ବାବୁ ଯେଉଁଦିନ ତାଙ୍କ ରିପୋର୍ଟ ଆଣି ଅମରେଶଙ୍କୁ ଦେଲେ, ସେତେବେଳେ କାର୍ଯ୍ୟକାରୀ କମିଟିର ମିଟିଂ ଚାଲିଥାଏ । ଅମରେଶ ରିପୋର୍ଟଟି ଦେଖି ଚମକିପଡ଼ିଲା । "ଆଁ ଅଠର ଜଣଙ୍କଠାରେ ଏହି କେନ୍‌ସର ରୋଗ ଆରମ୍ଭ ହୋଇଛି ?" ସେମାନଙ୍କ ଚିକିତ୍ସା ପାଇଁ ସଙ୍ଗେସଙ୍ଗେ କଟକନଗର ବଡ଼ ଡାକ୍ତରଖାନାକୁ ରୋଗୀମାନଙ୍କୁ ଧରି ଯିବା ପାଇଁ ଡ଼ାକ୍ତରବାବୁଙ୍କୁ ବିଦାୟ ହୋଇଗଲା । ସେମାନଙ୍କ ଚିକିତ୍ସା ପାଇଁ ଯାହା ଖରଚ ହେବ ସେଥିପାଇଁ ଚିନ୍ତା ନକରି ସେମାନଙ୍କ ଚିକିତ୍ସା ଯେମିତି ଖୁବ ଶୀଘ୍ର ଆରମ୍ଭ ହୁଏ, ତଦ୍‌ବିର କରିବାକୁ ଅନୁରୋଧ ଜଣାଇଲା ଅମରେଶ ।

ଡ଼ାକ୍ତରବାବୁ ଚାଲିଗଲା ପରେ ଅମରେଶ ଏହି ରୋଗ ସମ୍ପର୍କରେ ଆଲୋଚନା ପକାଇଲା । କାର୍ଯ୍ୟକାରୀ କମିଟିରେ । ଏହି ଆଠଗୋଟି ଗାଁରୁ ଯଦି କୋଡ଼ିଏ ଜଣ ଲୋକ ପାଟି କେନ୍‌ସରରେ ଆକ୍ରାନ୍ତ ହେଲେ, ତେବେ ଏହା କଣ ବଡ଼ ଦୁଃଖର ବିଷୟ ନୁହେଁ ? ଡ଼ାକ୍ତରଙ୍କ ମତ ଅନୁସାରେ ଲୋକମାନଙ୍କର ପାଟିରେ ଦୁକୁଡା ଜାକିବା ହିଁ ଏହି ରୋଗର କାରଣ ହୋଇଥିବାରୁ କାର୍ଯ୍ୟକାରୀ କମିଟି ଏ ସମ୍ପର୍କରେ ଚିନ୍ତା କରିବା ଉଚିତ ।

କାର୍ଯ୍ୟକାରୀ ସମିତିର ସବୁଠାରୁ ପୁରୁଣା ସଭ୍ୟ ଗୋଲକ ବାବୁ ଉଠି କହିଲେ" ଆମେ ଆମ ଗାଁରେ ଯେଉଁ ଦୁକୁଡା ଚାଷ କରୁଛୁ , ସେହି ଚାଷ ହିଁ ଏହି ରୋଗର କାରଣ । ଦୁକୁଡା ଅମଳ ବେଳେ ଏହି ଗାଁର ବହୁ ଲୋକ ଲୁଚି ଛପିକରେ ଦୁକୁଡା ସଂଗ୍ରହ କରି ବର୍ଷକ ପାଇଁ ରଖିନଅନ୍ତି । ସେଥିରୁ ପ୍ରତିଦିନ କିଛି କିଛି କାଢ଼ି କାଲରେ ଜାକି ଏ ରୋଗର ଶୀକାର ହୁଅନ୍ତି ।"

ଗୋଲକ ବାବୁଙ୍କ ମତକୁ ଅନ୍ୟମାନେ ସତ୍ୟ ବୋଲି କହିଲେ । ଏହି କାରଣ ଶୁଣି ବଡ଼ ବିବ୍ରତ ହୋଇ ପଡ଼ିଲା

ଅମରେଶ । ତା' ପାଟିରୁ ବାହାରିପଡ଼ିଲା, "ତେବେ ଆମ ଗାଁମାନଙ୍କରେ ତମାଖୁ ଚାଷ ବନ୍ଦ କରିଦେଲେ ଆଉ ସେ ଭୟ ରହିବନି ।"

ସେମାନେ କ'ଣ ଦୋକାନରୁ, ହାଟରୁ କି ବଜାରରୁ ତମାଖୁ କିଣି ପାରିବେନି, ମେମ୍ବରଙ୍କ ଭିତରୁ କେତେ ଜଣ ପଚାରିଲେ ।

"ତା ସତ, କିନ୍ତୁ ଦୋକାନ ହାଟରୁ ବା ବଜାରରୁ ସେମାନେ ସେତେ ସୁବିଧାରେ କିଣି ପାରିବେନି । ଏଥିରେ ହାତରୁ ପଇସା ଖର୍ଚ୍ଚ କରିବାକୁ ପଡ଼ିବ ।"

"କିନ୍ତୁ, ତା ଯଦି ହୁଏ, ତେବେ ଆମର ଏକ ବଡ଼ ଆୟ ବନ୍ଦ ହୋଇଯିବ । ଆମ ଉପରେ ନିର୍ଭର କରୁଥିବା କୋମ୍ପାନୀମାନଙ୍କ ବ୍ୟବସାୟ ମାଡ଼ ଖାଇଯିବ ।"

"ତା ହେଲେ ଆମକୁ ବର୍ତ୍ତମାନ ବିଚାର କରିବାକୁ ପଡ଼ିବ, ଆମେ କ'ଣ ଚାହୁଁ । ଆମ ଲୋକଙ୍କ ଜୀବନ, ନା ଆମ ଗାଁର ଆୟ । ଆୟଟା ଆମର ବିଶେଷ କମି ଯିବନି, କାରଣ ଆମେ ଯେଉଁଠି ତମାଖୁ ଚାଷ କରୁଥିଲେ, ସେଠି ବର୍ତ୍ତମାନ ଝୋଟ କି ଆଖୁ ଚାଷ କରିବା ।" ଅମରେଶ କହିଲା ।

"ତମାଖୁ ଚାଷ ବନ୍ଦ କରିଦେଲେ ଆମ ଲୋକଙ୍କୁ କେନସର ରୋଗ ନ ହେବ ବୋଲି କ'ଣ କେହି ଗ୍ୟାରେଣ୍ଟି ଦେଇପାରିବେ ?" କେତେ ଜଣ ପଚାରିଲେ ।

"ଆପଣମାନେ ଯାହା କହିବାକୁ ଚାହୁଁଛନ୍ତି, ମୁଁ ବୁଝୁଛି । ତମାଖୁ ଚାଷ ବନ୍ଦ କରି ଦେଲେ କ୍ୟାନସର ରୋଗ ହେବନି, ଏହା କେହି ଗ୍ୟାରେଣ୍ଟି ଦେଇ ପାରିବେନି । ଏମିତିକି ଯେଉଁ ଲୋକମାନେ ଦୁକୁଟା ଖାଆନ୍ତି ସେମାନଙ୍କୁ ସମସ୍ତଙ୍କୁ ଯେ କେନସର ରୋଗ ହେଉଛି, ତା ବି ନୁହେଁ । ତମାଖୁ ନ ଖାଉ-ଥିବା ଲୋକଙ୍କୁ ଯେ କେନସର ନ ହେଉଛି ସେ କଥା କହିହେବନି । ଆମେ ଯଦି ଏହି ପ୍ରଶ୍ନକୁ ଧରି ବସିବା, ତେବେ ତମାଖୁ ଚାଷ ବନ୍ଦ କରିବା ପାଇଁ କୌଣସି ଯୁକ୍ତି ମିଳିବନି । ତେବେ ଯେତେବେଳେ ଆମର ହୃଦବୋଧ ହେଉଛି, ଯେ ତମାଖୁ ଚାଷ ଏଥିପାଇଁ ପ୍ରକାରାନ୍ତରେ ଦାୟୀ, ସେତେବେଳେ ଆମେ ଏହି ଚାଷ ବିରୋଧରେ ସିଦ୍ଧାନ୍ତ ଗ୍ରହଣ କରିବା ଛଡ଼ା ଅନ୍ୟ ଉପାୟ ନାହିଁ ।

ଅମରେଶ ଯେତେବେଳେ କିଛି କହେ, କାର୍ଯ୍ୟକାରୀ ସମିତିର ସଭ୍ୟମାନେ ବିଶେଷ କିଛି ଯୁକ୍ତି କରନ୍ତି ନାହିଁ । କାରଣ ସେମାନଙ୍କର ଧାରଣା, ଅମରେଶ

ସେମାନଙ୍କଠାରୁ ଅଧିକ ଜ୍ଞାନୀ । ଏହି ଗାଁର ମଙ୍ଗଳ ସେ ଯେତେ ବୁଝନ୍ତି, ଅନ୍ୟ-ମାନେ ସେତେ ବୁଝିଁ ପାରିବେନି ।

ତେଣୁ ତାଙ୍କ କଥା ହିଁ ରହିଲା । ଗୋବିନ୍ଦପୁର ଗ୍ରାମ ଗୁଡ଼ିକରୁ ସବୁଦିନ ପାଇଁ ତମାଖୁ ବୃକ୍ଷ ଉଠାଇ ଦିଆଗଲା । ମୂଳରୁ ମାରିଲେ ଯିବ ସରି, ଦେବଙ୍କ ସଙ୍ଗେ କଂପା କଲା ।

ଦିନକୁ ଦିନ ଗୋବିନ୍ଦପୁର ସମେତ ଆଠଖଣ୍ଡି ଗାଁରେ ଯେଉଁ ଅଭୂତପୂର୍ବ ଓ ଅଶ୍ରୁତପୂର୍ବ ଉନ୍ନତିମାନ ହେଲା, ତାକୁ ଦେଖି ଆଖପାଖର ଗାଁର ଲୋକେ ଅମରେଶ ବାବୁଙ୍କ ନିଷ୍ଠାପରତାକୁ ଧନ୍ୟ ଧନ୍ୟ କଲେ । ସରକାର ସେମାନଙ୍କ ଗାଁର ଉନ୍ନତି କରାଇବେ, ସେମାନଙ୍କ ଲୋକ ପ୍ରତିନିଧିମାନେ ସେମାନଙ୍କ ଗାଁରେ ଦୁଧ ମହୁର ନଈ ବୁହାଇବେ, ସେମାନେ ଏହିଭଳି ଫାଙ୍କା ଆଓ୍ୱାଜ ଶୁଣି ଶୁଣି ସେମାନଙ୍କ କାନ ବଧିର ହୋଇ ଗଲାଣି । ସ୍ୱାଧୀନତା ବେଳେ ସେମାନେ ଯେଉଁ ଅବସ୍ଥାରେ ଥିଲେ, ସ୍ୱାଧୀନତାର ଏତେ ବର୍ଷ ପରେ ବି ସେମାନଙ୍କ ଅବସ୍ଥାର କିଛି ମାତ୍ର ଉନ୍ନତି ହେବାକୁ ନାହିଁ ବରଂ ଅବନତି ହୋଇଚାଲିଛି ।

ଗାଁର ଉନ୍ନୟନ ପାଇଁ ଯେଉଁ ଟଙ୍କା ସରକାରରୁ ଆସୁଛି, ତାହା କେତେ ଲୋକଙ୍କ ହାତ ଟେକ୍ କଣ କରିବା ଛଡ଼ା ସାଧାରଣଙ୍କ ଉପକାରରେ ଲାଗି ପାରୁନି ।

ସେମାନେ ବେଳେ ବେଳେ ଆଶ୍ଚର୍ଯ୍ୟ ହୁଅନ୍ତି, ସେମାନଙ୍କ ଅପେକ୍ଷା ଅଧିକ ମାମୁଲି ସରକାରୀ ସାହାଯ୍ୟ ନପାଇ ଗୋବିନ୍ଦପୁରର ଲୋକେ କେମିତି ଏତେ ଜୋରରେ ଆଗେଇ ଚାଲିଛନ୍ତି ? ଅଥଚ ସେମାନଙ୍କ ଗାଁରେ କିଛି ହୋଇ ପାରୁନି ?

ଗୋବିନ୍ଦପୁର ଗାଁରେ ଫସଲ ଭଲ ହେଉଛି, ସମସ୍ତଙ୍କର ନୂଆ ନୂଆ ଘର, ଗାଁ ମାନଙ୍କରେ ନୂଆ ନୂଆ ରାସ୍ତା, ସ୍କୁଲ, ଡାକ୍ତରଖାନା, ତାଏସି ପଶୁ ଡାକ୍ତରଖାନା, କ୍ଲବ, ମହିଳା ସମିତି, ଛୋଟ ଛୋଟ କଳ କାରଖାନା, ଗୋଦାମ ଘର, ଟ୍ରକ, ଟ୍ରାକ୍ଟର, ପାଓ୍ୱାରଲୁମ ଆଦି ଯାବତୀୟ ଜିନିଷ ହୋଇ ପାରିଛି, ଅଥଚ ସେମାନଙ୍କର କିଛି ହେବାକୁ ନାହିଁ ।

ଅମରେଶ ବାବୁଙ୍କ ଯୋଗୁଁ ଏସବୁ ହୋଇପାରିଛି ନିଶ୍ଚୟ । ଅମରେଶ ବାବୁ ପ୍ରକୃତରେ ମଣିଷ ନୁହଁନ୍ତି, ମଣିଷ ରୂପରେ ସେ ଦେବତା । ଦଶ

ବାରବର୍ଷ ତଳର ଏକ ଅତି ଦୁଃସ୍ଥ ଗାଁ ଯଦି ଏକ ସ୍ୱୟଂସଂପୂର୍ଣ୍ଣ ସମୃଦ୍ଧିଶାଳୀ ଗାଁରେ ପରିଣତ ହୋଇପାରିଲା, ତେବେ ଏହା ପଛରେ ଯାହାର ହାତ ଅଛି ତାକୁ ମଣିଷରୂପୀ ଭଗବାନ କୁହାଯିବ ନାହିଁ ତ ଆଉ କ'ଣ କୁହାଯିବ ?

ଗୋବିନ୍ଦପୁର ଗାଁର ପ୍ରସିଦ୍ଧି ହୁ ହୁ ହୋଇ ଚାରିଆଡ଼େ ବ୍ୟାପିଗଲା । ଆଖପାଖ ଗାଁର ଲୋକମାନେ ଦଳଦଳ ହୋଇ ଏହି ଗାଁର ସୁସ୍ଥ ବାତାବରଣ ଓ ସମୃଦ୍ଧି ଦେଖିବା ପାଇଁ ଧାଡ଼ି ଲଗାଇଲେ । ଦଶବାର ବର୍ଷ ଭିତରେ ଗାଁରେ ଯାହା ସବୁ ଉନ୍ନତି ହୋଇଛି, ଲୋକେ ଆଖିରେ ଦେଖି ମଧ୍ୟ ନିଜ ନିଜ ଆଖିକୁ ବିଶ୍ୱାସ କରି ପାରିଲେନି । ଏ ଗାଁରେ ଆଜି କ'ଣ ନ ହୋଇଛି ସତେ ? ଏହି ଗାଁ ଗୁଡ଼ିକର କେମିତି ଏଭଳି ଉନ୍ନତି ହେଲା, ଲୋକେ ଭାବି ଭାବି କିଛି ଥଳକୂଳ ପାଆନ୍ତିନି ।

ଦଳ ଦଳ ହୋଇ ଅମରେଶଙ୍କୁ ଆସି ଦେଖା କରନ୍ତି । ଅମରେଶ ହସି ହସି କହେ ସେ କିଛି କରିନାହିଁ । ଏହା ହେଉଛି ଗାଁ ଲୋକଙ୍କ କଠିନ ପରି-ଶ୍ରମର ଫଳ । ଗାଁ ଲୋକମାନେ ନିଜେ କଠିନ ପରିଶ୍ରମ କରି ଗାଁର ଏଭଳି ଉନ୍ନତି କରି ପାରିଛନ୍ତି । ଗାଁର ଉନ୍ନତି ପାଇଁ ସେ କିଛି କରିନାହିଁ । ଖାଲି ବାଟ ଦେଖାଇଛି ମାତ୍ର ।

ଗାଁ ଲୋକଙ୍କୁ ପଚାରିଲେ ସେମାନେ ହସି ହସି କହନ୍ତି, "ଏ ଗାଁରେ କେମିତି ଏତାଦୃଶ ଉନ୍ନତି ହେଲା ଆମେ କହି ପାରିବୁନି । ଅମରେଶ ବାବୁ ଏହିସବୁ ଉନ୍ନତି ମୂଳରେ । ସେ ହିଁ ଜାଣନ୍ତି ଗାଁର ଏ ସବୁ ଉନ୍ନତି କେମିତି ସମ୍ଭବପର । ଗାଁର ଉନ୍ନତି ପାଇଁ ଆମ୍ଭେମାନେ ଖଟିଛୁଁ ସତ, କିନ୍ତୁ ପ୍ରେରଣା ଦେଇଛନ୍ତି ଅମରେଶ ବାବୁ । ତାଙ୍କର ପ୍ରେରଣା ନ ପାଇଥିଲେ ଏହି ଗାଁ ଗୁଡ଼ିକ ବର୍ତ୍ତମାନର ଉନ୍ନତ ଅବସ୍ଥାକୁ ଆସି ପାରି ନ ଥାନ୍ତା ।

ଗାଁ ଗୁଡିକର ଉନ୍ନତି ଦେଖି ରାଜ୍ୟ ବାହାରର ସମ୍ବାଦପତ୍ର ପ୍ରତିନିଧି-ମାନେ ଆସି ଏ ଅଞ୍ଚଳ ସବୁ ବୁଲିଗଲେଣି । ଫେରିଗଲା ବେଳେ ସେମାନଙ୍କର ଅମରେଶଙ୍କୁ ଉଚ୍ଛ୍ୱସିତ ପ୍ରଶଂସା । ବିନୋବାଜୀ ଯାହାକୁ ସ୍ୱପ୍ନ ଦେଖିଥିଲେ, ତାକୁ କାର୍ଯ୍ୟରେ ପରିଣତ କରି ଦେଖାଇଦେଲେ ଅମରେଶ ବାବୁ । ଲୋକ

ଶକ୍ତିର କାର୍ଯ୍ୟକାରିତାର ସାମର୍ଥ୍ୟ କେତେ, ତାକୁ କାର୍ଯ୍ୟକାରୀ କରାଇ ଦେଖାଇ ଦେଲେ ସେ । ଅମରେଶ ବାବୁ ସାଧାରଣ ମାନବ ନୁହଁନ୍ତି, ସେ ଅତି ମାନବ ।

ଏହି ଗାଁର ପ୍ରତ୍ୟେକ ଉନ୍ନୟନ ଲୋକମାନଙ୍କ ଦୈହିକ ପରିଶ୍ରମରେ ହୋଇଛି । ଏ ଗାଁର ଲୋକେ ହାତଟେକି ସରକାରଙ୍କୁ ମାଗନ୍ତି ନାହିଁ ସାହାଯ୍ୟ । ସେମାନେ କହନ୍ତି ଆମ ହାତ ହେଉଛି ଆମର ପାଣ୍ଠି । ସରକାରଙ୍କ ପାଣ୍ଠିକୁ ଆଶା କରି ରହିଲେ କିଛି ହୋଇ ପାରିବନି । ସମସ୍ତେ ମିଳିମିଶି ଯଦି କୌଣସି କାମ କରନ୍ତି ତେବେ ଏହା ଯେତେ ବ୍ୟାପକ ହୋଇ ପାରିବ, ସରକାରଙ୍କ ସାହାଯ୍ୟ ତା' ଆଗରେ କିଛି ନୁହେଁ । ସରକାରୀ ସାହାଯ୍ୟ ଆସେ, କେତେ ଲୋକଙ୍କ ପକେଟକୁ ଯିବାପାଇଁ, ଯାହା ବା କିଛି କାମ ହୁଏ, ତାହା ସମୁଦ୍ରକୁ ଶଙ୍ଖେ ପାଣି ପରି କିଛି ନୁହେଁ ।

ଭୂଦାନୀମାନେ ମଧ୍ୟ ଅମରେଶର କୃତିତ୍ୱରେ ପାଗଳ । ସେମାନେ କେବେ ଆଶା କରି ନ ଥିଲେ, ଅମରେଶ ଅସଂଖ୍ୟ ସମସ୍ୟାପୂର୍ଣ୍ଣ ଓ ଅଭାବ ଭିତରେ ସଢ଼ୁଥିବା ଗ୍ରାମଗୁଡ଼ିକୁ ନେଇ ଲୋକ ଶକ୍ତିକୁ ଖଟାଇ ଏଭଳି ଅଦୃଷ୍ଟପୂର୍ବ ଓ ଅଶ୍ରୁତପୂର୍ବ କାର୍ଯ୍ୟ ସାଧନ କରି ପାରିବ । ବିନୋବାଜୀଙ୍କ ଦଳର ଭିନ୍ନ ଭିନ୍ନ ଲୋକେ ଅନେକ ଥର ଏ ଗାଁକୁ ଆସି ଏହି ଗାଁର ଆଶାତୀତ ଉନ୍ନତି ଦେଖି ଯାଇ ବିନୋବାଜୀଙ୍କ କେମ୍ପରେ ପ୍ରଚାର କରିଦେଲେଣି ।

ସେମାନଙ୍କ ମୁହଁରେ ଗୋଟିଏ କଥା, ବିନୋବାଜୀଙ୍କ ସ୍ୱପ୍ନ ଅମରେଶ ବାବୁଙ୍କର ବାସ୍ତବତା । ଗ୍ରାମଦାନ ନେଇ ବିନୋବାଜୀ ଯେଉଁ ସ୍ୱପ୍ନ ଦେଖିଥିଲେ, ତାକୁ କାର୍ଯ୍ୟରେ ରୂପାୟନ କଲେ ଅମରେଶ ବାବୁ । ବିନୋବାଜୀ କେବେ କଳ୍ପନା କରି ପାରି ନ ଥିଲେ ଲୋକମାନେ ଯେତେବେଳେ ଏକାଠି ହୋଇ ନିଜ ସ୍ୱାର୍ଥ ପାଇଁ କିଛି ନ କରି ଗାଁର ସମୂହ ସ୍ୱାର୍ଥ ପାଇଁ କିଛି କରନ୍ତି, ତାହା ଏତେ ସୁଦୂରପ୍ରସାରୀ ହୋଇପାରେ ବୋଲି ବିନୋବାଜୀଙ୍କ ବହୁ ପାର୍ଶ୍ୱଦରେ ଏହି ଅଞ୍ଚଳକୁ ଆସି ଅମରେଶର କାର୍ଯ୍ୟ ଦେଖି ବିନୋବାଜୀଙ୍କ ପାଖରେ ଅମରେଶର ନାହିଁ ନ ଥିବା ପ୍ରଶଂସା କଲେ ।

ନିଜ ସ୍ୱପ୍ନ ସାର୍ଥକ ହୋଇଥିବାରୁ ବିନୋବାଜୀ ଖୁବ୍ ପ୍ରୀତ ହୋଇ ଅମରେଶକୁ ଆଶୀର୍ବାଦ କରନ୍ତି । ବିନୋବାଜୀଙ୍କ କେମ୍ପରେ ଅମରେଶର

ଯେତିକି ପ୍ରଶଂସା, ତା'ଠାରୁ ବେଶି ଶୁଣାଯାଏ ଭାରତର ବଡ଼ ବଡ଼ ଖବର କାଗଜରେ । କେତେ ଖବର କାଗଜ ଅମରେଶଙ୍କୁ କେତେ ଉଠାଇ ଯେ ପ୍ରଶଂସା କରନ୍ତି, ତାର କଳନା ନାହିଁ । ଅମରେଶ, ଗ୍ରାମଦାନରେ ପାଇଥିବା ଗ୍ରାମଗୁଡ଼ିକୁ ଏତେ ଉପରକୁ ଉଠାଇ ପାରିବ ବୋଲି କେହି କେବେ ଆଶା କରି ନ ଥିଲେ, ଧାରଣା କରିବା ତ ଦୂରର କଥା ।

ପାଖ ଆଖ ଗାଁର ଲୋକମାନେ ଏଠା ଗ୍ରାମବାସୀମାନଙ୍କ ନିସ୍ୱାର୍ଥପର କାର୍ଯ୍ୟ ଦେଖି ଖାଲି ସେମାନଙ୍କୁ ପ୍ରଶଂସା କରନ୍ତିନି, ଭାବନ୍ତି ସେମାନେ ଯଦି ନିଜେ ଏଭଳି କରିପାରନ୍ତେ, ତେବେ ସେମାନଙ୍କ ଗାଁର ଉନ୍ନତି ଏହି ଗାଁ ଭଳି ହୋଇପାରନ୍ତା ନିଶ୍ଚୟ ।

ବେଳେ ବେଳେ ପାଖ ଆଖ ଗାଁର ମୁଖିଆ ମୁଖିଆ ଲୋକମାନେ ଆସି ଅମରେଶ ସହିତ ପରାମର୍ଶ କରନ୍ତି । ଅମରେଶ କେଉଁ ଭାବରେ ଏହି ଗାଁର ଦୂରବସ୍ଥାକୁ ବଦଳାଇ ଉନ୍ନତ ଅବସ୍ଥାକୁ ଆଣି ପାରିଲା ପଚାରି ବୁଝନ୍ତି । ଅମରେଶ ନିଜେ ଅନୁସରଣ କରିଥିବା ବାଟ ସେମାନଙ୍କୁ ବତାଇ ଦିଏ । ସେଥିସହି ଉତ୍କଳମଣି ଗୋପବନ୍ଧୁଙ୍କ ଗୋଟିଏ ଗୀତ ବୋଲି ଶୁଣାଇ ଦିଏ,'' ଜାତି ନିନ୍ଦିଘୋଷ ଶୁଣିବ କି ଭାଇ ସ୍ୱାର୍ଥକୁ ସାରଥୀ କଲେ ? ସ୍ୱାର୍ଥ ତ୍ୟାଗ ନ କଲେ, ଗାଁର ସମୁହ ଉନ୍ନତି କଥା ଚିନ୍ତା ନ କଲେ, ଗାଁର ଏଭଳି ଉନ୍ନତି ହୋଇପାରିବ ନି ।

ପାଖ ଆଖ ଗାଁର ଲୋକମାନେ ଅମରେଶ ବାବୁଙ୍କୁ ଡ଼ାକନେଇ ସେମାନଙ୍କ ଗାଁର କେମିତି ଉନ୍ନତି ହୋଇ ପାରିବ ତାହାଁର ଠିକନଖି ପଦ୍ଧତି ବୁଝି ନିଅନ୍ତି । ବିଭିନ୍ନ ଗାଁର ଲୋକମାନେ ଏହି ଭାବରେ ଗାଁ ଜମି ଗୁଡ଼ିକୁ ଗ୍ରାମଦାନ ସଂସ୍ଥାକୁ ଟେକିଦେଇ ଗାଁ ଗୁଡ଼ିକର ସମୂହ ଉନ୍ନତି କଥା ଚିନ୍ତା କରି ବସନ୍ତି । ଅମରେଶ ସେମାନଙ୍କୁ ଠିକ ବାଟ ବତାଇ ଦିଏ ।

ଅମରେଶ ଯେଉଁ ପଦ୍ଧତିରେ ଗୋବିନ୍ଦପୁର ଗାଁ ଗୁଡ଼ିକର ଉନ୍ନତି କରି ପାରିଲା, ଠିକ ସେହି ପଦ୍ଧତିରେ ଅନ୍ୟ ଗାଁ ଗୁଡ଼ିକର ଉନ୍ନତି କରିବାକୁ ଅମରେଶ ପାଖକୁ ଅସଂଖ୍ୟ ଅନୁରୋଧ ଆସେ । ଲୋକେ ଆସି ବାଧ୍ୟ କରନ୍ତି ସେମାନଙ୍କ ପାଇଁ କିଛି କରିବାକୁ । ଅମରେଶ ବାଧ୍ୟହୋଇ ଅନ୍ୟ ଗା ଗୁଡ଼ିକର ବିକାଶ କଥା ହାତକୁ ନିଏ ।

ଗୃହୁଁ ଗୃହୁଁ ଅଳ୍ପ କେଇଦିନ ଭିତରେ ପୁରାପୁରି ବନମାଳିପୁର ବ୍ଲକଟି ବିଭିନ୍ନ ଗ୍ରାମଦାନ ସଂସ୍ଥା ମାଧ୍ୟମରେ ଅମରେଶର ପଦାଙ୍କ ଅନୁସରଣ କରି ଚାଲିଲା । କିଛିବର୍ଷ ତଳେ ବିନୋବାଜୀଙ୍କ ପଦଯାତ୍ରାବେଳେ ଏହି ଅଞ୍ଚଳର ଲୋକମାନଙ୍କୁ ଯେତେବେଳେ ଭୂଦାନ ଓ ଗ୍ରାମଦାନ କଥା ସେ ବୁଝାନ୍ତି, ଲୋକେ ହସି ଉଡ଼ାଇ ଦେଉଥିଲେ । କହୁଥିଲେ ଏହା ଏକ ଉଦ୍ଭଟ କଳ୍ପନା, କିନ୍ତୁ ଆଜି ସେହି ଲୋକମାନେ ଆଦରି ନେଇଛନ୍ତି ସେହି ଉଦ୍ଭଟ କଳ୍ପନାକୁ ଏକ ବାସ୍ତବ ସତ୍ୟ ବୋଲି କହି । ଏହା ଧୀରେ ଧୀରେ ବନମାଳିପୁର ବ୍ଲକକୁ ଛାଡ଼ି ସିଂହଭୂମ ଜିଲ୍ଲାର ଅନ୍ୟ ବହୁ ଅଞ୍ଚଳକୁ ବ୍ୟାପିଲାଣି । ଗୋବିନ୍ଦପୁର ଗ୍ରାମଦାନ ସଂସ୍ଥାର କୃତକାର୍ଯ୍ୟତା ଦେଖି ଲୋକେ ନିଶ୍ଚିତ ହେଲେଣି ଯେ ସେମାନଙ୍କ ଗ୍ରାମର ଉନ୍ନତି କେବଳ ସେହିମାନଙ୍କ ଦ୍ୱାରାହିଁ ସମ୍ଭବ । ଏହି ଗ୍ରାମଗୁଡ଼ିକର ଉନ୍ନତି ସରକାର ଯେ ଆସି କରିଦେବେ ସେଭଳି ଧାରଣା କରିବା ବିରାଟ ଭୁଲ । ଲୋକମାନେ ଯଦି ନିଜ ଉପରେ ଏତିକି ଆତ୍ମବିଶ୍ୱାସ ନ ରଖନ୍ତି, ନିଜ କର୍ତ୍ତବ୍ୟ ନିଜେ ନ କରନ୍ତି, ତେବେ ଗାଁମାନଙ୍କର ଅବସ୍ଥା କଦାପି ସୁଧୁରିବ ନାହିଁ ।

ଲୋକମାନଙ୍କର ଯେଉଁ ଆଶା, ଆମ ଗାଁର ଉନ୍ନତି ସରକାର କରି-ଦେବେ, ଆମ ଲୋକ ପ୍ରତିନିଧିମାନେ କରିଦେବେ, ଆମେ କିଛି କରିବୁ ନାହିଁ, ଏହାହିଁ ହେଉଛି ଗାଁମାନଙ୍କର ଅବନତିର ଅନ୍ୟତମ ମୂଳ କାରଣ । ଆମେ ଆମ ଗାଁର ଉନ୍ନତି କରିବୁ, ଆମେ କାହାର ସାହାଯ୍ୟ ଉପରେ ଭରସା ରଖିବୁନି, ଆମର ସମବେତ ଚେଷ୍ଟା ଓ ପରିଶ୍ରମ ହିଁ ଆମର ଉନ୍ନତିର ବାଟ ଫିଟାଇବ, ଏହି ମନୋବୃତ୍ତି ସହି ଆନ୍ତରିକତା ଓ ଆତ୍ମବିଶ୍ୱାସ ହିଁ ଗାଁ ଉନ୍ନତିର ପ୍ରଧାନ ସମ୍ବଳ ବୋଲି ଅମରେଶ ସବୁବେଳେ ଲୋକଙ୍କୁ ବୁଝାଇବାକୁ ଚେଷ୍ଟା କରେ । ଲୋକେ ଯେତେଦିନ ପର୍ଯ୍ୟନ୍ତ ଏତିକି ନିଜ ମନରେ ନ ଆଣିଛନ୍ତି, ସେତେଦିନ ପର୍ଯ୍ୟନ୍ତ ଗାଁର ଉନ୍ନତି ଆଶା କରିବା ଅଳୀକ ମାତ୍ର ।

ସରକାରଙ୍କ ଠାରୁ ଯାହା କାଁ ଭାଁ ସାହାଯ୍ୟ ଆସୁଥିବ, ସିଏ କୁଆଡ଼େ ଚାଲି ଯାଉଥିବ, ତାର ପତ୍ତା କେହି ପାଉ ନଥିବେ । ଲୋକମାନେ ଯେଉଁ ହାଁ ହାଁ କୁ ସେଇ ହାଁ ହାଁ । ଅନ୍ୟ ଗାଁର ଯେଉଁ ଲୋକମାନେ ଅମରେଶ ପାଖକୁ ସାହାଯ୍ୟ ପାଇବା ଆଶାରେ ଆସନ୍ତି; ଅମରେଶ ସେମାନଙ୍କୁ ଏହି କଥା ବୁଝାଇ ଦେଇ ଯାହା ସାହାଯ୍ୟ ଚାହୁଁଥାନ୍ତି ସାହାଯ୍ୟ ଦେବାରେ ଟିକେହେଲେ ପଛାଏ ନାହିଁ ।

ଗୋବିନ୍ଦପୁର ଗାଁ ଠାରୁ ସାତ ଆଠ ମାଇଲ ଦୂରରେ ଥିବା ତାର ଜନ୍ମିତ ଗାଁର ଲୋକମାନେ ଯେଉଁଦିନ ଆସି ଅମରେଶ ପାଖରେ ସେମାନଙ୍କ ଗାଁର ଦୁଃଖ ଦୁର୍ଦ୍ଦଶା କଥା କହି ଉନ୍ନତି କରିବା ଗୁହାରି ଜଣାଇଲେ, ଅମରେଶ ସେହି ଗାଁ ଗୁଡ଼ିକୁ ନିଜ ଆଦର୍ଶ ମୁତାବକ ଉନ୍ନତି ପଥରେ ଆଗେଇ ନେବାପାଇଁ ପଚ୍ଛାଇଲା ନାହିଁ । ଯେଉଁ ପନ୍ଥାରେ ଗୋବିନ୍ଦପୁର ଅଞ୍ଚଳର ଉନ୍ନତି କରାଗଲା, ଠିକ୍ ସେହି ପଦ୍ଧତିରେ ସେଠାରେ କରିବ ବୋଲି ଠିକ କଲା । ଯେତେହେଲେ ନିଜ ଜନ୍ମିତ ଗାଁ ତ । ଏହି ଗାଁ କଣ ସେମିତି ଅନୁନ୍ନତ ହୋଇ ପଡ଼ି ରହିଥିବ ?

ବାସନ୍ତୀ ଇତି ମଧ୍ୟରେ ସ୍କୁଲ କାର୍ଯ୍ୟ ବ୍ୟତୀତ ଅମରେଶର ଏହି କାର୍ଯ୍ୟରେ ବେଳେବେଳେ ସାହାଯ୍ୟକାରିଣୀ ଭାବରେ କାମ କଲାଣି । ସ୍ୱାମୀଙ୍କ ଅନୁରୋଧରେ ନିଜ ଶ୍ୱଶୁର ଘର ଗାଁକୁ ନିଜ ଅଧିକାରରେ ରଖି ବାସନ୍ତୀ ସେହି ଗାଁକୁ ଯାଇ ସେଠାକାର କାର୍ଯ୍ୟ ତଦାରଖ କରେ ଓ ସେମାନଙ୍କୁ ଠିକ ବାଟରେ ଆଗେଇବା ପାଇଁ ଉପଦେଶ ଦିଏ । ଅମରେଶ ମଧ୍ୟ ବେଳେବେଳେ ଯାଇ ସେଠାକାର କାମ ଦେଖି ଆସେ ।

ଇତି ମଧ୍ୟରେ ଅମରେଶକୁ ସାରା ସିଂହଭୂମ ଜିଲ୍ଲାରୁ ଏତେ ନିମନ୍ତ୍ରଣ ଆସିଲାଣି ଯେ ସେ ନିଜ ଗୋବିନ୍ଦପୁର କାମ ଦେଖିବାକୁ ବେଳ ପାଉନି । ଆଗରୁ ଯେଉଁସବୁ କାମ ନିଜ ତତ୍ତ୍ୱାବଧାନରେ କରୁଥିଲା, ଆଜିକାଲି ବେଳ ଅଭାବରୁ ଅନ୍ୟମାନଙ୍କ ଦାୟିତ୍ୱରେ ଛାଡ଼ିଦେଇ ସେ ଏ ଗାଁ ସେ ଗାଁ ହୋଇ ବୁଲି ବୁଲୁଛି । କୌଣସି ଗାଁକୁ ନ ଗଲେ ଗାଁ ସାରା ଲୋକେ ଆସି ତା ଦୁଆରେ ହାଜର ।

ସମସ୍ତଙ୍କର ବିଶ୍ୱାସ, ଅମରେଶ ହିଁ କେବଳ ସେମାନଙ୍କ ଗାଁର ଦୁର୍ଦ୍ଦଶା ଦୂର କରି ପାରିବ, ଅନ୍ୟ ମାନେ ଖାଲି ନିଜ ପାଇଁ ଫାଇଦା ଉଠାଇଲା ବାଲା । ଦିନକୁ ଦିନ ଲୋକମାନଙ୍କ ମନରେ ଏହି ଧାରଣା ଯେତେ ଦୃଢ଼ୀଭୂତ ହେଉଥାଏ, ଅମରେଶର ଦୁଆରେ ଲୋକଭିଡ଼ ସେତେ ବଢ଼ୁଥାଏ । ବିଭିନ୍ନ ଗ୍ରାମଦାନ ସଂସ୍ଥା ଗଢ଼ି ଅମରେଶ ବିଭିନ୍ନ ଗ୍ରାମଗୁଡ଼ିକୁ ସେହି ସଂସ୍ଥା ଅଧୀନରେ ରଖିଦେଇ ସେମାନଙ୍କ ସୁପରିଚାଳନା ପାଇଁ କାର୍ଯ୍ୟକାରୀ ସମିତି ମାନ ଗଢ଼ି ଦେଲା । ନିଜ ଯୋଜନା ଅନୁଯାୟୀ କାହାପରେ କେଉଁ କାମ କରାଯିବା କଥା

ତହିଁର ଏକ ଯୋଜନା ତିଆରି କରି ବତାଇଦେଲା । କାମ ଠିକ ଭାବରେ ଚାଲିଛି କି ନାହିଁ ବେଳେ ବେଳେ ଅମରେଶ ତଦାରଖ କରି ଆସେ । ସ୍ତ୍ରୀ ବାସନ୍ତୀ ନିଜ ସ୍ୱାମୀଙ୍କ ଗାଁର ଗ୍ରାମଦାନ ସଂସ୍ଥା ତଦାରଖରେ ବେଳେ ବେଳେ ଯାଏ, ଅନ୍ୟ ଆଡ଼େ ଯିବାକୁ ବେଳ ପାଏ ନାହିଁ ।

## ( ଦଶ )

"ଆପଣ ମୋତେ ହସାଇଲେ ମୁରଲୀ ବାବୁ । ମୁଁ ମଧୁପୁର ନିର୍ବାଚନ ମଣ୍ଡଳୀରୁ ବିଧାନସଭା ସଭ୍ୟ ପାଇଁ ଭୋଟରେ ଠିଆ ହେବି ? ଆପଣ କଣ ପାଗଳ ହେଲେ ମୁରଲୀ ବାବୁ ? ରାଜନୀତିକୁ ମୁଁ ପିଲାଟି ଦିନୁ ଘୃଣା କରି ଆସିଛି । ମୁଁ ଆଜି ପୁଣି ସେହି ରାଜନୀତିରେ ପଶି ବିଧାନସଭା ପାଇଁ ଭୋଟ ଲଢ଼ିବି ? ଅସମ୍ଭବ, ଏହା କଦାପି ହୋଇ ନପାରେ । ଦେଖନ୍ତୁ, ରଚନାତ୍ମକ କାମ କରିବା ମୋର ଆଦର୍ଶ, ମୁଁ ତାକୁ ଛାଡ଼ି ରାଜନୀତିରେ ପଶିବି ବୋଲି ଆପଣ କେମିତି ଭାବି ପାରୁଛନ୍ତି କହିଲେ ? ଏହା ଆପଣଙ୍କର ଏକ ନିହାତି ଅବାସ୍ତବ କଳ୍ପନା, ମୁରଲୀ ବାବୁ ।"

ମଧୁପୁର ନିର୍ବାଚନ ମଣ୍ଡଳୀରେ ଅମରେଶର ନିଜ ଘର । ଗୋବିନ୍ଦପୁର ଗ୍ରାମଦାନ ସଂସ୍ଥା ଓ ଅନ୍ୟ ଗ୍ରାମଦାନ ସଂସ୍ଥା ଏହି ନିର୍ବାଚନ ମଣ୍ଡଳୀରେ । ସବୁ ଗ୍ରାମଦାନ ସଂସ୍ଥାର ଲୋକମାନେ ନିଜନିଜ ଗ୍ରାମ ଗଠନ ଓ ଗ୍ରାମର ଉନ୍ନୟନମୂଳକ କାର୍ଯ୍ୟରେ ପାଗଳଙ୍କ ଭଳି ଲାଗି ପଡ଼ିଛନ୍ତି । ସେଥିପାଇଁ ସେମାନେ ପ୍ରେରଣା ପାଉଛନ୍ତି, ଅମରେଶ ଓ ସ୍ତ୍ରୀ ବାସନ୍ତୀ ଠାରୁ ।

ପୁଣି ନିର୍ବାଚନ ମଣ୍ଡଳୀରେ ଏହିସବୁ ଉନ୍ନତି ମୂଳକ କାମ ପାଇଁ ଅମରେଶର ସୁଖ୍ୟାତି ଅତ୍ୟଧିକ । ଏହି ନିର୍ବାଚନ ମଣ୍ଡଳୀର ଗାଁ ଗୁଡ଼ାକର ଉନ୍ନୟନ କାର୍ଯ୍ୟ ଦେଖିଲେ ଅମରେଶ ପ୍ରତି ଭକ୍ତିରେ ମୁଣ୍ଡ ନଇଁ ଆସେ । ନ ଆସିବ କାହିଁକି ? ସେ ଅନ୍ୟ ନେତାଙ୍କ ଭଳି କଳ୍ପନାବାଦୀ ନୁହେଁ, ବାସ୍ତବ-ବାଦୀ । ସେ ଯାହା କହିବ, ତାକୁ କାର୍ଯ୍ୟରେ କରି ଦେଖାଇଦେଇ ପାରିବ । ଅନ୍ୟ ନେତାଙ୍କ ଭଳି ବଡ଼ ବଡ଼ କଥା କହି ଦେଇ କୁଆଡ଼େ ଅନ୍ତର୍ଦ୍ଧାନ ହୋଇ ଯିବା ଲୋକ ସେ ନୁହେଁ । ସେହି ଅଞ୍ଚଳରେ ସମସ୍ତଙ୍କ ମୁହଁରେ ସେଇ ଗୋଟିଏ ନାଁ ଅମରେଶ ବାବୁ । ସେ ହିଁ ପ୍ରକୃତରେ ସମସ୍ତଙ୍କ ନେତା ।

ରାଜ୍ୟର ବିଭିନ୍ନ ରାଜନୈତିକ ଦଳ ଆସି ଅମରେଶଙ୍କୁ ବୁଝାଇବାରେ ଲାଗି ଯାଆନ୍ତି । ଅମରେଶର ଏ ଅଞ୍ଚଳରେ ଯେଉଁ ପ୍ରସିଦ୍ଧି, ସେ ଯଦି ବିଧାନ-ସଭା ପାଇଁ ଠିଆ ହୁଏ ତେବେ ତା ସହିତ ଅନ୍ୟ କୌଣସି ଦଳ ପ୍ରତିଦ୍ୱନ୍ଦ୍ୱିତା କରି-ବାକୁ ସାହସ କରିବନି । ତାଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କଲେ ଯେ କୌଣସି ଦଳର ଅମାନତ ଉଡ଼ିଯିବ ? ତାଙ୍କ ପ୍ରାର୍ଥୀତ୍ୱକୁ ସମର୍ଥନ କରିବାକୁ ସବୁ ଦଳ ତିଆର । କାରଣ ସମସ୍ତଙ୍କ ଇଚ୍ଛା, ଏଭଳି ଜଣେ ଯୋଗ୍ୟ ଓ ସ୍ୱାର୍ଥତ୍ୟାଗୀ ଲୋକ ବିଧାନସଭାକୁ ଯିବେ ନାହିଁତ ଆଉ କିଏ ଯିବେ ?

ଯେଉଁମାନଙ୍କର ଦେଶ ପାଇଁ କିଛି ତ୍ୟାଗ ନାହିଁ, ଯେଉଁମାନେ ଦେଶ ପାଇଁ କିଛି କରି ନାହାନ୍ତି, ଜନସେବା କଥା ଯେଉଁମାନେ ସ୍ୱପ୍ନରେ ସୁଦ୍ଧା ଭାବି ନାହାନ୍ତି, ସେମାନେ ଯଦି ବିଧାନସଭାକୁ ଯିବେ, ତେବେ ସେଭଳି ବିଧାନସଭା ଦ୍ୱାରା ଦେଶର ଉନ୍ନତି କେବେ ହୋଇ ପାରିବନି ? ଜନ ସେବା ନାଁରେ ଯାଇ ସେମାନଙ୍କର ଆତ୍ମସେବା ହିଁ ସାର ହେବ । ସମସ୍ତଙ୍କ ଇଚ୍ଛା ଅମରେଶ ଯଦି ବିଧାନ-ସଭାକୁ ଯାଏ, ତେବେ ନିଜର ବଳିଷ୍ଠ ବ୍ୟକ୍ତିତ୍ୱ ଓ ସ୍ୱାର୍ଥତ୍ୟାଗ ଆଦର୍ଶ ଦ୍ୱାରା ଅନ୍ୟ ବିଧାନସଭା ସଦସ୍ୟଙ୍କ ଆଖି ଖୋଲିଦେଇ ପାରିବ । ଦେଶସେବା ନାଁରେ ସେମାନେ ଯେଉଁ ଆତ୍ମସେବା କରି ଚାଲିଛନ୍ତି, ତାହାର ଅବସାନ ହୁଏତ ହୋଇପାରେ ।

ଲୋକେ ସିନା ଏତେ କଥା ଭାବୁଛନ୍ତି, କିନ୍ତୁ ଅମରେଶର ଭାବନା ଅନ୍ୟ ପ୍ରକାର । ସେ କହେ ପୂତି ଗନ୍ଧମୟ ରାଜନୀତି ଭିତରେ ପଶିଲେ ପୂତି ଗନ୍ଧରେ ସେ ଅଣନିଶ୍ୱାସୀ ହେବ ସିନା, ପୂତି ଗନ୍ଧକୁ ସେ ବଦଳାଇ ଦେଇ ପାରିବନି । ସେ ଏହି ରାଜନୀତି ଠାରୁ ଯେତେ ଦୂରରେ ରହିବ ସେତେ ଭଲ ।

ଅମରେଶର ନାସ୍ତିବାଣୀ ଅନ୍ୟମାନଙ୍କ ମନର ଉତ୍ସାହ ଭାଙ୍ଗି ପକାଏ । କେତେକ କହି ପକାନ୍ତି, ଅମରେଶ ବାବୁ ଯଦି ଠିଆ ନ ହେଉଛନ୍ତି, ତେବେ ତାଙ୍କ ସ୍ତ୍ରୀଙ୍କୁ ଠିଆ କରାଯାଉ । ତାଙ୍କ ସ୍ତ୍ରୀଙ୍କ ଅବଦାନ ବି କିଛି କମ ନୁହେଁ । ସ୍ୱାମୀଙ୍କ ଭଳି ତାଙ୍କର ଲୋକପ୍ରିୟତା ଅସୀମ । ସେ ଯଦି ଠିଆ ହୁଅନ୍ତି, ତାଙ୍କୁ ପରାସ୍ତ କରିବା ମଧ୍ୟ କାହାରି ପକ୍ଷେ ସମ୍ଭବ ନୁହେଁ ।

ଯେଉଁମାନେ ବାସନ୍ତୀ ଦେବୀଙ୍କୁ ଠିଆ କରାଇବା କଥା କଳ୍ପନା କରନ୍ତି, ପରମୁହୂର୍ତ୍ତରେ ଭାବନ୍ତି, ସ୍ୱାମୀ ଯେତେବେଳେ ଠିଆ ହେବାକୁ ରାଜି ନୁହଁନ୍ତି, ସ୍ତ୍ରୀ କଣ କେବେ ରାଜି ହେବେ ? ଦୁହେଁ ଯେ ଏକା ରଚନାତ୍ମକ କର୍ମୀ । ସ୍ୱାମୀ ସ୍ତ୍ରୀ ଉଭୟଙ୍କର ରାଜନୀତି ଆଡ଼କୁ ମୋଟେ ଆକର୍ଷଣ ନାହିଁ । ବର୍ତ୍ତମାନ ବିଧାନ ସଭାର ସଭ୍ୟ ଭାବରେ ଏତେ ଅବାଞ୍ଛିତ ଲୋକ ପଶି ଗଲେଣି ଯେ ମାନସମ୍ମାନ ଥିବା ଲୋକ ତା ଭିତରକୁ ପଶିବାକୁ ନିଶ୍ଚୟ ଘୃଣା ବୋଧ କରିବ ।

ଦିନକୁ ଦିନ ଅମରେଶ ଘରକୁ ଲୋକଙ୍କ ଧାଡ଼ି ଲାଗିଲେ । କେଉଁଦିନ ରାଜନୈତିକ ଦଳ ନେତାମାନେ ଆସିଲେଣି ତ କେଉଁଦିନ ବିଭିନ୍ନ ଗ୍ରାମର ମୁଖିଆ ମୁଖିଆ ଲୋକେ ଆସିଲେଣି । ସମସ୍ତଙ୍କ ଜିଦ୍, ଅମରେଶ ମଧୁପୁର ନିର୍ବାଚନ ମଣ୍ଡଳୀରୁ ବିଧାନସଭାକୁ ଠିଆ ହେଉ । ସମସ୍ତଙ୍କୁ ନାସ୍ତିବାଣୀ ଛଡ଼ା ଆଉ କିଛି ଶୁଣାଉ ନଥାଏ ଅମରେଶ ।

କେତେ ଲୋକ ଆସିଲେ ବୁଝାଇ ରାଜି କରାଇବା ପାଇଁ । ଅମରେଶ କିନ୍ତୁ ନିଜ ମତରେ ଅଟଳ । ଅମରେଶ ଯେମିତି ଗାଉଁଲି ଲୋକଙ୍କ ସହିତ କାମକରି ଗାଁ । ରୂପ ବଦଳାଇ ଦେଇପାରିଛି, ସେହିଭଳି ବିଧାନସଭାକୁ ଯାଇ ସେଠାକାର ଭ୍ରଷ୍ଟାଚାରୀ ସଭ୍ୟମାନଙ୍କ ସହିତ କାମକରି ବିଧାନସଭାର ରୂପ ବଦଳାଇ ଦେଉ ଏହା ସମସ୍ତଙ୍କ ଇଚ୍ଛା । ବିଧାନସଭାର ଲୋକ ବର୍ତ୍ତମାନ ନୈତିକତାଠାରୁ ଦୂରେଇଯାଇ ଯେମିତି ଅମଣିଷ ହୋଇ ପଡ଼ିଛନ୍ତି, ସେଥିରୁ ସେମାନଙ୍କୁ ରକ୍ଷା କରିବା ତାର ଏକ କର୍ତ୍ତବ୍ୟ ହେବା ଉଚିତ । ଯେଉଁମାନେ ମଧୁପୁର ନିର୍ବାଚନ-ମଣ୍ଡଳୀର ହିତାକାଂକ୍ଷୀ, ସେମାନେ ନାଛୋଡ଼ ବନ୍ଧା । କଳେ ବଳେ କୌଶଳେ କେମିତି ଅମରେଶକୁ ବିଧାନସଭାକୁ ପଠାଇବା ପାଇଁ ରାଜି କରାଇବେ ସେଇଆ ସେମାନଙ୍କର ଚିନ୍ତା ।

ସେମାନେ ଦେଖିଲେ ଅମରେଶକୁ ରାଜି କରାଇବା ପାଇଁ ଆଉ କିଛି ବାଟ ନାହିଁ । ଏକାବାଟ ହେଉଛି ବିନୋବାଜୀଙ୍କ ଶରଣାପନ୍ନ । ବିନୋବାଜୀ

ଯଦି ଅମରେଶଙ୍କୁ ବିଧାନସଭା ପାଇଁ କହନ୍ତି, ଅମରେଶ କାଟିଦେଇ ପାରିବେନି । କିନ୍ତୁ ବିନୋବାଜୀ ତ କେବେ କାହାକୁ କହିବେନି ବିଧାନସଭା ପାଇଁ ଠିଆ ହୁଅ । ତେବେ ଏ ପରିସ୍ଥିତିରେ କ'ଣ କରାଯିବ, ସେହି ହେଲା ସେମାନଙ୍କ ଚିନ୍ତା ।

ବିନୋବାଜୀଙ୍କ ଦକ୍ଷିଣ ହସ୍ତ ରାଧେଶ୍ୟାମଜୀଙ୍କର ଅମରେଶ ଉପରେ ଯଥେଷ୍ଟ ପ୍ରଭାବ ଅଛି । ଅମରେଶ ବିନୋବାଜୀଙ୍କୁ ଯେମିତି ଭକ୍ତି କରେ, ରାଧେଶ୍ୟାମଜୀଙ୍କୁ ମଧ୍ୟ ସେମିତି । ବିନୋବାଜୀ ସିନା କହିବେନି ଅମରେଶଙ୍କୁ । ସେମାନେ ଯଦି ରାଧେଶ୍ୟାମଜୀଙ୍କୁ ଅମରେଶଙ୍କୁ କହିବା ପାଇଁ ରାଜି କରାଇ ପାରନ୍ତି ତେବେ ଅମରେଶ ରାଧେଶ୍ୟାମଜୀଙ୍କ କଥାକୁ କାଟିଦେଇ ନପାରେ । କିନ୍ତୁ ରାଧେଶ୍ୟାମଜୀଙ୍କୁ ଅମରେଶଙ୍କୁ କହିବା ପାଇଁ ରାଜି କରାଇବା କିଛି ସହଜ କଥା ନୁହେଁ । ସେହି ହେବ ସେମାନଙ୍କର ଶେଷ ଚେଷ୍ଟା । ମଧୁପୁର ନିର୍ବାଚନ ମଣ୍ଡଳୀର ଦଳେ ନେତା ବିନୋବାଜୀଙ୍କ ପାଖକୁ ଗଲେ । ବିନୋବାଜୀ ସେତେବେଳେ ସଦାକତ ଆଶ୍ରମରେ ରହିଥାନ୍ତି । ସେଇଠାରେ ରାଧେଶ୍ୟାମଜୀଙ୍କ ସହିତ କଥାବାର୍ତ୍ତା କରି ଯାହା କରିବା କଥା କରିବେ । ସାରା ସିଂହଭୂମ ଜିଲ୍ଲାରେ ଗ୍ରାମଦାନ ସଂସ୍ଥା କେମିତି ଦିନକୁ ଦିନ ଅତ୍ୟଧିକ ଲୋକପ୍ରିୟ ହେଉଛି ଶୁଣିଲେ ହୁଏତ ରାଧେଶ୍ୟାମଜୀ ସେମାନଙ୍କୁ ନିରାଶ କରିବେନି ।

× × ×

ମଧୁପୁର ନିର୍ବାଚନ ମଣ୍ଡଳୀରୁ ବିହାର ବିଧାନସଭା ପାଇଁ ଏକ ସଭ୍ୟ ଭାବରେ ଠିଆ ହେବାପାଇଁ ଶେଷରେ ଅମରେଶଙ୍କୁ ରାଜି କରାଗଲା । ତେବେ ଗୋଟିଏ ସର୍ତ୍ତରେ । ସେ ଯେତେବେଳେ ଇଚ୍ଛା କରିବ, ବିଧାନ ସଭାରୁ ଇସ୍ତଫା ଦେଇ ପୂର୍ବ ସ୍ଥାନକୁ ଫେରି ଆସିପାରିବ । ସେ ଯେତେବେଳେ ଦେଖିବ ତା ଦ୍ୱାରା ବିଧାନସଭା ଓ ଏହାର ସଦସ୍ୟଙ୍କର କିଛି ଉପକାର ବା ରାଜ୍ୟର କିଛି ଉନ୍ନତି ହୋଇପାରୁନି, ସେତେବେଳେ ସେ ଇସ୍ତଫା ଦେଇ ବାହାରି ଆସିବ । ସେତେବେଳେ ଆଉ ଯେପରି କେହି ବାଧା ନ କରନ୍ତି, ସେଇ ପଦରେ ରହିବା ପାଇଁ । ନିର୍ବାଚନ ମଣ୍ଡଳୀର ମୁଖିଆ ମୁଖିଆ ଲୋକମାନେ ଏଥିରେ ରାଜି ହୋଇଗଲେ । ଅମରେଶ ବାବୁ ଯେ ଶେଷରେ ରାଜି ହୋଇଛନ୍ତି ସେହି ହେଉଛି ବଡ଼ କଥା; ତାଙ୍କ ସର୍ତ୍ତ ଯାହା ହେଉ ପଛକେ । ମଧୁପୁର ନିର୍ବାଚନ

ମଣ୍ଡଳୀ ସାରା ରାଜ୍ୟକୁ ଦେଖାଇଦେବାକୁ ଚାହେଁ ସେ କେମିତି ଏକ ଉଚ୍ଚ କୋଟୀର ନିଃସ୍ୱାର୍ଥପର ରଚନାତ୍ମକ କର୍ମୀଙ୍କୁ ବିଧାନସଭାକୁ ପଠାଇ ପାରନ୍ତି ।

ଅମରେଶ ରାଜି ହୋଇଯିବା କଥା ସାରା ନିର୍ବାଚନମଣ୍ଡଳୀରେ ପ୍ରଚାରିତ ହୋଇଗଲା । ସେ କୌଣସି ରାଜନୈତିକ ଦଳର ଲୋକ ଭାବରେ ଠିଆ ହେଉନାହାନ୍ତି । ସେ ଏକ ନିର୍ଦ୍ଦଳୀୟ କର୍ମୀ ଭାବରେ ନିର୍ବାଚନମଣ୍ଡଳୀର ଅନୁରୋଧକୁ ରକ୍ଷା କରିବାକୁ ଯାଇ ଠିଆ ହେଉଛନ୍ତି । ବହୁ ରାଜନୈତିକ ଦଳର ନେତାମାନେ ଆସିଲେ ତାଙ୍କୁ ତାଙ୍କ ଦଳ ସମର୍ଥନ କରିବା ସିଦ୍ଧାନ୍ତ ଜଣାଇ-ଦେବା ପାଇଁ । ସେ ସମସ୍ତଙ୍କୁ ହସି ହସି ଧନ୍ୟବାଦ ଜଣାଇ ବିଦାୟ ଦିଅନ୍ତି । ଅମରେଶ ବାବୁଙ୍କ ଲୋକପ୍ରିୟତା ମଧୁପୁର ନିର୍ବାଚନମଣ୍ଡଳୀରେ ଏତେ ବଢ଼ି ଯାଇଥାଏ ଯେ ତାଙ୍କ ବିପକ୍ଷରେ କୌଣସି ରାଜନୈତିକ ଦଳ ପ୍ରାର୍ଥୀ ଠିଆ କରାଇବାକୁ ସାହସ କରୁ ନ ଥାନ୍ତି, ଭୟ ସେମାନଙ୍କ ଅମାନତ ଉଡ଼ିଯିବ । ତାହୁଁ ତାହୁଁ ନିର୍ବାଚନ ହେବା ବହୁ ପୂର୍ବରୁ ସେ ମଧୁପୁର ନିର୍ବାଚନମଣ୍ଡଳୀରୁ ବିନା ପ୍ରତିଦ୍ୱନ୍ଦ୍ୱିତାରେ ବିଧାନସଭାକୁ ନିର୍ବାଚିତ ହୋଇଗଲେ । ମଧୁପୁର ନିର୍ବାଚନମଣ୍ଡଳୀରେ ସେଦିନ ଆନନ୍ଦର ଢେଉ ଖେଳିଗଲା । ଅମରେଶ ବାବୁ ନିର୍ବାଚିତ ହୋଇଯିବା ଖବର ଯେ ଶୁଣିଲା ସେ ଆନନ୍ଦ ପ୍ରକାଶ ନ କରି ରହି ପାରିଲାନି । ଚାରିଆଡ଼େ 'ଅମରେଶ ବାବୁଙ୍କ ଜୟ', 'ଅମରେଶ ବାବୁଙ୍କ ଜୟ' ପ୍ରତିଧ୍ୱନିତ ହେଲା ।

ପୁଅ ବିହାର ବିଧାନସଭାକୁ ନିର୍ଦ୍ଦ୍ୱନ୍ଦ୍ୱରେ ନିର୍ବାଚିତ ହେବା ଖବର ଶୁଣି ରାଧାମଣି ଦେବୀଙ୍କ ଆନନ୍ଦ କହିଲେ ନସରେ । ମନ ତାଙ୍କର କୁଣ୍ଡେମୋଟ । ସ୍ୱାମୀ କେମିତି ଅଫିସରୁ ଆସିଲେ ପୁଅର ଏ କୃତିତ୍ୱ କଥା ତାଙ୍କ ଆଗେ ବଖାଣି ବସିବେ, ସେଇ ଚିନ୍ତାରେ ଥାଆନ୍ତି । ବିପିନ ବାବୁ ଅଫିସରୁ ଆସି ଘରେ ଗୋଡ଼ ଦେଇଛନ୍ତି କି ନାହିଁ ରାଧାମଣୀ ଦେବୀ ଯାଇ ହସିହସି କହି ବସିଲେ, "ହଇହେ ଶୁଣିଲଣି, ପୁଅ ଆମ ମଧୁପୁର ନିର୍ବାଚନମଣ୍ଡଳୀରୁ ବିହାର ବିଧାନସଭାକୁ ଏକ ସଭ୍ୟ ଭାବରେ ନିର୍ଦ୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଛି ।"

"ଆଁ, ଅମରେଶ ନିର୍ବାଚିତ ହୋଇଛି ? ରାଜନୀତିରେ ପଶିବା ପାଇଁ ପିଲାଟାକୁ କିଏ ଦୁର୍ବୁଦ୍ଧି ଦେଲା ? ରାଜନୀତିରେ ପଶିବା ଅର୍ଥ ନଷ୍ଟ ହୋଇଯିବା । ପିଲାଟା ଯାହା ଭଲ ଥିଲା, ଏଥିରେ ପଶିଲା ମାନେ ଜାଣ ସେ

ଚୂର ପାଞ୍ଚିରୁ ଗଲ । ଆଜକାଲ ରାଜନୀତି ଯାହା ହେଲଣି, ସେଥିରେ ଭଦ୍ରଲୋକ କ'ଣ ପଶିବା କଥା ? ପିଲାଟାକୁ ଲୋକମାନେ ଏଣୁତେଣୁ ଶିଖାଇ ନଷ୍ଟ କରି ଦେବାପାଇଁ ଅବାଟକୁ ନେଇଗଲେ ।

"ବାଟ, ଅବାଟ, ଏମିତି କ'ଣ ହେଉଛ ମ ? ପୁଅ ଏମ:ଏଲ.ଏ ହେଲା, କେତେବଡ଼ କଥା ହେଲା ଦେଖ୍ନ ?"

"ତୁମକୁ ସିଏ ବଡ଼ ରାଧାମଣି । ଆଉ କହନ । ଏମ,ଏଲ.ଏ ବୋଲି କ'ଣ ଆକାଶକୁ ଉଠିଗଲା । ଏମ:ଏଲ.ଏଙ୍କ ନାମରେ ଯେଉଁ ଗାଳି ଗୁଲଜ, ସେସବୁ ଶୁଣିବାକୁ ପଡ଼ିବ ଆମକୁ । ଏମ.ଏଲ:ଏଙ୍କ କାମ କଣ ମୁଁ ଦେଖୁନି ରାଧାମଣି ଏହି ଡ଼.ପି:ଆଇ ହେଲା ଦିନରୁ । ଯେତେ ପ୍ରକାର ନିନ୍ଦୁରା କାମ ଏହି ଏମ.ଏଲ.ଏ ମାନଙ୍କର । ସେମାନଙ୍କ ସରକାର ମାତ କରିବେ ଗୋଟିଏ । ସେମାନେ ହାତଟେକି ସେହି ମତକୁ ସମର୍ଥନ ଜଣାଇଥିବେ । ଏଣେ ଡ଼.ପି.ଆଇଙ୍କ ପଛରେ ଗୋଡ଼ାଇବେ, କ'ଣ ନା ସେ ମତକୁ ଛାଡ଼ ସେମାନଙ୍କ କଥା ଅନୁସାରେ ଅମକେଇ କାମ କର, ସମକେଇ କାମ କର । ଏମିତି ଦୋମୁହାଁ ମତ ଯୋଗୁଁ ସେମାନଙ୍କୁ ଦେଖିଲେ ମୋ ହାଡ଼ ଜଳେ । ଶେଷରେ ପିଲାଟା ଏତେ ତଳକୁ ଖସିଯିବ ବୋଲି ମୁଁ ଆଶାକରି ନଥିଲି ରାଧାମଣି । କାହାକୁ କହିବା, ଭାଗ୍ୟକୁ ଆଦରି ରହିବା, ଏହା ଆମ ଭାଗ୍ୟର ଫଳ ।"

"ପୁଅ ନିର୍ଦ୍ଦଳରେ ନିର୍ବାଚିତ ହୋଇଛି । କେତେ ସୁଖର କଥା କହିଲ ? ଏଲିଟି ତୁମେ ଏଣୁତେଣୁ ଗୁଡ଼ାଏ କ'ଣ କହି ହେଉଛ ମ ?

"ଆଁ, ନିର୍ଦ୍ଦଳରେ ନିର୍ବାଚିତ ହୋଇଛି ! ଯାହା ବା ଭବିଷ୍ୟତ ଥିଲା, ତା'ବି ଗଲା । ତୁମ ପଛଆଡ଼େ ଯଦି ବଡ ଦଳ ନାହିଁ କି ମନ୍ତ୍ରୀ ନାହାନ୍ତି, କି ତୁମ ପଛଆଡ଼େ ପାଞ୍ଚ ସାତଟା ଏମ.ଏଲ.ଏ ନାହାନ୍ତି, ତେବେ ତୁମକୁ ପଚାରିବ କିଏ ? ପୁଣି ନିର୍ଦ୍ଦଳୀୟଙ୍କ ମା ବାପ କେହି ନାହାନ୍ତି । ଭଗବାନ ସେମାନଙ୍କର ସାହା ଭରସା । ଖଣ୍ଡାଖିଆ ଏମ.ଏଲ.ଏ ଭାବରେ ଗଣାଯାନ୍ତି ସେମାନେ । ଶେଷରେ ସେ ହତଭାଗାଟା ଏଇ ଝଡ଼ାଖିଆଙ୍କ ଦଳରେ ନାଁ ଲେଖାଇଲା ?"

"ପୁଅ ଜଣେ ଏମ.ଏଲ.ଏ ହେଲା ଖୁସି ହେବ କଅଣ, ଖଣ୍ଡାଖିଆ କହି ତା ମାନଟାକୁ ତଳେ ପକାଇ ଦେଉଛ ।"

"ତୁମେ ଆଉ ପୁଅ ଗୁଣ ଏତେ ଗାଅନ ରାଧାମଣି । ମୁଁ ବେଶ ଦେଖି ପାରୁଛି ସେ କ'ଣଟାଏ କରି ପକାଇବ।"

"ତୁମେ ଗୋବିନ୍ଦପୁର ଯାଅ, ଦେଖିବ ପୁଅର କୀର୍ତ୍ତି । ସେ ଗାଁ ସବୁ କ'ଣ ଥିଲା, ଏବେ କ'ଣ ହୋଇଛି ଦେଖିଆସ, ତାପରେ କହିବ ପୁଅ କ'ଣ କଲା, କ'ଣ ନକଲା । ସେସବୁ ଗାଁ ବର୍ତ୍ତମାନ ସାକ୍ଷାତ ବୈକୁଣ୍ଠପୁର । ପୁଅ ବୋହୂ ଦିଜଣ ଯାକ କ'ଣ କମ ଖଟୁଛନ୍ତି ସେଠି ? ଯିଏ ସେ ଗାଁକୁ ଦେଖୁଛି, ଘଡ଼ିଏ ଠିଆ ହୋଇ ଅନାଉଛି । ବୋହୂଟା ଏଡ଼େ ଛୋଟିଆ ପିଲାଟାଏ, କମ୍ ଖଟୁଛି ଲୋକଙ୍କ ପାଇଁ । ଏଣେ ପୁଣି ମାଷ୍ଟ୍ରାଣୀ ଚାକିରି, ତେଣେ ଗାଁ ଗାଁ ବୁଲି କାମ ତଦାରଖ । ସେ ପୁଅବୋହୂଙ୍କୁ ଧନ୍ୟ କହିବା କଥା ।"

"ଗୋବିନ୍ଦପୁର ଗାଁକୁ ଯିବାପାଇଁ ମୋତେ କେତେ ଥର ମନ୍ତ୍ରୀ କହିଲେଣି । ସେଠାକାର ସ୍କୁଲ ପରିଚାଳନା ଓ ପାଠପଢ଼ା କେମିତି ଚାଲିଛି ନିଜ ଆଖିରେ ଦେଖି ଆସି ରିପୋର୍ଟ ଦେବା ପାଇଁ । ତୁମ ବୋହୂ ସେଠି ଥିବାରୁ ମୁଁ ସେ ଗାଁକୁ ଯିବା ନାଁ ମୋତେ ଧରୁନି । କେଉଁ ମୁହଁରେ ଯିବି ? ସେଠି ତୁମ ବୋହୂ ମାଷ୍ଟ୍ରାଣୀ, ସମୁଧି ମାଷ୍ଟ୍ର, ମୁଁ ସେମାନଙ୍କ କାମ ତଦାରଖ କରିବାକୁ ଯିବି ? ଲୋକେ ଯେତେବେଳେ ଜାଣିବେ ମୋ ବୋହୂ ଜଣେ ମାଷ୍ଟ୍ରାଣୀ, ସମୁଧି ସେହି ଗାଁ ସ୍କୁଲ ଶିକ୍ଷକ, ମୋ ସମ୍ମାନ ସେଠି ରହିବକି ? ମୁଁ ଡି.ପି.ଆଇ ଭାବରେ ସେଠି ସମ୍ମାନ ଧରି ଠିଆହୋଇ ପାରିବି ? ମୋ ବାପ ଝିଅ ସେ ଅଞ୍ଚଳରେ ଥିଲା ପର୍ଯ୍ୟନ୍ତ ମୁଁ ସେ ଅଞ୍ଚଳ ମାଡ଼ିବିନି ରାଧାମଣି ।"

"ଆଃ, ମୋ ସୁନାନାକି ବୋହୂଟି, କେଡ଼େ ସୁନ୍ଦର ତା'ର ଚାଲିଚଳନ, କଥାବାର୍ତ୍ତା ସ୍ୱଭାବ ଚରିତ୍ର କେତେ ଭଲ, ଦେଖିଲେ ସେ ତୁମକୁ କିଣିନେବ । ତା ବ୍ୟବହାର ମୋତେ ଭାରି ଖୁସିଲାଗେ । ସମୁଧି, ସମୁଦୁଣୀ ଆହୁରି ଭଲ ଲୋକ ।"

"ଥାଉ, ଥାଉ, ଏତେ ଆଉ ଟେକନା । ପୁଅ ବୋହୂଙ୍କୁ ଟେକିଟେକି ଦିନଗଲା । ବର୍ତ୍ତମାନ ସମୁଧି, ସମୁଦୁଣୀଙ୍କୁ ଟେକା ଆରମ୍ଭ ହୋଇଗଲା ।"

"ତୁମେ ଏମିତି କାହିଁକି କହୁଛ ଯେ ? ପୁଅ ବାହାଘର କେତେଦିନ ହୋଇଗଲେଣି । ଦିନେତ ଚାଲିଅଛି କି ବୋହୂକୁ ଦେଖିବାକୁ ଗଲନି । ପୁଅର

ପୁଅଝିଅ ବୋଲି ଦୁଇଟି । କେଡ଼େ ଗୁଲୁଗୁଲିଆ ହୋଇଛନ୍ତି । ତୁମେ ସେମାନଙ୍କୁ ଏ ଯାଏଁ ଦେଖିନ । ତୁମ ହୃଦୟ ଯେ କେଉଁ ପଥରରେ ତିଆରି ମୁଁ ଜାଣି ପାରୁନ । ନିଜ ରକ୍ତ ଦେଇ ପରା ପୁଅକୁ ଗଢ଼ିଛ ? ଟିକିଏ ବି ମନ ହେଉନ, ଯାଇ ଦେଖି ଆସିବାକୁ, ସେମାନେ କେମିତି ଅଛନ୍ତି । ସେ ମନ କି ମନ କେଜାଣି ?”

“ଥାଉ, ଥାଉ, ତୁମର ଯଦି ମନ ହେଉଛି ଯାଉନ, ପୁଅ ବୋହୂ ପାଖରେ ରହିବ । ବୋହୂ ପରଶା ଖାଇବ, କିଏ ମନା କରୁଛି ତୁମକୁ ?”

“ଅନାଉଁ ଅନାଉଁ ବାର ବରଷ ହୋଇଗଲା ତଥାପି ବି ତୁମ ହୃଦୟ ଟିକିଏ ତରଳିଲା ନାହିଁ । ମା’ବାପ ଦିଜଣ ଯାକ ଦିନରାତି ଦେଶ କାମରେ ଲଗିଛନ୍ତି । ଛୁଆ ଦିଟାଙ୍କର କିଏ ଯତ୍ନ ନେଉଥିବେ କେଜାଣି ? ଭଗବାନ ସେମାନଙ୍କୁ ଘଣ୍ଟ ଘୋଡ଼ାଇ ରଖିଥାନ୍ତୁ । ଆମ ସମ୍ଭୂଦୁଣୀ ଭାରି ପାଗଳିବାଲି । ସେ ପିଲି ଦି’ଟାକର ଯତ୍ନ କ’ଣ ନେଉ ନଥିବ ? ମୁଁ ଏଡ଼େ ହତଭାଗିନୀ ଯେ ପିଲା ଦୁଇଟାକୁ ଛାଡ଼ି ମୁଁ କେତେ ଦୂରରେ ପଡ଼ିଛି ।” କହୁ କହୁ କାନ୍ଦି ପକାଇଲେ ରାଧାମଣୀ ଦେବୀ ।

“ଅ.ଉ ଏତେ ସକ୍ ସକ୍ ହୁଅନି ରାଧାମଣୀ । ଏଥର ଯାଅ ପୁଅ ବୋହୂଙ୍କ ପାଖରେ ରହିବ । ନାତି ନାତୁଣୀଙ୍କୁ ଖେଳାଉଥିବ । ସମୁଧୀ, ସମଦୁଣୀଙ୍କ ସହିତ ହସଖୁସିରେ ଦିନ କାଟିବ । ଏଠି ଏ ଅପନ୍ତରାରେ ପଡ଼ିଛ କାହିଁକି ଶୁଣେ ?”

“ହଇହେ ତୁମେ ଆସି ବୁଢ଼ାଟିଏ ହେଲଣି, ତୁମର ମନ କ’ଣ ଟିକିଏ ଡ଼ାକୁନି, ନାତି ନାତୁଣୀ ଦି’ଟାଙ୍କୁ ଟିକିଏ ଦେଖି ଆସିବା ପାଇଁ । ବାପ ସିନା ଦୋଷ କଲା, ତାକୁ ଦେଖି ଯିବନି । ହେଲେ ଏଡ଼େ ଗ୍ଲେଠ ଗ୍ଲେଠ ପିଲା ତୁମର କି ଦୋଷ କଲେ ଯେ ତୁମେ ସେମାନଙ୍କ ନାଁ । ବି ଭୁଲରେ ଧରୁନ ?”

“ଥାଉ, ଥାଉ ଏତେ କହନି ଆଉ । ତୁମର ଯଦି ଏଠି ରହିବାକୁ ମନ ଲାଗୁନି, ମାଧିଆକୁ କହୁନ ତୁମକୁ ଟିକଟ କାଟି ବସରେ ବସାଇ ଦେଇ ଆସିବ । ତୁମର ଏଠି ଯଦି ଶାନ୍ତି ନାହିଁ, ଯାଉନ ସେଠି ରହିବ । ମୋର ସେଥିରେ

ଆପତ୍ତି ନାହିଁ । ଆଉ ଏଠି ପୂଅ ବୋହୂ, ନାତି ନାତୁଣୀ ହୋଇ ସବୁ ସୁଖ ହୁଅନ୍ତା । ମଣିଷ ଏତେ ଦିନ ପରେ ସ୍ୱର୍ଗରୁ ଫେରିଲା ପରି, ଶାନ୍ତିରେ ଟିକିଏ ରହି ପାରିଲାନି ଏଠି ।"

× × ×

"ହଇହେ ତୁମେ ଶୁଣୁଛନା ? ପୂଅ କାଲେ ମନ୍ତ୍ରୀ ହେଉଛି ?"

"ଆଁ, ଅମରେଶ ମନ୍ତ୍ରୀ ହେବ ?" ଝାଏ ବାନ୍ଧୁ ବାନ୍ଧୁ ବିପିନ ବାବୁ ପଚାରିଲେ । ସେ ତ କେଉଁ ଦଳରେ ନାହିଁ, ତାକୁ ମନ୍ତ୍ରୀ କରିବ କିଏ ? ସେ ମନ୍ତ୍ରୀ ହେବ ବୋଲି ତୁମକୁ କିଏ କହିଲା ?"

"ହଁ, କେନ୍ଦ୍ରରୁ କାଲେ ଫୋନ ଆସିଛି, ମୁଖ୍ୟମନ୍ତ୍ରୀଙ୍କ ଠାକୁ । ଅମରେଶକୁ ଯେ କୌଣସି ପ୍ରକାରେ ଗୋଟିଏ ଉଚ୍ଚ ପାହ୍ୟା ମନ୍ତ୍ରୀ କରିବାକୁ । ଉପରେ ତ ଯେଉଁ ଦଳର ଶାସନ, ଏଠିତ ସେହି ଦଳର ଶାସନ । ଅନ୍ୟ ଦଳ ସହିତ ସେହି ଦଳ ମଧ୍ୟ ପୂଅର ପ୍ରାର୍ଥୀତ୍ୱକୁ ସମର୍ଥନ କରିଥିଲା । ପୂଅକୁ ମନ୍ତ୍ରୀ ନ କରିବେ କାହିଁକି ?

"କିନ୍ତୁ ନିର୍ଦ୍ଦଳୀୟ ଲୋକକୁ ମନ୍ତ୍ରୀ କରିବ କିଏ ? ଏମ୍,ଏଲ୍.ଏଙ୍କ ଭିତରେ ଯେଉଁମାନେ ପ୍ରଭାବଶାଳୀ, ଯେଉଁମାନଙ୍କ ପଛରେ ବହୁ ସଂଖ୍ୟକ ଏମ.ଏଲ୍.ଏ ଅଛନ୍ତି, ବା ଯେଉଁମାନେ ଦଳର କର୍ମକର୍ତ୍ତାଙ୍କ ଭାଇବନ୍ଧୁ କି ସେମାନଙ୍କ ସହିତ ଭଲ ଦୋସ୍ତି, ସେମାନେ ସାଧାରଣତଃ ମନ୍ତ୍ରୀ ହୁଅନ୍ତି । ଅମରେଶର ସେମିତି କିଛି ଥିଲା ଭଳିଆ ତ ଜଣାପଡୁନି । ତାକୁ ମନ୍ତ୍ରୀ କରିବ କିଏ ? ଏହା ନିହାତି ଉଡା ଖବର ।"

"ହଁ, ମୁଁ ଶୁଣୁଛି, ପୂଅ କୌଣସି ଦଳରେ ନହେଲେ ମଧ୍ୟ ପ୍ରଧାନ ମନ୍ତ୍ରୀଙ୍କ ଇଚ୍ଛା ସେ ଜଣେ ଉଚ୍ଚ ପାହ୍ୟା ମନ୍ତ୍ରୀ ହେବ ।"

କିଏ ଜାଣେ ? ତୁମେ ଶୁଣିଥିବ । ମୋ କାନରେ ତ ସେକଥା ପଡ଼ିନି । ବର୍ତ୍ତମାନ ତ ମନ୍ତ୍ରୀ ତାଲିକା ତିଆରି ଚାଲିଛି । କିଏ କିଏ ମନ୍ତ୍ରୀ ହେବେ, କେତେ ଲୋକଙ୍କ ନାଁ ଶୁଣା ଯାଉଛି । କାହିଁ ଅମରେଶ ନାଁ ତ କେଉଁଠି ଶୁଣା ଯାଉନି ।"

"ଗତକାଲି ସନ୍ଧ୍ୟାରେ କାଳେ ପ୍ରଧାନମନ୍ତ୍ରୀ ଏଠା ମୁଖ୍ୟମନ୍ତ୍ରୀଙ୍କ ଠାକୁ ଫୋନ କରିଥିଲେ ।"

"ହୋଇ ପାରିଥାଏ, ମୋ କାନରେ ପଡ଼ିନ ।"

"ପୁଅ ତ ଏମ୍.ଏଲ.ଏ କଲୋନୀରେ ରହୁଛି । ବୋହୂ ଆସିନି । ପିଲାମାନେ ଗୋବିନ୍ଦପୁରରେ ଅଛନ୍ତି । ପୁଅ ଟିକିଏ ବି ଏଠାକୁ ଆସୁନି ।"

"ଦେଖୁଛ, ରାଧାମଣି ଦେଖୁଛତ ତୁମ ପୁଅକୁ ? ତୁମେ ତାକୁ ଦେହ ରକ୍ତ-ମାଂସ ଦେଇ ଜନ୍ମ କରିଛ । ଏଇ ଏକା ସହରରେ ରହୁଛି । ବାପ ମାଙ୍କ ପାଖକୁ ଟିକିଏ ବି ଆସୁନି । ସେ କେମିତିକା ପୁଅ ଏଥର ଅନୁମାନ କର । ସେମାନେ ତୁମ ବୁଢ଼ାକାଳକୁ କେମିତି ସହାୟକ ହେବେ, ଜାଣି ପାରୁଥିବ ଏଥିରୁ । ଅମରେଶ ଭଲ ପୁଅ, ଶେଷରେ ଏମିତି ହେବ ବୋଲି କିଏ ଜାଣିଥିଲା ?" କହୁଁ କହୁଁ ସ୍ୱପ୍ନିଲ ବାବୁଙ୍କ କଣ୍ଠରୋଧ ହୋଇ ଆସିଲା ।

"ସେ କ'ଣ ଆସନ୍ତା ନାହିଁ ?" ପୁଅ ଆଜିକୁ ବାରବର୍ଷ ହେଲା ଘରୁ ଚାଲିଗଲାଣି । କେବେ ଦିନଟାଏ ପାଇଁ ତା' ପାଖକୁ ଯାଇଛ ? ସେ କେତେ ବେଗାମୀ ପଡ଼ିଲା, ଦିନେ ଯାଇଛ ପୁଅକୁ ଦେଖିବା ପାଇଁ । ତା'ର ବିଭାଘର ହେଲା, ନାତି ନାତୁଣୀ ହେଲେଣି, କେବେ ଦିନେ ଯାଇଛ ସେମାନଙ୍କୁ ଦେଖିବା ପାଇଁ । ତୁମ ବୋହୂ କିଏ, ନାତି ନାତୁଣୀ କିଏ ଦେଖାଇଦେଲେ ତୁମେ ଚିହ୍ନି ପାରିବ ସେମାନଙ୍କୁ ? ପୁଅକୁ ତ ତ୍ୟାଜ୍ୟପୁତ୍ର କରି ଭଳି ଘର ଚାଞ୍ଜିରୁ କାଟି ଦେଇଛ । ବର୍ତ୍ତମାନ କହୁଛ କ'ଣ ନା ପୁଅ ଏଇ ସହରରେ ରହୁଛି, ଏଠାକୁ ଟିକିଏ ଆସୁନି । ବାରବର୍ଷ ହେଲା ପୁଅକୁ ତୁମେ ପୁଅ ଭଳି ଦେଖିଛ ? ତୁମର ପୁଅଟିଏ ଅଛି ବୋଲି ଏହି ବାରବର୍ଷ କାଳ କେବେ ଦିନେ ଭୁଲରେ ବି କହିଛ ? ପୁଅ ଯେତେବେଳେ ଗୋବିନ୍ଦପୁରରେ ଟାଇଫଏଡ଼ରେ ପଡ଼ିଥିଲା, ମୁଁ ତୁମକୁ କେତେ କହିଲି କେତେ ନେହୁରା ହେଲି, ତୁମେ ନ ଶୁଣିଲ ଭଳିଆ ଚାଲିଗଲ । ତୁମେ ସେହି ବାପଟି ?

ରାଧାମଣି ଦେବୀଙ୍କ ଏହି କଥା କେଉଁ ଦେହରେ ସ୍ୱପ୍ନିଲ ବାବୁଙ୍କ ମନରେ ପରିବର୍ତ୍ତନ ଆସିଲା ଭଳି ମୁହଁରୁ ଜଣା ପଡ଼ିଲା । ରାଧାମଣି ଦେବୀ କହି ଚାଲିଥାନ୍ତି, "ପୁଅ ଦିନା ତୁମକୁ ଦେଖା କରିବାକୁ ଆସୁନି । ସେ କ'ଣ ମୋତେ

ଦେଖା କରିବାକୁ ଆସୁନ କ ? ତୁମେ ଗସ୍ତରେ ବାହାରଗଲେ ସେ ଏହି ଘରକୁ ଆସେ । ତା'ର ଝିଅଙ୍କ ପଖାଳ ଖାଇବ । ସେ ଏଇ ଘରୁ ଏ ଭିତରେ କେତେ ଥର ପଖାଳ ଖାଇ ଗଲାଣି ତୁମେ ଜାଣିଛ ? ଏମ୍.ଏଲ୍.ଏ କଲୋନି ମେସରେ ଖାଉଛି । ସେଠି ଭଲ ରନ୍ଧା ହେଉନ ବୋଲି ତୁମେ ନଥିଲା ବେଳେ ଏଠାକୁ ଖାଇବାକୁ ପଳାଇ ଆସେ ।

"ତୁମେ କ'ଣ ଅମରେଶ ମୁହଁରୁ ଶୁଣିଛ ଗ୍ରାମଣୀ ସେ ମନ୍ତ୍ରୀ ହେଉଛି ବୋଲି ?

"ତୁମେ ତୁମ ପୁଅକୁ କ'ଣ ଏପାଏଁ ଚିହ୍ନିନ ? ଅମରେଶ କ'ଣ ତୁମ ଭଳି କ୍ଷମତା ଲୋଭୀ । ସେ କ'ଣ କେବେ ଗୃହିବ ମନ୍ତ୍ରୀ ହେବ ବୋଲି ? ଅମରେଶ ମୋଟେ ମନ୍ତ୍ରୀ ହେବା ପାଖ ପଶୁନ । ପୁଅକୁ ଏଠାକୁ ଖୋଜି ଖୋଜି କେତେଜଣ ଟୋକା ଏମ୍.ଏଲ୍.ଏ ଏବେ ଆସିଥିଲେ । ସେମାନଙ୍କ ମୁହଁରୁ ଶୁଣିଛି ପୁଅକୁ ମୁଖ୍ୟମନ୍ତ୍ରୀ କଥାବାର୍ତ୍ତା କରିବା ପାଇଁ କେତେ ଖୋଜୁଛନ୍ତି । ପୁଅ କାଲେ ମୋଟେ ଧରୁଛୁଆଁ ଦେଉନ ।"

ପୁଅ ମନ୍ତ୍ରୀ ହେବା ଶୁଣି ବିପିନବାବୁଙ୍କ ମନ କୁଣ୍ଢେ ମୋଟ । ହେଲେ ଏତ ରାଜନୀତି ଖେଳ, କେତେବେଳେ କ'ଣ ହେବ କିଏ କହିପାରିବ ?

ଅମରେଶକୁ ମୁଖ୍ୟମନ୍ତ୍ରୀ ଢେର୍ ବୁଝାଇଲେ କ୍ୟାବିନେଟ ପାହ୍ୟା ମନ୍ତ୍ରୀ ହେବା ପାଇଁ । ସେ ମୋଟେ ରାଜି ହେବାକୁ ନାହିଁ । ସେ, ଥରେ ନାଁ କରିଛି ମାନେ ନାଁ, ହଁ ହେବା ସମ୍ଭବପର ନୁହେଁ ? ମୁଖ୍ୟମନ୍ତ୍ରୀ ଯେତେ ଆଡ଼ୁ ଗୃପ ମକାଇବା କଥା ପକାଇଲେ କିନ୍ତୁ କିଛି ହେବାକୁ ନାହିଁ । ମୁଖ୍ୟମନ୍ତ୍ରୀ ଯେତେବେଳେ ଜାଣିଲେ ଅମରେଶ ହେଉଛି ବର୍ତ୍ତମାନର ଡି.ପି.ଆଇ. ବିପିନ ବାବୁଙ୍କ ପୁଅ, ଡି.ପି.ଆଇ କହିଲେ କାଳେ ପୁଅ ରାଜି ହୋଇଯିବ, ସେହି ଆଶାରେ ଡି.ପି.ଆଇ.ଙ୍କୁ ଡାକି ପଠାଇଲେ । ମୁଖ୍ୟମନ୍ତ୍ରୀଙ୍କୁ ବାରଣ କରି ପାଟନା ସହରର ଏମ୍.ଏଲ୍.ଏ କହିଲେ, "ସେ ଭୁଲ କରନ୍ତୁନି ଆଜ୍ଞା, ବାପ ପୁଅଙ୍କର ମୋଟେ ପଡ଼େନା । ପୁଅ ଯଦି ହଁ କରିବାକୁ ଯାଉଥିବ, ବାପ ଯଦି ପୁଅକୁ ହଁ କରିବାକୁ କହିବ, ପୁଅ ଚଟ୍ କରି ନାଁ କରିଦେବ । ପୁଅ ବାରବର୍ଷ ହେଲା ଘର ଛାଡ଼ିଲାଣି, ଦିନେ ବି ତାଙ୍କ ବାପା ପୁଅ କେଉଁଠି ଅଛି ଦେଖିବାକୁ ଯାଇ ନାହାନ୍ତି ।"

"ଆଁ ଏମିତି ? ମୁଖ୍ୟମନ୍ତ୍ରୀ ଚମକି ପଡ଼ିଲେ ।" ଏଡ଼େ ଯୋଗ୍ୟବାନ ପୁଅ ପ୍ରତି ଡ଼.ପି.ଆଇ.ଙ୍କର ଏମିତି ଅବଜ୍ଞାର ?"

ଡ଼.ପି.ଆଇ ତ ଜିଦ୍‌ଖୋର ଲୋକ । ପୁଅ ତାଙ୍କୁ କିଛି ନ ପଚାରି ମନକୁ ମନ ସବୁ କରି ଯାଉଛି ବୋଲି ବାପାଙ୍କର ବଡ଼ କ୍ଷୋଭ । ବାପାଙ୍କୁ ନ ପଚାରି ଆଇ.ଏ.ଏସ. ଚାକିରି ଛାଡ଼ିଲା, ପାଟନା କଲେଜର ରିଡ଼ର ପଦ ଛାଡି ଭୂଦାନରେ ମିଶିଲା, ଶେଷରେ ସେ ବିବାହ କଲା, ବାପାଙ୍କୁ କିଛିବୋଲି କିଛି ପଚାରି ନାହିଁ । ସେସବୁ ରାଗ ଅଭିମାନ ବୁଢ଼ାଙ୍କ ମନରୁ କ'ଣ ଗଲାଣି ? ବୁଢ଼ା ପୁଅକୁ କହିବେନି କି ବୁଢ଼ାଙ୍କ କଥାକୁ ପୁଅ ମଧ୍ୟ ରଖିବନି ।"

"ତାଙ୍କ ମା ଯଦି କହନ୍ତି, ରଖିବେ କି କୁହ, ମୁଁ ତାଙ୍କ ମା'ଙ୍କୁ କହିବି ।"

"ସମ୍ଭବ ନୁହେଁ ?"

"ସ୍ତ୍ରୀଙ୍କ କଥା ରଖିବେ ?"

"ସ୍ତ୍ରୀ ତ ତାଙ୍କ ଭଳି ରଚନାତ୍ମକ କର୍ମୀ । ସେ ବି ତ ନିଜେ ମନ୍ତ୍ରୀ ହେବା ବିରୁଦ୍ଧରେ ।

"ତେବେ ?"

ବିନୋବାଜୀ କି ତାଙ୍କ ସହକର୍ମୀ ରାଧେଶ୍ୟାମଜୀ କହିଲେ ସେ ରଖି ପାରନ୍ତି । କିନ୍ତୁ ବିନୋବାଜୀ ତ କେବେ ତାଙ୍କୁ ମନ୍ତ୍ରୀ ହେବା ପାଇଁ କହିବେନି । ଅମରେଶ କ'ଣ ଏମ.ଏଲ.ଏ ହେବା ପାଇଁ ସହଜରେ ରାଜି ହେଉଥିଲି ? ରାଧେଶ୍ୟାମଜୀ କହିଲାରୁ ସେ ବହୁ କଷ୍ଟରେ ରାଜି ହେଲା । ଅମରେଶ ମୋ ପିଲାଦିନ ସାଙ୍ଗ । ହେଲେ, ମୋ କଥା କ'ଣ ରଖିବ ? ମୁଁ ତାକୁ କେତେଥର କହିଲିଣି, ସେ ମୋତେ କ'ଣ ଉତ୍ତର ଦିଏ ଜାଣନ୍ତି ? ସେ କହେ, ଦେଖ, ମୁଁ ତ ଗୋଠଖଣ୍ଡିଆ,'ଏମ.ଏଲ.ଏ । ମୁଁ କାହିଁକି ମନ୍ତ୍ରୀ ହେବି ? ମନ୍ତ୍ରୀ କେଉଁମାନେ ହୁଅନ୍ତି ? ଯେଉଁମାନଙ୍କ ପଛରେ ଯଥେଷ୍ଟ ସଂଖ୍ୟକ ଏମ.ଏଲ.ଏ ଅଛନ୍ତି, ସେହିମାନେହିଁ ମନ୍ତ୍ରୀ ହେବେ । ଯେଉଁମାନଙ୍କ ପଛରେ ଯେତେ ଏମ.ଏଲ.ଏ ସେ ସେତେ ଉଚ୍ଚ ପାହ୍ୟା ମନ୍ତ୍ରୀତ୍ୱ ପାଇବ । ମୋ ପଛଆଡ଼େ ତ ଗୋଟିଏ ସୁଦ୍ଧା ଏମ୍. ଏଲ.ଏ ନାହାନ୍ତି ମୁଁ ତ ନିର୍ଦ୍ଦଳୀୟ, ଗୋଠ ଖଣ୍ଡିଆ, ମୋତେ ଉଚ୍ଚପାହ୍ୟା ମନ୍ତ୍ରୀ

ପଦ ଦେଇ ଲାଭ କଅଣ ? ମୁଁ ବା ସେହି ମନ୍ତ୍ରୀପଦରେ କେତେଦିନ ରହି ପାରିବି ?"

"ତେବେ କ'ଣ କରାଯିବ ବର୍ତ୍ତମାନ ? ଦିଲ୍ଲୀରୁ ତ ନିର୍ଦ୍ଦେଶ, ଅମରେଶ ବାବୁଙ୍କୁ ଯେ କୌଣସି ପ୍ରକାରେ କ୍ୟାବିନେଟ ଭିତରକୁ ଆଣ ।"

"ଆମେ ଦଳେ ଏମ.ଏଲ.ଏ କ'ଣ ତା ପିଠି ଘୁଡୁଛୁଁ ? ଆମେ ତାକୁ ଯେତେ କହିଲେ ବି ଯେ ଆମେ ତା ପଛରେ ଅଛୁଁ ଓ ସବୁବେଳେ ରହିବୁ, ତା'ର ଭୟ କରିବାର କିଛି ନାହିଁ, ସେ କ'ଣ ତାକୁ ଶୁଣୁଛି ? ସେ ଓଲଟି କହେ, "ଭାଇ, ଏ ହେଉଛି ରାଜନୀତି, ତୁମ କଥାର ମହତ୍ତ୍ୱ କେତେ ମାତ୍ରେ ? ମୁଁ ସିନା ତୁମମାନଙ୍କୁ ଖୁସି କରି ରଖିପାରିଲି, ତୁମେମାନେ ମୋ ପଛରେ ସବୁ ଦିନେ ରହିବ । ଯେଉଁଦିନ ଦେଖିବ, ମୋ' ଠାରୁ କିଛି ଫାଇଦା ପାଉନାହିଁ, ତୁମେ ସେଦିନ ମୋତେ ମନ ଦେବ । ତୁମମାନଙ୍କ ନୀତି ଗୋଟିଏ ପ୍ରକାରର, ମୋ ନୀତି ଅନ୍ୟ ଏକ ପ୍ରକାର । କାହାର ତ କାହା ସହିତ ମେଳ ନାହିଁ । ଆମ ସମ୍ପର୍କ ଯେ କେତେ ଦିନ ଭଲ ରହିବ ଭଗବାନଙ୍କୁ ଜଣା । ମନ୍ତ୍ରୀତ୍ୱ ପାଇଁ ମୋର ଇଚ୍ଛା ନାହିଁ । ମୋତେ ଠେଲି ଓଟାରି କରି ଲାଭ କଅଣ ?"

ମୁଖ୍ୟମନ୍ତ୍ରୀଙ୍କ ଚିନ୍ତା, ଏମ.ଏଲ.ଏ ମାନଙ୍କ ଚିନ୍ତା, ଅମରେଶ ରାଜି ହେଉନି । ତେଣେ ଦିଲ୍ଲୀରୁ ସବୁବେଳେ ତାଗିଦ ଅମରେଶବାବୁଙ୍କୁ ଯେ କୌଣସି ପ୍ରକାରେ ମନ୍ତ୍ରୀ କର । କ'ଣ କରାଯିବ ଏ ପରିସ୍ଥିତିରେ ? ମନ୍ତ୍ରୀ ତାଲିକାରୁ ଅମରେଶର ନାଁ କାଟିଦେବା ଛଡ଼ା ଅନ୍ୟ ଉପାୟ ନାହିଁ । ଅଜ ପ୍ରଧାନ ମନ୍ତ୍ରୀଙ୍କ ସହିତ କଥାବାର୍ତ୍ତା କରି ମନ୍ତ୍ରୀ ତାଲିକାକୁ ଚୂଡ଼ାନ୍ତ କରିବାକୁ ପଡ଼ିବ । ଆସନ୍ତା କାଲି ମନ୍ତ୍ରୀ ମାନଙ୍କୁ ଶପଥ ନେବାକୁ ହେବ । ଅମରେଶ ପାଇଁ ସେମାନେ ଆଉ କେତେଦିନ ଗଡ଼ାଇ ଗଡ଼ାଇ ନେବେ ? ତେଣେ ମନ୍ତ୍ରୀ ତାଲିକା ଜାଣିବା ପାଇଁ ଏମ.ଏଲ.ଏ ଓ ସାଧାରଣ ଲୋକେ ବ୍ୟତିବ୍ୟସ୍ତ ହୋଇ ପଡିଲେଣି ।

ଏହିପରି ଭାବି ଭାବି ମୁଖ୍ୟମନ୍ତ୍ରୀ ଦିଲ୍ଲୀକୁ ଫୋନ ଉଠାଇଲେ, ପ୍ରଧାନ-ମନ୍ତ୍ରୀଙ୍କୁ ତାଙ୍କ ମନ୍ତ୍ରୀ ତାଲିକା ଜଣାଇଦେବା ପାଇଁ । ମୁଖ୍ୟମନ୍ତ୍ରୀ ତାଲିକା ପଢ଼ି ଶେଷ କରିଛନ୍ତି କି ନାହିଁ, ପ୍ରଧାନମନ୍ତ୍ରୀ ପଚାରିଲେ, ଅମରେଶ ବାବୁଙ୍କ ନାଁ କ'ଣ ମନ୍ତ୍ରୀମଣ୍ଡଳରେ ନାହିଁ ।

ମୁଖ୍ୟମନ୍ତ୍ରୀ କହିଲେ 'ଅମରେଶବାବୁଙ୍କୁ କେତେ କହିବା ସତ୍ତ୍ୱେ ସେ ମନ୍ତ୍ରୀ ହେବାକୁ ମନା କରିଦେଲେ ।

"କାହିଁକି, କାରଣ କ'ଣ ?"

'ସେ କହୁଛନ୍ତି, ସେ କୌଣସି ଦଳର ନୁହନ୍ତି, ତେଣୁ ସେ ମନ୍ତ୍ରୀ ହେବାକୁ ଅନିଚ୍ଛୁକ !'

ହେଉ, ଅମରେଶବାବୁଙ୍କୁ ଫୋନ୍‌ଠାକୁ ଡାକନ୍ତୁ । ମୁଁ ତାଙ୍କ ସହିତ କଥାବାର୍ତ୍ତା ହେବାକୁ ଚାହେଁ ।' ପ୍ରଧାନମନ୍ତ୍ରୀ କହିଲେ ।

ଅମରେଶଙ୍କୁ ଡାକିବା ପାଇଁ ଲୋକେ ଦୌଡ଼ିଲେ ଏମ୍.ଏଲ.ଏ. କଲୋନୀକୁ । ସେଠି ତାଙ୍କୁ ନ ଦେଖି କେତେଜଣ ଏମ୍.ଏଲ.ଏ. ଦୌଡ଼ିଲେ ପାଠନାରେ ତାର କେତେଜଣ ସାଙ୍ଗସାଥୀ ଘରକୁ । ସେଠି ତାଙ୍କୁ ନ ଦେଖି ଦୌଡ଼ିଲେ ଡି ପି.ଆଇ.ଙ୍କ ଘରକୁ । ସମ୍ଭବତଃ ସେ ସେଠି ଥିବେ ।

ଟୋକା ଏମ୍. ଏଲ.ଏ. ଦଳେ ଡ଼ି.ପି.ଆଇ. ଙ୍କ ଘରେ ପହଞ୍ଚି ଶୁଣିଲେ ଅମରେଶ ସେଠି ଅଛି । ସଙ୍ଗେ ସଙ୍ଗେ ଭିତରକୁ ଖବର ପଠାଗଲା ଦିଲ୍ଲୀରୁ ପ୍ରଧାନମନ୍ତ୍ରୀ ଅମରେଶଙ୍କୁ ଡକାଇଛନ୍ତି କଥାବାର୍ତ୍ତା କରିବାପାଇଁ । ଅମରେଶ ତରତର ହୋଇ ଖାଇଦେଇ ବାହାରି ଆସିଲା । ତା'ପଛରେ ରାଧାମଣି ଦେବୀ । ଅମରେଶଙ୍କୁ ଘେରିଯାଇ ସେମାନେ କହିଲେ, "ତୋତେ ଖୋଜି ଖୋଜି ନୟାନ୍ତ ହୋଇଗଲୁଣି । ତୁ ଆସି ଏଠି ? ଝିଅାଟିଆ ସରିଗଲାଣି ତ ? ଚାଲ ଏଥର, ଆଉ ଡେରି କାହିଁକି ?

ଗଲାବେଳେ ରାଧାମଣିଦେବୀଙ୍କୁ ଅମରେଶ କହିଦେଇଗଲା, "ହେଉ ବୋଉ ! ମୁଁ ଯାଉଛି । ବାପା ଆସିଲେ କହିବୁନି ମୁଁ ଆସିଥିଲି ବୋଲି ।

ସାଙ୍ଗମାନେ କହୁଥାନ୍ତି ହେଉ ଥା, 'ବାପାଙ୍କୁ ଲୁଚି ଲୁଚି କେତେଦିନ ରହିବୁ ଦେଖିବାନି ? ବାପାତ ଡ଼ି.ପି.ଆଇ, ତୁ ତ ମନ୍ତ୍ରୀ ହେବୁ; କେମିତି ବାପ ପୁଅ ଲୁଚକାଳି ଖେଳିବ ଆମେ ଦେଖିବୁନି !

"ଫେରେ ସେଇ ମନ୍ତ୍ରୀକଥା ଉଠୁଛି କାହିଁକି ? ମୁଁ ପରା ବାରମ୍ବାର ମନାକଲି । ମୁଁ ମନ୍ତ୍ରୀ ହେଲେ ତୁମର ସବୁ କ'ଣ ଲାଭ ହେବ କହିଲ ? ମୁଁ

ମନ୍ତ୍ରୀ ହୁଏ ବା ନହୁଏ ତୁମମାନଙ୍କୁ ନଦ ନାହିଁ । କଥାରେ ଅଛି ଯେ 'ଯାହା ବାହା ତାର ମନନାହିଁ, ସାହିପଡ଼ଶାକୁ ନଦ ନାହିଁ ।'

× × ×

ସନ୍ଧ୍ୟାବେଳେ ପାଟନା ରେଡ଼ିଓରୁ ମନ୍ତ୍ରୀ ତାଲିକା ପ୍ରଚାରିତ ହୋଇଗଲା । ମୁଖ୍ୟମନ୍ତ୍ରୀ ହରନାରାୟଣ ସିଂହଙ୍କ କେବିନେଟରେ ମୁଖ୍ୟମନ୍ତ୍ରୀଙ୍କ ତଳକୁ ସର୍ବପ୍ରଥମ ସ୍ଥାନ ଦିଆଗଲା ଅମରେଶଙ୍କୁ । ତା' ତଳକୁ ଅନ୍ୟମାନଙ୍କ ସ୍ଥାନ । ମନ୍ତ୍ରୀ, ରାଷ୍ଟ୍ରମନ୍ତ୍ରୀ, ଉପମନ୍ତ୍ରୀ ମିଶି ହେଲେ ଅଠେଇଶ, କେବିନେଟ୍ ମନ୍ତ୍ରୀ ଏଗାର ଜଣ ମୁଖ୍ୟମନ୍ତ୍ରୀଙ୍କୁ ମିଶାଇ । କେବିନେଟ୍ ମନ୍ତ୍ରୀତାଲିକାରେ ଅମରେଶ ନାଁ ମୁଖ୍ୟମନ୍ତ୍ରୀଙ୍କ ଠିକ୍ ତଳକୁ । ଅମରେଶଙ୍କୁ ଦାୟିତ୍ୱ ଦିଆଗଲା ଶିକ୍ଷା ଓ ରାଜସ୍ୱ ବିଭାଗ ।

ପାଟନା ରେଡ଼ିଓରୁ ମନ୍ତ୍ରୀଙ୍କ ତାଲିକା ଶୁଣୁଥିଲେ ବିପିନବାବୁ । ସେଦିନ ସେ ମନ୍ତ୍ରୀ ତାଲିକା ଶୁଣିବା ପାଇଁ ସକାଳ ସକାଳ ଅଫିସରୁ କ୍ୱାଟରକୁ ଫେରି-ଆସିଥିଲେ । ଯେତେବେଳେ ଶୁଣିଲେ ଅମରେଶ ଉଚ୍ଚପାହ୍ୟା କେବିନେଟ୍ ମନ୍ତ୍ରୀଭାବରେ ବଛାଯାଇଛି, ତାଙ୍କ ମନ ଆନନ୍ଦରେ କୁଣ୍ଢେମୋଟ । ସେ ରେଡ଼ିଓ ଶୁଣୁ ଶୁଣୁ ଘରଭିତରକୁ ଦୌଡ଼ଯାଇ ରାଧାମଣୀଦେବୀଙ୍କୁ ଡ଼ାକି କହିଲେ, "ଶୁଣୁଛ, ଶୁଣୁଛ, ରାଧାମଣୀ ! ଆମ ଅମରେଶ କେମିତି କେବିନେଟ୍ ପାହ୍ୟାରେ ଜଣେ ମନ୍ତ୍ରୀପଦ ପାଇଲା । କେବିନେଟ୍‌ରେ ତା ସ୍ଥାନ ଖୁବ୍ ଉପରେ, ମୁଖ୍ୟମନ୍ତ୍ରୀଙ୍କ ତଳକୁ । ଯାହା କହ ରାଧାମଣୀ ! ଅମରେଶ ପୁଅଭଳି ପୁଅ ଖଣ୍ଡେ । ଏତେଦିନେ ମୋ ସମ୍ମାନ ସେ ରଖିଲା ଜାଣ । ମୁଁ ଜାଣିଥିଲି ରାଧାମଣୀ, ସେ ଦିନେ ମୋ ସମ୍ମାନକୁ ଏମିତି ଉଚ୍ଚରେ ଟେକି ରଖିପାରିବ ।

'ଆଃ, ହାଃ, ତୁମେ ଏତେଦିନଯାଏ କୁଆଡ଼େ ଥିଲ ଯେ ! ଆଜି ପୁଅ ମନ୍ତ୍ରୀ ହେଲାବୋଲି ମୋ ପୁଅ, ମୋ ପୁଅ ବୋଲି ଧାଇଁ ଆସୁଛ ? ବାରବର୍ଷ ହେଲା ପୁଅକୁ ତ ଭୁଲିଯାଇଥିଲ । ତୁମର ଗୋଟିଏ ବୋଲି ପୁଅ, ସେ ବଞ୍ଚିଛି କି ନାହିଁ ସେ ଖିଆଲ କେବେ ଦିନକ ପାଇଁ ମନକୁ ଅଣିଥିଲ ? ଆଜି ପୁଅ ମନ୍ତ୍ରୀ ହେଲାବୋଲି ଦୌଡ଼ିଆସୁଛ ?

ରାଧାମଣୀଦେବୀଙ୍କ ଏଇ କଥା କେଇପଦ ତୀରଭଳି ଭେଦିକଲା ବିପିନବାବୁଙ୍କ କଲିଜାରେ । ଉଜ୍ଜ୍ୱଳ ହୋଇ ଆସୁଥିବା ମୁହଁ ତାଙ୍କର ଏହି କଥା କେଇ

ପଦ ର ବିମର୍ଷ ହୋଇଗଲେ । ସତେ ତ, ଗତ ବାରବର୍ଷ ଧରି ସେ ନିଜ ପୁଅକୁ ପିଅ ମର୍ଯ୍ୟାଦା ତ ଦେଇ ନାହାନ୍ତି । ପ୍ରକୃତରେ କେଡ଼େ ଅବିବେକୀ ସେ । ଅମରେଶ-ଭଳି ଗୁଣବନ୍ତ ପୁଅ ପ୍ରତି ସେ କମ୍ ଅବିଚାର କରିନାହାନ୍ତି । ବିପିନବାବୁଙ୍କ ଆଖି ଦୁଃଖରେ ଜକେଇ ହୋଇ ଆସିଲା ।

ରାଜଭବନରେ ମନ୍ତ୍ରୀମାନଙ୍କ ଶପଥ ନେବା ଉତ୍ସବରେ ବିପିନବାବୁ ଓ ରାଧାମଣି ଦେବୀ ନିମନ୍ତ୍ରିତ ହୋଇ ଯାଇଥାନ୍ତି । ପୁଅ ଯେତେବେଳେ ଶପଥ ନେବାପାଇଁ ଉଠିଆସିଲା, ବିପିନବାବୁଙ୍କ ଆଖି ଛଳ ଛଳ ହୋଇ-ଆସିଲା । ଏହାକୁ ଲକ୍ଷ୍ୟ କରୁଥିଲେ ରାଧାମଣୀ ଦେବୀ । ଗୋଟିଏ ବୋଲି ପୁଅ, ପୁଅ ପୁଣି ଏତେ ଗୁଣବନ୍ତ, ତା ପ୍ରତି ତା' ବାପା କି ଅନ୍ୟାୟ କରି ନାହାନ୍ତି ଏତେ ! କୌଣସି ବାପ ଯେତେ ନିଷ୍ଠୁର ହୃଦୟ ହେଲେ ବି ପୁଅ ପ୍ରତି କ'ଣ କେବେ ଏତେ ଅବିଚାର କରିପାରେ ? ରାଧାମଣୀ ଦେବୀଙ୍କ ଆଖି ମଧ୍ୟ ଛଳେଇ ଆସିଲା ।

"ଶପଥ ଉତ୍ସବ ପରେ ସରକାରୀ ଗାଡ଼ିରେ ଅମରେଶ ଚାଲିଗଲା ସେକ୍ରେଟେରିଏଟ୍ । ସେଠାରେ ତା' ବିଭାଗର ଅଫିସରମାନେ ତାକୁ ଅପେକ୍ଷା କରିଥିବେ ଆଲୋଚନା ପାଇଁ । ମୁଖ୍ୟମନ୍ତ୍ରୀଙ୍କ ଗାଡ଼ିରେ କେତେଜଣ ମୁରବି ଏମ୍.ଏଲ୍.ଏ. ଚାଲିଲେ ସେକ୍ରେଟେରିଏଟ୍ । ବାଟରେ ଯାଉଁ ଯାଉଁ କଥା ପଡ଼ିଲା ଅମରେଶର ବିଭାଗ ନେଇ । ଜଣେ ମୁରବି ଏମ୍.ଏଲ୍.ଏ. କହିଲେ, "ଅମରେଶ-ବାବୁଙ୍କୁ ଶିକ୍ଷା ବିଭାଗ ଦେଇ ଭଲ ହେଲାନି । ତାଙ୍କ ବାପା ଯେତେବେଳେ ସେହି ବିଭାଗରେ ଡ଼ି.ପି.ଆଇ: ପୁଅ ସେହି ବିଭାଗରେ ମନ୍ତ୍ରୀ ହେଲେ ଶାସନ କାର୍ଯ୍ୟରେ ନିଶ୍ଚୟ କିଛି ନା କିଛି ବାଧା ଉପୁଜିବ ।"

"ଆପଣ ଜାଣିନାହାନ୍ତି ମୁରବୀଜୀ ! ଅମରେଶ ବାବୁଙ୍କୁ ଶିକ୍ଷାବିଭାଗ ଦିଆଯିବା କଥା ମୁଁ କରିନି । ଦିଲ୍ଲୀରୁ ପ୍ରଧାନମନ୍ତ୍ରୀ ନିଜେ କହିଛନ୍ତି, ଅମରେଶ ବାବୁଙ୍କୁ ଶିକ୍ଷାବିଭାଗ ଦେବାପାଇଁ । ଅମରେଶବାବୁ ଶିକ୍ଷାବିଭାଗରେ ଥିଲେ । ଆମ ରାଜ୍ୟର ଶିକ୍ଷା ସଂପର୍କରେ ତାଙ୍କର ନିଶ୍ଚୟ କିଛି ଗୋଟେ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣ ଥିବ । ସେଥିପାଇଁ ସେହି ବିଭାଗ ତାଙ୍କୁ ଦିଆଗଲା ।" ମୁଖ୍ୟମନ୍ତ୍ରୀ କହିଲେ ।

"ତା ଯଦି ହୁଏ ତେବେ ତାଙ୍କ ବାପାଙ୍କୁ ଡ଼ି ପି ଆଇ ପଦରୁ ଅନ୍ୟତ୍ର ବଦଳି କରାଇବାକୁ ହେବ ।

"ସେ କଥା ଅବଶ୍ୟ ମୁଁ ଚିନ୍ତା କରୁଛି । ତେବେ ସେ ଡି.ପି.ଆଇ. ପଦକୁ ଆସି ମୋଟେ ତିନି ଚାରିମାସ ହେଲା ଡି.ପି.ଆଇ. ପଦକୁ ଆସିଛନ୍ତି । ହଠାତ୍ ତାଙ୍କୁ ସେଠୁ ବଦଳି କରିଦେଲେ ସେ ମନ କଷ୍ଟ କରିବେ । ତାଙ୍କର ଚାକିରିକାଳ ଆଉ ମାତ୍ର ବର୍ଷଟାଏ ଅଛି । ତା' ଭିତରେ ପୁଣି ତାଙ୍କୁ ବଦଳି କଲେ ତାଙ୍କପ୍ରତି ଏକ ଅନ୍ୟାୟ ହେବ । ମୁଁ ଭାବୁଛି ଅମରେଶବାବୁ ଭାରି ଖାଡ଼ା ଲୋକ । ତାଙ୍କ ବାପା ବି ସେହିଭଳି ଖାଡ଼ା ଲୋକ । ଶାସନ କାର୍ଯ୍ୟରେ କିଛି ଅସୁବିଧା ହେବନି ବୋଲି ଭାବୁଛି । ଅନାଉଁ, ଅନାଉଁ ବର୍ଷଟାଏ ଚାଲିଯିବ । ଯଦି ସେ ଅସୁବିଧା ହୁଏ ତେବେ ଦେଖିବା ।"

ଶପଥ ନେବା ପରେ ଅମରେଶ ଶିକ୍ଷାମନ୍ତ୍ରୀଙ୍କ କ୍ୱାର୍ଟରରେ ରହିବାପାଇଁ ଚାଲିଗଲା । ତା ପୂର୍ବରୁ ତାଙ୍କ ସ୍ତ୍ରୀ ଓ ପିଲାମାନେ ପାଟନାକୁ ଚାଲିଆସିଥିଲେ । ଅମରେଶ ଗୋବିନ୍ଦପୁରରୁ ଆସିଲାବେଳେ ଗୋବିନ୍ଦପୁର ଗ୍ରାମଦାନ ସଂସ୍ଥାର ଦାୟିତ୍ୱ ବିଭିନ୍ନ ଲୋକଙ୍କ ଉପରେ ଦେଇ ଏହି ସଂସ୍ଥାକୁ ସେ ଯେମିତି ଚଳାଉ-ଥିଲା, ସେମିତି ଚଳାଇବାପାଇଁ ଉପଦେଶ ଦେବାକୁ ଭୁଲିଲା ନାହିଁ । କେତେବେଳେ ଯଦି କିଛି ଅସୁବିଧା ହୁଏ, ତେବେ ସଙ୍ଗେ ସଙ୍ଗେ ତାଙ୍କ ପରାମର୍ଶ ନେବାକୁ ଯେମିତି ନ ଭୁଲନ୍ତି, ତାଗିଦ୍ କରିଦେଇ ଆସିଲା ।

( ଏଗାର )

କେନ୍ଦ୍ରରୁ ଯେତେ ପ୍ରକାର ସାହାଯ୍ୟ ରାଜ୍ୟପାଇଁ ଆସୁଛି, ସେହି ସାହାଯ୍ୟର ମୋଟା ଭାଗ ଯାଉଛି ମନ୍ତ୍ରୀ ଓ ମୁଖିଆ ମୁଖିଆ ଏମ୍.ଏଲ୍.ଏ.ଙ୍କ ନିର୍ବାଚନ-ମଣ୍ଡଳୀକୁ । ନିଜ ନିଜ ନିର୍ବାଚନମଣ୍ଡଳୀରେ କେମିତି ଅଧିକ ସ୍କୁଲ ବସିବ, ରାସ୍ତା ହେବ, କୂଅ ଖୋଳାଯିବ, ମାଛ ଚାଷ ହେବ, କଲକାରଖାନା ବସିବ ସେଥିପାଇଁ ସମସ୍ତଙ୍କ ଭାରି ଉଚ୍ଚର । ଯେଉଁ ନିର୍ବାଚନ ମଣ୍ଡଳୀର ଏମ୍. ଏଲ୍. ଏ. ମାନେ ନୂଆ, ପ୍ରତିପତ୍ତିଶାଳୀ ନୁହନ୍ତି ସେମାନଙ୍କୁ କେହି ପଚାରୁ ନାହାନ୍ତି । ସେମାନଙ୍କ ନିର୍ବାଚନ ମଣ୍ଡଳୀର ଯେଉଁ ଦୂରବସ୍ଥା, ସେହି ଦୂରବସ୍ଥା । ତେଲିଆ ମୁଣ୍ଡରେ ତେଲ ଭଳି, ଯେଉଁ ନିର୍ବାଚନମଣ୍ଡଳୀରେ ଆଗରୁ ଅଧିକ ଖର୍ଚ୍ଚ ହୋଇ ଆସିଛି ଏଥର ବି ସେହିଠାରେ ଖର୍ଚ୍ଚ ଚାଲିଛି । ଯେଉଁଠି କିଛି ହେଉନାହିଁ, କେହି ଦେଖିବାକୁ ନାହାନ୍ତି ସେଠି ।

ଏହି ଯେଉଁ ଟଙ୍କା ବିଭିନ୍ନ ନିର୍ବାଚନ ମଣ୍ଡଳୀକୁ ଯାଉଛି ସେଥିରୁ କେତେ ଯେ ଅଯଥାରେ ଚାଲିଯାଉଛି ତା'ର ଇୟତ୍ତା ନାହିଁ । ନିର୍ବାଚନ ମଣ୍ଡଳୀର ଥୋଡ଼େ ଲୋକ ଅନାଇ ବସିଛନ୍ତି କେମିତି ଟଙ୍କା ଆସିବ । ସେମାନେ ସେଥିରୁ କେମିତି କିଛି କିଛି ପାଇବେ । ସେମାନଙ୍କୁ ଖୁସିକରି ନ

ରଖିଲେ ପୁଣି ଆସନ୍ତା ନିର୍ବାଚନ ଅଛି । ତେଣୁ ଏହି ଭୟରେ ଯିଏ ପାରିଲେ ଯିଏ ଯେତିକ ଅଧିକ ନିଜ ନିର୍ବାଚନ ମଣ୍ଡଳୀକୁ ବୋହିଲେ ।

ଯେଉଁ ମାନଙ୍କର ପାରଲିବାଲ ଏମ୍.ଏଲ୍.ଏ. ନାହାନ୍ତି, ସେମାନେ ଶୁଖିଲାରେ ପଡିରହିଲେ । ସେମାନଙ୍କ କଥା କେହି ପଚାରିବାକୁ ନାହିଁ । ଟଙ୍କା କେଉଁବାଟେ ଆସୁଛି କେଉଁ ବାଟେ ଯାଉଛି ସେସବୁ ଅଞ୍ଚଳର ଏମ୍.ଏଲ୍.ଏ. ମାନେ ଜାଣି ପାରୁନାହାନ୍ତି । ମନ୍ତ୍ରୀମାନଙ୍କର ଯଦି ଦୟା ହେଲା କୁକୁରକୁ ଗୋଟି ଖଣ୍ଡେ ଫୋପାଡ଼ିଲା ଭଳି କିଛି କିଛି ସାହାଯ୍ୟ ସେଥିରୁ ନିର୍ବାଚନମଣ୍ଡଳକୁ ଫୋପାଡ଼ ଦେଲେ, ନଚେତ୍ ନାହିଁ ।

ଅମରେଶ ମନ୍ତ୍ରୀହେବା ଏତେ ଦିନ ହୋଇଗଲାଣି । ଏହା ଭିତରେ କେନ୍ଦ୍ରରୁ ଆସିଥିବା ସାହାଯ୍ୟ କେତେ ନିର୍ବାଚନମଣ୍ଡଳୀକୁ ବଣ୍ଟାଗଲେଣି । ଏହି ବଣ୍ଟାବଣ୍ଟି ପାଇଁ ମନ୍ତ୍ରୀ, ଏମ.ଏଲ.ଏ.ମାନଙ୍କ ଭିତରେ କେତେ କଳି କଜିଆ, କେତେ ଟଣା ଓଟରା, କେତେ ମାନ ମନାନ୍ତର । ମୁଖ୍ୟମନ୍ତ୍ରୀ କେତେକଙ୍କୁ ପାର୍ଟି ମିଟିଂରେ ବୁଝାଇ ବୁଝାଇ ନୟାନ୍ତ ହୋଇଗଲେଣି । ବିଭିନ୍ନ ନିର୍ବାଚନ-ମଣ୍ଡଳରେ ଉନ୍ନୟନ କାମ ପାଇଁ ଭିନ୍ନ ଭିନ୍ନ ବରାଦ ।

ବଡ଼ ବିଚିତ୍ର, ଅମରେଶର ନିର୍ବାଚନମଣ୍ଡଳୀ ପାଇଁ କିଛି ବରାଦ ନାହିଁ । କେନ୍ଦ୍ରରୁ ଆସିଥିବା ସାହାଯ୍ୟ କେମିତି ତା ନିର୍ବାଚନମଣ୍ଡଳୀକୁ ଯିବ, ସେଥିପାଇଁ ତା'ର କିଛି ଉଦ୍‌ବେଗ ନାହିଁ କି ଅନୁରୋଧ ନାହିଁ । ଯେମିତିକି ସେ ତା' ନିର୍ବାଚନମଣ୍ଡଳୀ କଥା ମୋଟେ ଭାବୁନି ।

ଅମରେଶର ଏଭଳି ମନୋବୃତ୍ତି ଦେଖି ମୁଖ୍ୟମନ୍ତ୍ରୀ ତାଟଙ୍ଗା । ସବୁ ମନ୍ତ୍ରୀ ନିର୍ବାଚନମଣ୍ଡଳୀକୁ ବିଭିନ୍ନ କାର୍ଯ୍ୟ ପାଇଁ ଭିନ୍ନ ଭିନ୍ନ ବରାଦରେ ଟଙ୍କା ବୁହା ଚାଲିଥିଲାବେଳେ ଅମରେଶ ବାବୁଙ୍କ ନିର୍ବାଚନମଣ୍ଡଳୀ ପାଇଁ କିଛି ବି ଯାଇନି । ମୁଖ୍ୟମନ୍ତ୍ରୀଙ୍କୁ ବଡ଼ ଅଡ଼ୁଆ ଲାଗୁଥାଏ । ଅମରେଶବାବୁ କିଛି ସାଧାରଣ ମନ୍ତ୍ରୀ ନୁହନ୍ତି, ତାଙ୍କ ତଳକୁ ସବୁ ମନ୍ତ୍ରୀଙ୍କ ଉପରେ ସିଏ । ନିଜ ନିର୍ବାଚନମଣ୍ଡଳୀକୁ ସେ ନିଜେ କେତେ ବୋହି ନେଲେଣି, ଅଥଚ ସ୍ୱାଙ୍କ ନିର୍ବାଚନମଣ୍ଡଳୀ ପାଇଁ କିଛି ଯିବାକୁ ନାହିଁ । ସେଆଡ଼କୁ ମଧ୍ୟ ଅମରେଶବାବୁଙ୍କ ଖିଆଲ ନାହିଁ ।

ଧନେ ବଡ଼ ବ୍ୟସ୍ତ ହୋଇ ମୁଖ୍ୟମନ୍ତ୍ରୀ ଅମରେଶଙ୍କୁ ପଚାରିଲେ "ଦେଖନ୍ତୁ ଅମରେଶ ବାବୁ, କେନ୍ଦ୍ରରୁ ଯେଉଁ ସବୁ ସାହାଯ୍ୟ ଆସୁଛି ସେହି ସାହାଯ୍ୟ କେମିତି ଭିନ୍ନ ଭିନ୍ନ ନିର୍ବାଚନମଣ୍ଡଳୀକୁ ଦିବ ସେଥିପାଇଁ ଲୋକପ୍ରତିନିଧିମାନଙ୍କ ଭିତରେ ଟଣା ଓଟରା ଲଗିଥିଲାବେଳେ ଆପଣ ଯେ ଚୁପ୍‌ହୋଇ ବସିଛନ୍ତି, ସେଇଆ ଦେଖି ମୁଁ ଆଶ୍ଚର୍ଯ୍ୟ ହେଉଛି । ଆପଣଙ୍କ ନିର୍ବାଚନମଣ୍ଡଳୀ ପାଇଁ କିଛି ବ୍ୟସ୍ତ ବରାଦ ଯୋଜନା କ'ଣ ନାହିଁ ଆପଣଙ୍କର ?

ହସିଲ ଅମରେଶ, "ଆଜ୍ଞା ସେଇଠି ଆପଣଙ୍କ ମତ ଓ ମୋ ମତ ଭିତରେ ପାର୍ଥକ୍ୟ । ଆପଣ ଯେମିତି ଭାବରେ ଉପରୁ ଟଙ୍କା ନେଇ ଗ୍ରାମବାସୀଙ୍କ ଉପରେ ଅଜାଡି ଦେଉଛନ୍ତି, ସେମାନେ ତା'ର ସଦ୍‌ବ୍ୟବହାର କରୁଛନ୍ତି କି କ'ଣ ଦେଖିଛନ୍ତି ? ଓଲଟି ସେ ଟଙ୍କାରୁ କିଛି ଏଆଡ଼େ ସେଆଡେ ଗଳିଯାଉଛି । ଆପଣ-ମାନେ ଜାଣି ମଧ୍ୟ କିଛି କରିପାରୁ ନାହାନ୍ତି ।

"ଲୋକଙ୍କ ଦୃଷ୍ଟି ସବୁବେଳେ ସରକାରୀ ସାହାଯ୍ୟ ଉପରେ । ଏବର୍ଷ କେତେ ଆସୁଛି କେଉଁ କେଉଁ ବାବଦରେ, ଆମ ଭାଗ ସେଥିରୁ କେତେ ପଡ଼ିବ, ତାରି ଉପରେ ଭିଡ଼ା ଓଟରା । ଏଇ କଥା ଆରମ୍ଭରୁ ଲାଗି ଆସିଛି । ଅନ୍ୟଦଳ ସରକାର ଏଇଆ କରୁଥିଲେ, ଆପଣଙ୍କ ଦଳ ସରକାର ଠିକ୍ ସେଇଆ କରୁ-ଛନ୍ତି । ଟଙ୍କା ଆସୁଛି, ଯାଉଛି, ଗାଁମାନଙ୍କର ଉନ୍ନତି ହେବାକୁ ନାହିଁ ।

"ସ୍ୱାଧୀନତା ଦିନଠାରୁ ଗାଁମାନଙ୍କର ଯେଉଁ ଅବସ୍ଥା ଥିଲା, ବର୍ତ୍ତମାନ ବି ସେହି ଅବସ୍ଥାହିଁ ତ ଅଛି । କାଁ ଭାଁ କେତେ ଗାଁରେ ଯାହା କିଛି ଉନ୍ନତି ହୋଇଛି ସେ ପୁଣି କି ଉନ୍ନତି ? ଯେତେବେଳ ପର୍ଯ୍ୟନ୍ତ ଲୋକଙ୍କଆଡ଼ୁ ସ୍ୱତଃପ୍ରବୃତ୍ତ ହୋଇ ·ବରାଦ ନ ଆସିଛି, ଆମ ଗାଁରେ ଅମୁକେଇ ହେବ, ଆମର ସମୁକେଇ କରିବା କଥା ସେ ପର୍ଯ୍ୟନ୍ତ କିଛି ହୋଇ ପାରିବନାହିଁ । ଆପଣମାନେ ଉପରୁ ଯେତେ ଅର୍ଥ ବାଣ୍ଟିଲେ ମଧ୍ୟ ତାହା ଠିକ୍ ଠିକ୍ ବାଟରେ ନ ଯାଇ ଏଆଡ଼େ ସେଆଡ଼େ ଗଳିଯାଉଥିବ ।

"ମୋ ଅଞ୍ଚଳର କୌଣସି ଲୋକ ମୋତେ କୌଣସି ଉନ୍ନୟନ ପାଇଁ କିଛି କହିବେନି ? ସେମାନଙ୍କର ବିଶ୍ୱାସ ଜନ୍ମିଛି, ସେମାନଙ୍କ ନିଜ ହାତ, ସେମାନଙ୍କ ନିଜ ପରିଶ୍ରମ ସେମାନଙ୍କବଡ଼ ସାହାଯ୍ୟ, ସରକାରୀ ସାହାଯ୍ୟ ତା' ତୁଳନାରେ କିଛି ନୁହେଁ । ମୋ ଅଞ୍ଚଳର ଲୋକେ ଏହା ଜାଣନ୍ତି । ସେମାନେ ମୋତେ କେବେ କହିବେନି

ସରକାରୀ ସାହାଯ୍ୟ କଥା । ସେମାନେ ସେମାନଙ୍କର ସବୁ ଉନ୍ନୟନ କାର୍ଯ୍ୟ ନିଜ ପରିଶ୍ରମରେ କରୁଛନ୍ତି । ମୁଁ ମନ୍ତ୍ରୀ ହେଲା ପରେ ଯଦି ସରକାରୀ ସାହାଯ୍ୟ ନେଇ ସେମାନଙ୍କ ଉପରେ ଅଜାଡ଼ି ଦିଏ, ତେବେ ସେମାନେ ମୋତେ ଓଲଟି ଘୃଣା କରିବେ । ମୁଁ ସେମାନଙ୍କ ମନରେ ଯେଉଁ ଆତ୍ମବିଶ୍ୱାସ ଟିକକ ଆଣିପାରିଛି, ଯେ ସେମାନେ ନିଜ ପରିଶ୍ରମ ବଳରେ ସବୁକିଛି କରିପାରିବେ—ସେଇ ବିଶ୍ୱାସ ଟିକକ ନଷ୍ଟ ହୋଇଯିବ । ମୋ ଅଞ୍ଚଳ ପାଇଁ ଆପଣ ମୋଟେ ବ୍ୟସ୍ତ ହୁଅନ୍ତୁନି । ଅନ୍ୟ ବହୁ ଅଞ୍ଚଳ ଅଛି ଯେଉଁମାନଙ୍କର କିଛି ହୋଇନି । ଆପଣ ସେମାନଙ୍କୁ ସାହାଯ୍ୟ କରିବାକୁ ଆଗେଇ ଯାଆନ୍ତୁ ।

× × ×

"ବୁଝିଲ ରାଧାମଣୀ ! ଆଜି ମନ୍ତ୍ରୀ ଡ଼କାଇଛନ୍ତି ମୋତେ ତାଙ୍କ କୋଠିକୁ । ମୋ ସହିତ କେତେକ ବିଷୟ ଆଲୋଚନା ହେବ । ସେକ୍ରେଟେରୀ ମଧ୍ୟ ସେହି ଆଲୋଚନାକୁ ଆସିବେ । ଦେଶର ଶିକ୍ଷାନୀତି ନେଇ ଏକ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ହେବ ତାଙ୍କ କୋଠିରେ । ମୁଁ କେମିତି ସେହି ଆଲୋଚନାକୁ ଯିବି, ସେଇ ମୋର ଚିନ୍ତା ।

"ଅସୁବିଧା ତ କିଛି ନାହିଁ । ନିଜ ପୁଅ ତ ମନ୍ତ୍ରୀ । ଆଉ ଚିନ୍ତା କ'ଣ ପାଇଁ ? ରାଧାମଣୀ ଦେବୀ କହିଲେ ।"

ସାରାରାଜ୍ୟର ଶିକ୍ଷା ଦାୟିତ୍ୱ ବର୍ତ୍ତମାନ ପୁଅ ମୁଣ୍ଡରେ । ପିଲାଟା ତାକୁ କେମିତି ତୁଲାଇବ ସେଇ ମୋର ଚିନ୍ତା । ହେଇ, ରାଧାମଣୀ ! କାଲିପରି ଲାଗୁଛି, ତାକୁ କାଖେଇ କୋଳେଇ ମଣିଷ କରିଥିଲି । ଏତେ ବଡ଼ ରାଜ୍ୟର ଶିକ୍ଷାକଥା ମୁଁ ଚିନ୍ତାକରି ପାରୁନି, ଅମରେଶ ଭଳି ପିଲାଟା କଣ ଚିନ୍ତା କରି ଏ ରାଜ୍ୟର ଶିକ୍ଷା ନୀତିକୁ ଠିକ୍ ବାଟରେ ଚଳାଇ ପାରିବ ?

"ତୁମେ ଅମରେଶକୁ ଏତେ ସାଧାରଣ ବୋଲି କାହିଁକି ଭାବୁଛ ଯେ ? ତାହାର ଯେଉଁଭଳି ଆତ୍ମବିଶ୍ୱାସ, ସେଭଳି ଆତ୍ମବିଶ୍ୱାସ ଏ ଖଣ୍ଡମଣ୍ଡଳରେ ଆଉ କାହାର ନାହିଁ । ସେ ଗୋବିନ୍ଦପୁର ଗାଁରେ ଯାହା କରିଆସିଛି, ଦେଖିଆସ; ଦେଖିଲେ ତୁମର ଆତ୍ମବିଶ୍ୱାସ ବି ବଢ଼ିଯିବ । ସେ ପରା ଶିକ୍ଷାବିଭାଗରେ ଥିଲା ମୂଳରୁ । ବିଲାତ ଆମେରିକା ସବୁଆଡ଼ୁ ବୁଲି ଆସିଛି । ଦେଶର ଶିକ୍ଷାନୀତି ସମ୍ପର୍କରେ ତାକୁ କ'ଣ କିଛି ଅଜଣା ଅଛି । ଗଲା ବାର ବର୍ଷ ଭିତରେ ବାପ ପୁଅ ତ ହନେ କଥାବାର୍ତ୍ତା ହୋଇନ, ଜାଣିବ କେମିତି ପୁଅର ରାଜ୍ୟ ଶିକ୍ଷା ସଂପର୍କରେ ଧାରଣା କ'ଣ ?

ଆମ ଶିକ୍ଷାମଣ୍ଡଳରେ କେଉଁଠି ଦୋଷ ଦୁର୍ବଳତା ଅଛି, ସେ ସବୁ ଭଲଭାବରେ ଜାଣିଛି । ତୁମେ ଯାଅ ତା' ସହିତ କଥାବାର୍ତ୍ତା କର, ଜାଣିବ ତାର ଏଥିରେ ଦକ୍ଷତା କେତେ ? ମୁଁ ଯେତେବେଳେ ଗୋବର୍ଦ୍ଧନପୁରରେ ତା' ପାଖରେ ଥିଲି, ଆଖପାଖ ଗାଁର କେତେ ଲୋକ ତା ସହିତ କେତେ ପରାମର୍ଶ କରିବାକୁ ଆସନ୍ତି ମୁଁ ଦେଖିଚି ? ତୁମେ ଡ଼. ପି. ଆଇ: ହୋଇ ଦେଶର ଶିକ୍ଷାମଣ୍ଡଳକୁ ଯେତେ ଅନୁଧ୍ୟାନ କରିନ, ସେ ତୁମଠାରୁ ଢ଼େର ଅଧିକ ଅନୁଧ୍ୟାନ କରିଛି । ତୁମେ ଯାଅ, ପ୍ରଥମ ଦିନ କଥାବାର୍ତ୍ତାରେ ଜାଣିପାରିବ, ପୁଅର ଦେଶର ଶିକ୍ଷା ସମସ୍ୟା ଉପରେ କେମିତି ସ୍ପଷ୍ଟ ଧାରଣା । ସମସ୍ୟାକୁ ଯେ ଭଲଭାବରେ ଜାଣି-ପାରିଛି, ସମାସ୍ୟାର ସମାଧାନ ତା' ପକ୍ଷରେ ଅଧିକ କଷ୍ଟକର ହେବନି ।"

ଗାଡ଼ିରେ ଗଲାବେଳେ ବିପିନବାବୁ ଭାବୁଥାନ୍ତି "ବାରବର୍ଷ ପରେ ଆଜି ପୁଅ ସହିତ ମୁହାଁମୁହିଁ ହେବ । ପୁଅ ତ ପିଲାଟି ଦିନରୁ ମୋ ମୁହଁ ଉପରେ କେବେ କଥା କହିନି । ଯାହା ତାର କହିବାକୁ ଥାଏ ମା ଜରିଆରେ କହେ । ଆଜି ସେହି ପୁଅ ତାଙ୍କ ସହିତ କେମିତି କଥାବାର୍ତ୍ତା କରିବ ? ସେ ତ ବର୍ତ୍ତମାନ ମନ୍ତ୍ରୀ, ମୁଁ ତା ଅଧୀନରେ ଜଣେ କର୍ମଚାରୀ । ସେଠାରେ, ସେକ୍ରେଟେରୀ ବି ଥିବେ, ସେ ତାଙ୍କ ସହିତ କେମିତି ବ୍ୟବହାର ଦେଖାଇବ ସେଇଆ ଭାବି ବିପିନବାବୁ ଚିନ୍ତିତ ହୋଇ ପଡୁଥାନ୍ତି । ଶିକ୍ଷାମଣ୍ଡଳ ସଂପର୍କରେ ଆଲୋଚନା ବେଳେ ସେ ତାଙ୍କ ମତ ଠିକ୍‌ରୂପେ ଉପସ୍ଥାପିତ କରିପାରିବେ ତ ପୁଅ ସାମନାରେ ? କାଳେ ଯଦି କିଛି ଭୁଲଭଟକା ହୋଇଯାଏ, ବାପର କାର୍ଯ୍ୟଦକ୍ଷତା ସମ୍ବନ୍ଧରେ ପୁଅର କି ଖରାପଧାରଣା ନ ହେବ ସତେ ?

ଗାଡ଼ି ଯାଇ ମନ୍ତ୍ରୀଙ୍କ କ୍ୱାର୍ଟରର ପୋର୍ଟିକୋରେ ରହିଲା । ଡ଼.ପି.ଆଇ. ଫାଇଲ ଧରି ଗାଡ଼ିରୁ ଓହ୍ଲାଇଲେ । ଅଭ୍ୟର୍ଥନା କକ୍ଷରେ ଅପେକ୍ଷାକରି ଭିତରକୁ ଖବର ପଠାଇ ଦେଲେ ଡ଼. ପି. ଆଇ. ଆସିଲେ ବୋଲି ।

ସେକ୍ରେଟେରୀଙ୍କ ଗାଡ଼ିକୁ ସେହି ହତାରେ ଥିବା ଦେଖି ବିପିନବାବୁ ଜାଣିପାରିଲେ ସେକ୍ରେଟେରୀ ବି ଆସିଯାଇଛନ୍ତି ଓ ବର୍ତ୍ତମାନ ମନ୍ତ୍ରୀଙ୍କଠାରେ କିଛି ଗୋଟିଏ ଆଲୋଚନାରେ ଲାଗିଯାଇଛନ୍ତି । କିଛି ସମୟ ଅପେକ୍ଷା କରିବା ପରେ ମନ୍ତ୍ରୀଙ୍କଠାରୁ ପିଅନ ଆସି ଡ଼ାକିଲା ଭିତରକୁ ଯିବାପାଇଁ ।

ବିପିନବାବୁଙ୍କୁ ରୁମ୍ ଭିତରକୁ ପଶିବା ଦେଖି ଅମରେଶ ତା ଚେୟାର ଛାଡ଼ି ହଠାତ ଉଠିପଡ଼ିଲା । ମନ୍ତ୍ରୀଙ୍କୁ ଚେୟାର ଛାଡ଼ି ଉଠିପଡ଼ିବା ଦେଖି

ସେକ୍ରେଟେରୀ ମଧ୍ୟ ଚେୟାର ଛାଡ଼ି ଉଠିଥିଲେ । ଡ଼ି.ପି.ଆଇ. ସାମନା ଚେୟାରରେ ବସିଲା ପରେ ଅମରେଶ ତା' ଚେୟାରରେ ବସିଲା ଓ ସେକ୍ରେଟେରୀ ତାଙ୍କ ଚେୟାରରେ ବସିଲେ ।

ବାପାଙ୍କୁ ସାମନାରେ ବସିବା ଦେଖି ଅମରେଶ ଟିକେ ଗମ୍ଭୀର ହୋଇଗଲା । ସେ ମନେ ମନେ ଭାବୁଥାଏ, ଯେଉଁ ବାପା ତାଙ୍କୁ ଛୋଟିଟି ବେଳୁ ଏତେ ବଡ଼ ଯାଏ ନାନା ଶିକ୍ଷା ଦେଇ ବଢ଼ାଇ ଆସିଛନ୍ତି, ଆଜ ରାଜ୍ୟର ଶିକ୍ଷାନୀତି ନେଇ ସେ ତାଙ୍କୁ କଣ ଯେ ନିର୍ଦ୍ଦେଶ ଦେବ, ଭାବି ଠିକ୍ କରି ପାରିଲାନି । ତା ମୁଣ୍ଡ ଗୋଳମାଳ ହୋଇଗଲା । ବାପାଙ୍କର ତା ଠାରୁ ଅଭିଜ୍ଞତା କେତେ, ତାଙ୍କ ଆଗରେ ଠିଆହୋଇ ସେ କେବେ କଥାବାର୍ତ୍ତା କହିନି, ଆଜି ତାଙ୍କର ଶାସନରେ ଭୁଲ୍‌ଭଟକା ଦେଖାଇ ତାଙ୍କ କାର୍ଯ୍ୟର ସମାଲୋଚନା କରିବାକୁ ତା'ର ଜିଭ ଲେଉଟିବ କେମିତି ?

ଅମରେଶକୁ ଠିଆହୋଇ ରହିବାର ଦେଖି ବିପିନବାବୁ ହଡ଼ବଡ଼େଇ ଗଲେ । ସେ ବା ଯାହା ହଡ଼ବଡ଼େଇ ନଥାନ୍ତେ, ଏଣେ ସେକ୍ରେଟେରୀ ଉଠି ଠିଆ ହୋଇ ରହିବା ଦେଖି ସେ ବ୍ୟସ୍ତ ହୋଇ ପଡ଼ିଲେ । ସରକାରଙ୍କ ନିୟମ ଅନୁସାରେ ଡ଼ି.ପି.ଆଇ.ଙ୍କ ଉପରେ ହେଉଛନ୍ତି ସେକ୍ରେଟେରୀ । ଡ଼ି. ପି. ଆଇ.ଙ୍କୁ ଦେଖି ସେକ୍ରେଟେରୀ ଠିଆହେବା କଥା ନୁହେଁ ।

ଅମରେଶକୁ ସାମନାରେ ଦେଖି ବିପିନବାବୁ ଭାବୁଥାନ୍ତି, କାଲିକା ପିଲାଟା, ସେ କେବେ ନିଜେ ତାଙ୍କ ପାଖରେ ଠିଆହୋଇ କଥା ହୋଇନି, ଆଜ ସେ ତାଙ୍କୁ କ'ଣ ନିର୍ଦ୍ଦେଶ ଦେବ ଶାସନ ନେଇ ? ପୁଅ ଆଜ ତାଙ୍କ ବିଭାଗର ହର୍ତ୍ତାକର୍ତ୍ତା, ସେ ତା'ର ଅଧୀନରେ ଜଣେ କର୍ମଚାରୀ, ଭାବିଲାବେଳକୁ ବିପିନବାବୁଙ୍କ ମନରେ ସବୁକିଛି ଗୋଳମାଳ ହୋଇଯାଉଥାଏ । ସେ କ୍ଷଣକ ପାଇଁ ଭୁଲିଯାଇଥାନ୍ତି ସେ କେଉଁଠି ଓ କ'ଣ ପାଇଁ ଏଠାକୁ ଆସିଛନ୍ତି ।

ଅମରେଶ ଓ ବିପିନବାବୁଙ୍କୁ ଚୁପ୍ ଦେଖି ସେକ୍ରେଟେରୀ ଆରମ୍ଭ କଲେ, "ଦେଖନ୍ତୁ, ବିପିନବାବୁ । ଆମର ଶିକ୍ଷା ବଜେଟ୍‌କୁ ଆପଣ ଯେପରି ଭାବରେ ପ୍ରାଇମେରୀ, ସେକେଣ୍ଡେରୀ ଓ କଲେଜ ଶିକ୍ଷା ଭିତରେ ଭାଗ ଭାଗ କରିଛନ୍ତି, ସେଥିରେ ମୁଁ ରାଜିନୁହେଁ । ବର୍ତ୍ତମାନ ଆମ ରାଜ୍ୟର ଅବସ୍ଥା ଯାହା, ପ୍ରାଇମେରୀ ଶିକ୍ଷାପାଇଁ ଅଧିକ ଖରଚ ହେବା କଥା । ଆପଣ ତାହା ନକରି ସେକେଣ୍ଡେରୀ

ବାବଦରେ ଅଧିକ ଖରଚ ପାଇଁ ସୁପାରିଶ କରିବାକୁ ଆପଣ ଭୁଲି-ଯାଉଛନ୍ତି, ଗତବର୍ଷର ବଜେଟରେ ଆମେ ସେକେଣ୍ଡେରୀ ପାଇଁ ଅଧିକ ଅର୍ଥ ବ୍ୟବସ୍ଥା କରିଥିଲେ । ସେହି ଅର୍ଥ ଖରଚ ହୋଇ ନପାରି ବର୍ଷ ଶେଷକୁ ବଳିପଡିଲା ଫଳରେ ଯେ ଟଙ୍କାତକ ରାଜକୋଷକୁ ଫେରିଯିବା ଯୋଗୁଁ ଆମ ବିଭାଗରେ ଖରଚର ପରିମାଣ କମିଗଲା । ଏବର୍ଷ ସେମିତି ଭୁଲ ଯେମିତି ନହୁଏ, ସେଥିପାଇଁ ଆପଣଙ୍କ ପ୍ରସ୍ତାବକୁ ମୁଁ ବଦଳାଇବାକୁ ଚାହୁଁଛି ।''

ସେକେଣ୍ଡେରୀ ଶିକ୍ଷାର ଟଙ୍କା ଖରଚ ନ ହୋଇ ବଳିପଡ଼ିଲା, ଏଥିପାଇଁ ଡିରେକ୍ଟରେଟର ଦୋଷ ନୁହେଁ ମିଷ୍ଟର ଶ୍ରୀବାସ୍ତବ । ଆପଣଙ୍କ ବିଭାଗ ବର୍ଷର ଶେଷ ମାସରେ ଏତେଗଡ଼ାଏ ଟଙ୍କା ଦେଲେ ତାହା କେମିତି ଖରଚ ହୋଇପାରିବ, ସେ ଆଡ଼କୁ ଟିକିଏ ଦୃଷ୍ଟି ଦେଇଛନ୍ତି କି ?'' ସେକ୍ରେଟେରୀଙ୍କୁ ଓଲଟି ପଚାରିଲେ ବିପିନବାବୁ ।

''ଏମିତି କାହିଁକି ହେଉଛି ମିଷ୍ଟର ଶ୍ରୀବାସ୍ତବ ? ବର୍ଷସାରା ଟଙ୍କା ଯଦି ଶେଷ ମାସରେ ଖରଚ କରିବାକୁ ନିର୍ଦ୍ଦେଶ ଯାଏ, ତେବେ ତାହା ଖରଚ ହେବ କେମିତି ? ଆପଣମାନଙ୍କ ଏହି ନୀତି ମୋତେ ଭଲ ଲାଗେନି । ବଜେଟରେ ଯେଉଁ ଟଙ୍କା ଅଛି, ତାହା ଭାଗ ଭାଗ ହୋଇ ପ୍ରତି ତିନି ମାସରେ ଥରେ ଲେଖାଏଁ ଡ଼ିରେକ୍ଟରେଟକୁ ପଠା ନ ଯିବ କାହିଁକି ?'' ଅମରେଶ ପଚାରିଲା ।

ସେକ୍ରେଟେରୀ କହିଲେ, ''ଡିରେକ୍ଟର ତ ଜାଣିଛନ୍ତି, କେଉଁ ବିଭାଗ ପାଇଁ କେତେ ଟଙ୍କା ବଜେଟରେ ବରାଦ ହୋଇଛି । ସେ ସେକ୍ରେଟେରିଏଟ ଚିଠିକୁ ଅପେକ୍ଷା ନକରି ସେହି ଅନୁସାରେ ଖର୍ଚ୍ଚ ପାଇଁ ପ୍ରସ୍ତୁତ ହେବା ପାଇଁ ତଳ ଅଫିସକୁ ନିର୍ଦ୍ଦେଶ ଦେଇପାରି ଥାନ୍ତେ । ଆମ ଚିଠି ପହଞ୍ଚିଲା କ୍ଷଣି ସଙ୍ଗେ ସଙ୍ଗେ ଟଙ୍କା ଖରଚ ହୋଇପାରି ଥାନ୍ତା ।

''ଆପଣ ଅସମ୍ଭବ କଥା କହୁଛନ୍ତି ମିଷ୍ଟର ଶ୍ରୀବାସ୍ତବ । ଡ଼.ପି.ଆଇ କେଉଁ ହେଡ଼ରେ କେତେ ଖରଚ ହେବ ବୋଲି ଜାଣିଥିଲେ ହେଁ ଆପଣଙ୍କ ଦପ୍ତରରୁ ଚିଠି ନପାଇବା ପର୍ଯ୍ୟନ୍ତ ସେ କେମିତି ତଳ ଅଫିସକୁ ନିର୍ଦ୍ଦେଶ ଦେବେ ? ବଜେଟରେ ବିଭିନ୍ନ ବିଭାଗକୁ ଦେବାପାଇଁ ଯାହା ଧାର୍ଯ୍ୟ ହେଲା, ସେସବୁ ବର୍ଷର ଚାରୋଟି କିସ୍ତିରେ ଯିବା ଦରକାର । ସବୁ ଟଙ୍କା କାହିଁକି ଏକା ଥରକେ ବର୍ଷ ଶେଷବେଳକୁ ଯିବ ? ସେମାନଙ୍କୁ ଖର୍ଚ୍ଚ କରିବାକୁ ନିଶ୍ଚୟ ଅସୁବିଧା

ହେବ । ବର୍ଷ ସାରା ଖେଳାଇ ହୋଇ ଯାଉଥିଲେ ସେମାନଙ୍କୁ କିଛି ଅସୁବିଧା ହୁଅନ୍ତାନି । ସମ୍ଭବତଃ ଆପଣଙ୍କ ଅଫିସ ଠିକ୍ ଭାବରେ କାମ କରୁନି ? ଆପଣଙ୍କୁ ଆପଣଙ୍କ ବିଭାଗଟିକୁ ପ୍ରଥମତଃ ସଜାଡ଼ିବାକୁ ପଡ଼ିବ ମିଷ୍ଟର ଶ୍ରୀବାସ୍ତବ ।"

"ଆମ ବିଭାଗରେ ଖାଲି ଗୋଳମାଳ ରହିଯାଉଛି ସାର । ଫାଇନାନ୍ସ ବିଭାଗ ପାଇଁ ଏଥିରେ ମଧ୍ୟ ଗୋଳମାଳ ହେଉଛି ।"

"ସେଇଟା ଆପଣଙ୍କ ଦାୟିତ୍ୱ । ଫାଇନାନ୍ସ ବିଭାଗ ଠାରୁ ଠିକ ସମୟରେ କାଗଜପତ୍ର ଅଣାଅଣି ଆପଣଙ୍କ ବିଭାଗ କରିବା କଥା । ଆପଣମାନେ ଚେଷ୍ଟା କଲେ କିଛି ଅସୁବିଧା ହୁଅନ୍ତାନି । ମାର୍ଚ୍ଚ ମାସ ପର୍ଯ୍ୟନ୍ତ ଗଡ଼ାଇ ଗଡ଼ାଇ ନେବା ମୁଁ ଦେଖୁଛି ଆପଣମାନଙ୍କ ଏକ ବଦ୍‌ଭ୍ୟାସ । ତେଣୁ ବର୍ଷସାରା କିଛି କାମ ହେଉନି । ଫେବୃୟାରୀ, ମାର୍ଚ୍ଚ ମାସରେ ସାରାବର୍ଷର କାମ ହେଉଛି । ଏହାକୁ କ'ଣ କୁହାଯିବ ଶାସନ ? ମୁଁ ଆପଣଙ୍କ କାମରେ ମୋଟେ ସନ୍ତୁଷ୍ଟ ନୁହେଁ ମିଷ୍ଟର ଶ୍ରୀବାସ୍ତବ ।"

ଡ଼ି.ପି.ଆଇଙ୍କ ଆଡ଼କୁ ଅନାଇ ଅମରେଶ କହିଲା, "ତା ଛଡ଼ା ବାପା, ଆପଣ ବାରମ୍ବାର ସେକ୍ରେଟେରୀଙ୍କୁ ଫୋନ କରୁ ନାହାନ୍ତି ତାଙ୍କ ଅଫିସ ଶଠି ଦେବାରେ ଡେରି କରୁଛନ୍ତି କାହିଁକି ? ଆପଣ ମଝିରେ ମଝିରେ ଘୁପ ପକାଉ ଥିଲେ ଏପରି ହେଉ ନ ଥାନ୍ତା । ଆପଣ ଯଦି ଭାବିବେ ସେକ୍ରେଟେରୀ ତ ପଠାଉ ନାହାନ୍ତି, ମୋ ମୁଣ୍ଡ କାହିଁକି ବଥାଇବ, ତେବେ କିଛି ହୋଇ ପାରିବନି ଏଠି । ଆପଣମାନେ ଯିଏ ଯେଉଁଠି ରହିଲେ, ଭାବିନବ ଯଦି ସେତକ ଦାୟିତ୍ୱ ଆପଣଙ୍କର, ତା ଛଡ଼ା ପାଦେ ଏପାଖକୁ କିମ୍ବା ସେପାଖକୁ ଯିବେ ନାହିଁ, ତାହେଲେ ଏହି ଶାସନ ଚଳିବ ନାହିଁ । ଅମକେଇ କାମଟା ହେଲାନି ବୋଲି ଦୋଷ ସମକେଇର, ମୋ କାମ ମୁଁ କରିଦେଇ ବସିଛି, ସେ ଯୁକ୍ତି ମଧ୍ୟ ଠିକ୍ ନୁହେଁ । ସବୁ କଥାରେ ନିଜ ଉପରୁ ଦାୟିତ୍ୱ ଖସାଇଦେବା ପ୍ରବୃତ୍ତି ଭଲ ନୁହେଁ ବାପା । ଏଥିରେ ଆମ ଦେଶ ଶାସନ ଚଳିପାରିବନି । ଆମକୁ ଅମକେଇ ଦାୟିତ୍ୱଟି ଦିଆ- ଯାଇଛି, ତାକୁ ଲାଗି ପାଉ ଆମକୁ କେମିତି କରିବାକୁ ପଡ଼ିବ, ସେଇଟା ସମସ୍ତେ ଦେଖିବା ଉଚିତ ? ନିଜ ଉପରକୁ ଦାୟିତ୍ୱ ନେବା ମନୋଭାବ ଛାଡ଼ି ନିଜ ଉପରୁ ଦାୟିତ୍ୱ ଖସାଇବା ମନୋଭାବ ଧରିଲେ ଆମ ଦେଶ ଶାସନ ମୋଟେ ଚଳି ପାରିବନି ।"

× × ×

"ସାର୍, ପାଟନା ସାଏନ୍ସ କଲେଜରୁ ଦଳେ ଗବେଷଣା ଛାତ୍ର ଓ ଅଧ୍ୟାପକ ଆସିଛନ୍ତି ଆପଣଙ୍କୁ ସାକ୍ଷାତ କରିବା ପାଇଁ ?" ଅମରେଶର ଅଫିସ କକ୍ଷ ଭିତରକୁ ପଶି ଆସି ପ୍ରାଇଭେଟ ସେକ୍ରେଟେରୀ କହିଲେ ।

"ମୋତେ ଦେଖା କରିବାକୁ ଆସିଛନ୍ତି ?"

"ହଁ ଆଜ୍ଞା ?"

"ହେଉ ସେମାନଙ୍କୁ ଅପେକ୍ଷା କରିବାକୁ କୁହ । ମୁଁ କିଛି ସମୟ ପରେ ସେମାନଙ୍କୁ ଡକାଇବି ?" ଏତିକି କହି ଫାଇଲ୍ ଉପରେ ଦୃଷ୍ଟି ନିବଦ୍ଧ କଲା ଅମରେଶ । "ଓଃ କି ନମ୍‌ଧରଣର ଫାଇଲ ? ମୂଳରୁ କିରାଣୀ ତା' ବିଦ୍ୟା-ବୁଦ୍ଧିରେ ଯାହା ବିଚାର ମାରି ଦେଇଛି, ତାକୁ କେହି ବିଚାର ନକରି ସମସ୍ତେ ଏକମତ, ଏକମତ ଲେଖି ଚାଲିଛନ୍ତି । ପ୍ରକୃତ ବିଷୟଟି କ'ଣ କେହି ବୁଝିବାକୁ ଚେଷ୍ଟା ବି କରିନାହାନ୍ତି । ଶେଷରେ ସେକ୍ରେଟେରୀ ବି ସେଇଆ ଲେଖିଦେଲେ । ମୂଳ କିରାଣୀଟି ଯେଉଁ ନୋଟ ଦେଇଛି ତା ଠିକ୍ କି ଭୁଲ ତାକୁ ବିଚାର କରି ଦେଖିବାକୁ ଯେମିତି କାହାର ବେଳ ନାହିଁ । ଏଇଆ କ'ଣ ଦେଶ ଶାସନ ? କିରାଣୀମାନଙ୍କ ଉପରକୁ ଏତେ ବଡ଼ ବଡ଼ ଅଫିସର ଅଛନ୍ତି କାହିଁକି ? ବଡ଼ ବିରକ୍ତ ହୋଇ ଫାଇଲ ଉପରେ ମନ୍ତବ୍ୟ ନ ଲେଖି ଫାଇଲ ଫେରାଇ ଦେଲା ଅମରେଶ । ସେକ୍ରେଟେରୀଙ୍କୁ ତାହା ସହିତ ଆଲୋଚନା କରିବା ପାଇଁ ନିର୍ଦ୍ଦେଶ ଦେଇଦେଲା ସେଥିରେ । ଫାଇଲ ଥୋଇଦେଇ ସଙ୍ଗେ ସଙ୍ଗେ ଡକାଇ ପଠାଇଲା ସାକ୍ଷାତକାରୀ ମାନଙ୍କୁ ।

ସେମାନେ ଆସି ନମସ୍କାର ଜଣାଇ ଅମରେଶ ଆଗରେ ଠିଆହେଲେ । ଅମରେଶ ସେମାନଙ୍କୁ ଚେୟାରରେ ବସିବା ପାଇଁ କହି ସେମାନଙ୍କ ଆସିବା କାରଣ ପଚାରିଲା ।

"ସାର୍, ଆମ୍ଭମାନଙ୍କୁ ବଡ଼ ହଇରାଣ କରୁଛନ୍ତି ପ୍ରିନ୍ସପାଲ ।"

"ଆପଣ ମାନେ କ'ଣ କରନ୍ତି ?"

"ସାର୍, ଆମେ ସମସ୍ତେ ଗବେଷଣା କରୁଛୁଁ ।"

"କେଉଁ ବିଭାଗରେ ?"

"ସାର୍, ରସାୟନ ବିଭାଗରେ ।"

"ଆପଣମାନେ ସମସ୍ତେ କ'ଣ ଗବେଷଣା ଛାତ୍ର ?"

"ହଁ ସାର, ଆମ ଭିତରୁ କେତେ ଜଣ ଶିକ୍ଷକ-ଗବେଷକ ମଧ୍ୟ ଅଛନ୍ତି ।"

"ଆପଣମାନଙ୍କୁ ପ୍ରିନ୍‌ସପାଲ କିପରି ହଇରାଣ କରୁଛନ୍ତି ?"

"ସାର, ଆମେ ସମସ୍ତେ ସି:ଏସ:ଆଇ:ଆର; ଇଉ:ଜି:ସି.;ଆଇ;ସି.ଏ ଆ.ର. ଆଦି ଅନୁଷ୍ଠାନରୁ ସର୍ବଭାରତୀୟ ସ୍ତରରେ ପ୍ରତିଯୋଗିତା କରି ବୃତ୍ତିପାଇଚୁଁ ରସାୟନ ବିଭାଗର ବିଭିନ୍ନ ଅଧ୍ୟାପକଙ୍କ ଅଧୀନରେ ଗବେଷଣା ପାଇଁ । ପ୍ରିନ୍‌ସ-ପାଲ ମହାଶୟ ଆମ୍ଭମାନଙ୍କୁ ଗବେଷକ ଭାବରେ ଜଏନ କରିବାକୁ ଦେଉ-ନାହାନ୍ତି । ଜଏନ୍ ନ କରିପାରିଲେ ଆମ ବୃତ୍ତି କଟିଯିବ ସାର୍ ।"

"ଜଏନ କରିବାକୁ ଦେଉ ନାହାନ୍ତି ?" କାହିଁକି ଆପଣମାନଙ୍କର ଅପରାଧ ? ଆପଣ ମାନେ ଦରଖାସ୍ତ କଲାବେଳେ ପ୍ରିନ୍‌ସପାଲଙ୍କ ଜରିଆରେ କ'ଣ ଦରଖାସ୍ତ କରି ନଥିଲେ ?

"ହଁ ସାର କରିଥିଲୁଁ । ବର୍ତ୍ତମାନର ଡ଼.ପି,ଆଇ ସେତେବେଳେ ପ୍ରିନ୍‌ସପାଲ ଥିଲେ । ତାଙ୍କର ଜରିଆରେ ଆମର ସବୁ ଦରଖାସ୍ତ ଯାଇଥିଲା ।

"ଆପଣମାନଙ୍କୁ ଜଏନ ନ କରିଦେବାର କାରଣ ?"

ସେ କହୁଛନ୍ତି ରସାୟନ ବିଭାଗର କଣ୍ଟିଜେନ୍‌ସି ହିସାବପତ୍ର ଗୋଳ ମାଳିଆ ହୋଇଛି । ରସାୟନ ବିଭାଗର ମୁଖ୍ୟ ଅଧ୍ୟାପକ କେତେକ ମନମୁଖି ଖରଚ କରି ଯାଇଛନ୍ତି । ସେତେବେଳର ପ୍ରିନ୍‌ସପାଲ ଓ ରସାୟନ ବିଭାଗ ମୁଖ୍ୟ ମିଶି ହିସାବପତ୍ରରେ ନାନା ବିଭ୍ରାଟ କରିଛନ୍ତି । ସେ ଗୋଳମାଳ ସବୁ ଠିକ ନହେଲା ପର୍ଯ୍ୟନ୍ତ ସେ କାହାରିକୁ ରସାୟନ ବିଭାଗରେ ଜଏନ୍ କରିବାକୁ ଦେବେନି ।

ଆପଣ ମାନେ ମୋ ପାଖକୁ ଆସିବା ପୂର୍ବରୁ ଡ଼. ପି. ଆଇ.ଙ୍କୁ ଦେଖା କରି ଏକଥା କହିଥିଲେ ?”

. ହଁ ସାର କହିଥିଲୁଁ । ସେ କହିଲେ “ପ୍ରିନ୍‌ସପାଲ ମୋ କଥାକୁ ଖାତିର କରୁନାହାନ୍ତି । ମୁଁ କଣ କରିବି ? ସେ ତ ମୁଖ୍ୟମନ୍ତ୍ରୀଙ୍କ ଲୋକ, ସେ କ’ଣ କାହା କଥା ଶୁଣୁଛନ୍ତି ?”

“ତା’ ହେଲେ, ଡ.ପି:ଆଇ ଏତିକେ କହିଦେଇ ତାଙ୍କ ଦାୟିତ୍ୱ ତୁଲାଇ ଦେଲେ ?”

ସାର୍, କିଛି ନ ହେବାରୁ ଆମେ ଆପଣଙ୍କ ପାଖକୁ ଆସିଲୁଁ । ଆମେ ସାତ ଆଠଜଣ ବଡ଼ ହଇରାଣ ହେଉଚୁଁ ସାର୍ । ବର୍ତ୍ତମାନ ଆମମାନଙ୍କ ଭବିଷ୍ୟତ ପୁରାପୁରି ଅନିଶ୍ଚିତ ।”

ଅମରେଶ ସୁଇଚ ଟିପିଲା ! ପ୍ରାଇଭେଟ ସେକ୍ରେଟେରୀ ଆସିବାରୁ ତାଙ୍କୁ ଡ଼.ପି.ଆଇ.ଙ୍କୁ ଡାକିବାକୁ କହିଦେଲା । କହିଲା, ଡ଼.ପି:ଆ.ଇ.ଙ୍କୁ ସଙ୍ଗେ ସଙ୍ଗେ ଆସିବା ପାଇଁ ଫୋନ୍ କର ।”

“ହେଉ ଆପଣମାନେ ବାହାରେ, ଅପେକ୍ଷା କରନ୍ତୁ । ମୁଁ ଡ଼.ପି.ଆଇଙ୍କୁ ଡ଼କାଉଛି, ଆସିଲେ ଆପଣମାନଙ୍କ କଥା ବୁଝାଯିବ ।

ମନ୍ତ୍ରୀଙ୍କ ଠାରୁ ଡ଼ାକରା ପାଇ ସଙ୍ଗେ ସଙ୍ଗେ ଡ଼.ପି.ଆଇ ମନ୍ତ୍ରୀଙ୍କ କୋଠିରେ ଆସି ପହଞ୍ଚିଗଲେ । ଅଭ୍ୟର୍ଥନା କକ୍ଷରେ ଗବେଷଣା, ଛାତ୍ରମାନଙ୍କୁ ଦେଖି ସେ ଜାଣିନେଲେ କାହିଁକି ତାଙ୍କୁ ଡ଼କା ଯାଇଛି ? ଡ଼.ପି.ଆଇ ତରତର ହୋଇ ମନ୍ତ୍ରୀଙ୍କ କକ୍ଷକୁ ପଶିଯାଇ ମନ୍ତ୍ରୀଙ୍କ ସାମନା ଚେୟାରରେ ବସିଛନ୍ତି କି ନାହିଁ ଅମରେଶ କହିଲା ।

“ବାପା, ଏହି ଗବେଷଣା ଛାତ୍ର ଗୁଡ଼ିକ ହଇରାଣ ହେଉଛନ୍ତି । ସେମାନେ କିଏନ କରି ପାରୁ ନାହାନ୍ତି । ଆପଣ ସେମାନଙ୍କ କଥା ଟିକିଏ ବୁଝି ଦେଉ-ନାହାନ୍ତି ? ସେମାନେ ମୋ ପର୍ଯ୍ୟନ୍ତ ଚାଲି ଆସିଲେ ? ଏଡ଼ିକ ଛୋଟିଆ କଥାଟାକୁ ଯଦି ଆପଣ ସମାଧାନ ନ କରି ପାରିବେ, ଏହାର ସମାଧାନ କ’ଣ ମୋତେ କରିବାକୁ ପଡ଼ିବ ?

କଥାଟା ଗୋଳମାଳିଆ ଥିବାରୁ ମୁଁ କିଛି କରି ପାରିଲିନି । ବର୍ତ୍ତମାନ ପ୍ରିନ୍‌ସିପାଲ କହୁଛନ୍ତି ରସାୟନ ବିଭାଗରେ କଣ୍ଟିଜେନ୍‌ସି ଖରଚରେ ନାନା ଗୋଳମାଳ ରହିଛି । ବିଭାଗୀୟ ମୁଖ୍ୟ ନାନା ମନମୁଖି ଖରଚ କରି ଯାଇଛନ୍ତି । ସେ ଗୁଡ଼ିକ ଠିକ ନ ହେଲା ପର୍ଯ୍ୟନ୍ତ ସେ କାହାକୁ ଜଏନ କରିବାକୁ ଦେବେନି ।'

ରସାୟନ ବିଭାଗର କଣ୍ଟିଜେନ୍‌ସି ଖରଚରେ କ'ଣ ଗୋଳମାଳ ହୋଇଛି, ଆପଣ ଦେଖିଛନ୍ତି ?

"ହଁ, ଦେଖିଛି, ସେଗୁଡ଼ିକ ଗୋଳମାଳ ନୁହେଁ । ପ୍ରିନ୍‌ସିପାଲ ଭାବୁଛନ୍ତି ଗୋଳମାଳ ବୋଲି । ସେତ ଆର୍ଟ'ସ ଲୋକ, ସାଏନ୍‌ସ କଥା କିଛି ବୁଝିପାରୁ ନାହାନ୍ତି । ତେଣୁ ନିଜେ ସବୁ ଗୋଳମାଳ କରି ବସିଛନ୍ତି ।"

ଯେଉଁ ଲୋକ ବିଜ୍ଞାନ ବିଭାଗର କଣ୍ଟିଜେନସି ଖରଚ ବୁଝି ନ ପାରିବ ସେମିତି ଲୋକକୁ ପ୍ରିନ୍‌ସିପାଲ କଲା କିଏ ? ପାଠନା ସାଏନ୍‌ସ କଲେଜରେ ସାଏନ୍‌ସ ଅଧ୍ୟାପକ ମାନେ ତ ପ୍ରିନ୍‌ସିପାଲ ହେଉଥିଲେ, ଏବେ ଏହି ଆର୍ଟ'ସ ଲୋକ ଏଠାକୁ ଆସିଲେ କେମିତି ?

ସେ ପରା ହେଉଛନ୍ତି, ମୁଖ୍ୟମନ୍ତ୍ରୀଙ୍କ ଲୋକ । ସିନିଅରିଟି ଅନୁସାରେ ଆସିଗଲେ ।"

"ଆପଣ କେମିତି ରାଜି ହୋଇଗଲେ ? ଆପଣ ତ ମନା କରି ପାରିଥାନ୍ତେ ? ହେଉ, ଛାଡ଼ନ୍ତୁ ସେ କଥା । ଆପଣ ପ୍ରିନ୍‌ସିପାଲଙ୍କ ସହିତ ଏ ସମ୍ବନ୍ଧରେ ପ୍ରତ୍ୟକ୍ଷ ଆଲୋଚନା କରିଛନ୍ତି ?"

"ନା, କାଗଜପତ୍ରରୁ ଯାହା ଧାରଣା କରିଛି ।"

"ସେ ଗୁଡ଼ିକ ବି ମୋତେ କରିବାକୁ ପଡ଼ିବ ?"

ସୁଇଚ ଟିପିଲି ଅମରେଶ । ପ୍ରାଇଭେଟ ସେକ୍ରେଟେରୀ ଆସିଲେ । ପ୍ରିନ୍‌ସିପାଲଙ୍କୁ ତୁରନ୍ତ ଡାକିବାକୁ ଆଦେଶ ଦେଲି ଅମରେଶ ।

ପ୍ରିନ୍‌ସପାଲ୍ ଆସି ସଙ୍ଗେ ସଙ୍ଗେ ଚଳିଗଲେ । ସେ ମନ୍ତ୍ରୀଙ୍କ କକ୍ଷ ଭିତରକୁ ପଶି ଆସିଲାକ୍ଷଣି ଦେଖିଲେ ଡ଼. ପି. ଆଇ. ପୂର୍ବରୁ ଆସି ସହଞ୍ଚି ଯାଇଛନ୍ତି । ସେ ପାଖ ଚେୟାରରେ ବସିଲେ । ଅମରେଶ ପଚାରିଲେ ।

"ଆପଣ ରସାୟନ ବିଭାଗର ଗବେଷଣା ଗ୍ରନ୍ଥଗୁଡ଼ିକୁ ଜର୍ନେନ୍ କରିବାକୁ ଦେଉନାହାନ୍ତି କାହିଁକି ?"

"ଆଜ୍ଞା ମୋର କିଛି କରିବାର ନାହିଁ । ରସାୟନ ବିଭାଗର ମୁଖ୍ୟଙ୍କ ଯୋଗୁଁ ସବୁ ଗୋଳମାଳ ।"

"କେମିତି ?"

ମୁଁ ଯେଉଁ ସବୁ ପ୍ରଶ୍ନ ଉଠାଇଛି, ସେ ସବୁର ସନ୍ତୋଷଜନକ ଉତ୍ତର ସେ ଦେଉନାହାନ୍ତି ।"

"କି ପ୍ରକାର ପ୍ରଶ୍ନ ?"

"କଣ୍ଟିଜେନ୍‌ସି ଖରଚ ନେଇ ।"

"ସେ କ'ଣ ଉତ୍ତର ଦେଉଛନ୍ତି ?"

ସେ ଯାହା ଉତ୍ତର ଦେଉଛନ୍ତି, ମୋର ସନ୍ତୋଷ ହେଲା ଭଳି ନୁହେଁ । ସେ ଜାଣିଶୁଣି ଠିକ୍ ଉତ୍ତର ଦେଉନାହାନ୍ତି ବୋଲି ମୋର ଧାରଣା ।"

"ରସାୟନ ବିଭାଗ ମୁଖ୍ୟଙ୍କର ଉତ୍ତର ଠିକ୍ ନୁହେଁ ବୋଲି ଆପଣ କେମିତି ଜାଣୁଛନ୍ତି ?"

"ମୋତେ ସେ ଗୁଡ଼ିକ ମିଛ ବୋଲି ଜଣାପଡ଼ୁଛି । ମୋତେ କାହିଁକି, ଯେ କୌଣସି ଲୋକକୁ ବି ସେ ସବୁ ମିଛ ବୋଲି ଜଣାପଡିବ ।"

"ଗୋଟିଏ ଉଦାହରଣ ଦେଲେ ।"

"ରସାୟନ ବିଭାଗର ମୁଖ୍ୟ ଲାବରେଟରୀରେ ଖରଚ ହେବା ପାଇଁ ଦୁଇ କିଲୋ ଭେଜିଟେବୁଲ୍ ଘିଅ କିଣିଛନ୍ତି । ଗତ ପାଞ୍ଚ ବର୍ଷର ହିସାବକୁ ଯାଞ୍ଚ କଲାରୁ ଜଣାପଡ଼ିଲା ଏମିତି ଘିଅ ଏଥିପୂର୍ବରୁ କେବେ କିଣାଯାଇନି ।

ଏହା ପ୍ରଥମ ଥର କଣା ହୋଇଛୁ । ମୁଁ ପଚାରିଲି, ଏହି ଘିଅ ଲାବରେଟରୀରେ କେଉଁ କାମରେ ଲାଗିଲା ?"

ସେ ଉତ୍ତର ଦେଲେ, "ଅଏଲବାଥ୍‌ରେ ଲାଗିଲା ।"

"ପଚାରିଲି ବର୍ତ୍ତମାନ ଯଦି ଅଏଲବାଥରେ ଲାଗିଲା, ଆଗରୁ କାହିଁକି ଲାଗୁ ନ ଥିଲା ? ଆଗରୁ ଲାବରେଟରୀରେ କେମିତି ଅଏଲବାଥ୍ ହେଉଥିଲା ? ଏ ସବୁ ପୁରାପୁରି ମିଛ ଆଜ୍ଞା । ସେମାନେ ଏହି ଘିଅରେ ଲାବରେଟରୀରେ ଜଳଖିଆ ତିଆରି କରି ଖାଇଛନ୍ତି । ମିଛ ହିସାବ ଦେଇ ଠକି ସରକାରଙ୍କଠାରୁ ଟଙ୍କା ନେଉଛନ୍ତି ।"

"ଆପଣଙ୍କର ମୁଣ୍ଡ ଠିକ୍ ଅଛି, ଡ଼କ୍ଟର ସିନ୍‌ହା ?"

"ଆଜ୍ଞା ।"

"ରସାୟନ ବିଭାଗର ମୁଖ୍ୟ ଜଣେ ଉଚ୍ଚପଦସ୍ଥ ଅଫିସର । ଆମ ରାଜ୍ୟର ସେ ଜଣେ ବଡ଼ ବୈଜ୍ଞାନିକ । ଆପଣ ତାଙ୍କ ନାଁରେ ଏଭଳି ମିଥ୍ୟା ଅଭିଯୋଗ କରୁଛନ୍ତି, ଆପଣଙ୍କୁ ଟିକିଏ ସଙ୍କୋଚ ଲାଗୁନି ? ଆପଣଙ୍କର ରସାୟନ ବିଭାଗର ଲାବରେଟରୀ ସଂପର୍କରେ କିଛି ପ୍ରତ୍ୟକ୍ଷ ଜ୍ଞାନ ଅଛି ? ଆପଣ ସାଏନ୍‌ସ ପଢ଼ିଛନ୍ତି ?

"ହଁ ସାର୍, ଆଇ. ଏସ୍‌ସି ରେ ସାଏନ୍‌ସ ପଢ଼ିଥିଲି ।

"ସେଥିପାଇଁ ଆପଣଙ୍କର ଧାରଣା ଯେ ଭେଜିଟେବୁଲ ଘିଅରେ ଅଏଲବାଥ୍ ହେବନି । ଏହା ଖାଲି ଜଳଖିଆ ତିଆରିରେ ଲାଗିବ ? "ଅଳ୍ପ ବିଦ୍ୟା ଭୟଙ୍କରୀ" ଯେଉଁ କଥାଟି ଅଛି, ମୁଁ ଦେଖୁଛି ତାହା ପ୍ରକୃତରେ ସତ ।

ଆପଣଙ୍କର ଯଦି ପ୍ରତ୍ୟକ୍ଷ ଜ୍ଞାନ ନାହିଁ, ତେବେ ରସାୟନ ବିଜ୍ଞାନ ଲାବୋରେଟରୀକୁ ଯାଇ ଦେଖିଲେନି ଅଏଲବାଥ୍ ହୋଇଛି କି ନାହିଁ । ଆପଣ ଯାଇଥିଲେ ?

"ନା, ଆଜ୍ଞା ଯାଇନି ।"

"ଅଥଚ ଗୋଟିଏ ସାମାନ୍ୟ ଅଭିଯୋଗ କରୁଛନ୍ତି କ'ଣ ନା ବିଭାଗର ଲୋକେ ସରକାରୀ ଘିଅରୁ ଜଳଖିଆ ତିଆରି କରି ଖାଇଗଲେ । ଆଜିକାଲି ଲାବରେଟରୀମାନଙ୍କରେ ଅଏଲବାଥ୍ ହେଉଛି ଭେଜିଟେବୁଲ ଘିଅରୁ । ଏହା କଲେ ଲାବରେଟରୀ ଗନ୍ଧାଇବ ନାହିଁ । ଆଗରୁ ଯେଉଁ ତେଲରେ ଅଏଲବାଥ୍ ହେଉଥିଲା, ସେଥିରେ ଲାବୋରେଟରୀରେ ଅତ୍ୟଧିକ ଦୁର୍ଗନ୍ଧ ହେଉଥିଲା । ଏହି ଅସୁବିଧାକୁ ଦୂର କରିବା ପାଇଁ ବିଭାଗୀୟ ମୁଖ୍ୟ ହିଁ ଏହି ଭେଜିଟେବୁଲ ଘିଅର ପ୍ରବର୍ତ୍ତନ କରିଥାଇ ପାରନ୍ତି । ସେମାନେ ଏତେ ବଡ଼ ବଡ଼ ଅଫସର, ଦୁଇ କଲେ ଘିଅରେ ଜଳଖିଆ କରି ଖାଇଯିବେକି ।"

"ଦେଖନ୍ତୁ, ଡକ୍ଟର ସିହ୍ନା, ଆପଣ ସାଏନ୍‌ସ କଲେଜର ପ୍ରିନ୍‌ସିପାଲ ହେବା ପାଇଁ ମୋଟେ ଯୋଗ୍ୟ ନୁହନ୍ତି । ଆପଣ ତ ଆର୍ଟସ୍ ଲୋକ, ଆପଣଙ୍କୁ ସାଏନ୍‌ସ କଲେଜକୁ କିଏ ଆଣିଲା ? ମୁଁ ସେଇଆ ଭାବୁଛି । ଦୁଇ ମାସ ହେଲା ଆପଣ ସାତ ଆଠ ଜଣ ପିଲାଙ୍କୁ ଅଯଥା ଜଏନ୍ କରାଇ ନ ଦେଇ ଯେଉଁ ଅକ୍ଷମଣୀୟ ଅପରାଧ କରିଛନ୍ତି, ଆପଣଙ୍କୁ ସସ୍‌ପେଣ୍ଡ କରାଯିବା କଥା । ମୁଁ ଆପଣଙ୍କୁ ସସ୍‌ପେଣ୍ଡ କରୁନାହିଁ । ଆପଣଙ୍କୁ ଭାଗଲପୁର ଆର୍ଟସ୍ କଲେଜକୁ ବଦଳି କରିବା ପାଇଁ ସେକ୍ରେଟେରୀଙ୍କୁ କହୁଛି । ଆପଣଙ୍କ ଭଳି ଅଜ୍ଞ ଓ ଗୋଳମାଳିଆ ଲୋକ ପାଟନା ସାଏନ୍‌ସ କଲେଜରେ ରହିବାକୁ ମୋଟେ ଯୋଗ୍ୟ ନୁହଁନ୍ତି । ଆପଣଙ୍କ ଭଳି ଅଜ୍ଞ ଲୋକ ଆମ ଶିକ୍ଷା ବିଭାଗରେ ଅଛନ୍ତି, ଜାଣି ମୁଁ ଲଜ୍ଜିତ ହେଉଛି । ଏଇ ସାମାନ୍ୟ କାରଣ ପାଇଁ ଆପଣ ଏତେଗୁଡ଼ିଏମେଧାବୀ ଛାତ୍ରଙ୍କର କେରିୟର ନଷ୍ଟ କରିଦେବାକୁ ବସିଛନ୍ତି ? ମୁଁ ଏଥର ସାବଧାନ କରିଦେଉଛି, ମିଷ୍ଟର ସିନହା, ଏଭଳି ଭୁଲ ଯେମିତି ଅନ୍ୟ କଲେଜରେ ନ କରନ୍ତି । ଆପଣଙ୍କର ଯେଉଁ ଦୁଷ୍ଟ ବୁଦ୍ଧି ଅଛି, ତାକୁ ଆୟତ୍ତ କରନ୍ତୁ, ନଚେତ୍ ଦିନେ ଏଇ ଚାକିରୀରୁ ବିଦା ହୋଇଯିବେ ।

× × ×

ଅମରେଶ ଅଫିସ ଯିବା ପାଇଁ ଖାଇବାକୁ ବସିଛି, ପି. ଏ. ଆସି ଖବର ଦେଲା "ସାର୍, ମୁଖ୍ୟମନ୍ତ୍ରୀଙ୍କ ଫୋନ୍ ଆସିଛି ।"

"ମୁଁ ଯାଇ ଫୋନ୍ ଧରିବି ?" ଖାଇବାକୁ ଦେଉଁ ଦେଉଁ ବାସନ୍ତୀ ପଚାରିଲା ।

"ନାଁ ନାଁ, ତୁମେ ଧରନ୍ତୁ । ଫୋନ୍ ଟାକୁ ଏଣ୍ଠାକୁ ନେଇ ଆସିବାକୁ କୁହ ।"

ଅମରେଶ ଫୋନ୍ ଧରିଲେ ।"

"ହଁ, ହଁ, ମୁଁ ଅମରେଶ କହୁଛି । କ'ଣ ଆଜ୍ଞା, କେଉଁ କଥା ?

"ସାଏନ୍ସ କଲେଜ ପ୍ରିନ୍ସପାଲ, ହଁ, ହଁ, ମୁଁ ତାଙ୍କୁ ଭାଗଲପୁର ଆର୍ଟସ୍ କଲେଜକୁ ବଦଳି କରିବା ପାଇଁ ଆଦେଶ ଦେଇଛି । ସେ ଆର୍ଟସ୍ ଲୋକ । ସାଏନ୍ସ କଲେଜ ଚଳାଇ ପାରୁନାହାଁନ୍ତି । ନାହାକ ଭୁଲଭଟକା କରୁଛନ୍ତି ।

"ନା, ତାଙ୍କୁ ସାଏନ୍ସ କଲେଜରେ ରଖି ହେବନି । ସେ ଏଠାରେ ସବୁ ଗୋଲମାଲ କରିଦେବେ । ସେ ଯେଉଁ ଭୁଲ କରିଛନ୍ତି, ତାଙ୍କୁ ସସ୍‌ପେଣ୍ଡ କରାଯିବା କଥା । ମୁଁ ସେତକ କରିନାହିଁ । ଭାଗଲପୁର ଆର୍ଟସ୍ କଲେଜ କିଛି ଛୋଟ କଲେଜ ନୁହଁ, ବଡ଼ କଲେଜ । ସେ ସେଠାକୁ ଯାଆନ୍ତୁ ।

"ନାଁ, ଆଜ୍ଞା, ହୋଇପାରିବନି, ମୁଁ ଅକ୍ଷମ ।"

ଏତକ କହି ଅମରେଶ ଫୋନ୍ ଥୋଇଦେଲେ । ଅମରେଶ ଥାଳଆକୁ ଭଜା ଦେଉଁ ଦେଉଁ ବାସନ୍ତୀ କହିଲେ, "ମୁଖ୍ୟମନ୍ତ୍ରୀ ଗୋଟିଏ ଅନୁରୋଧ କରୁଛନ୍ତି, ତାଙ୍କ ମୁହଁ ମୁହଁ କ'ଣ ଏମିତ ନାହିଁ କରିଦେଉଛ ମ ?

"ତୁମେ ଜାଣିନାହଁ, ବାସନ୍ତୀ, ସେ ପ୍ରିନ୍ସପାଲ ଯେଉଁ ଭୁଲ କରିଛନ୍ତିନା, ଆଉ କେହି ହୋଇଥିଲେ ତାଙ୍କୁ ସସ୍ପେଣ୍ଡ କରି ଦେଇଥାଆନ୍ତା । ମୁଖ୍ୟମନ୍ତ୍ରୀଙ୍କ ଲୋକ ବୋଲି ସେ କାହାକୁ ମାନୁ ନାହାନ୍ତି, ଏମିତକି ଡ଼, ପି. ଆଇ.ଙ୍କୁ ବି ମାନୁ ନାହାନ୍ତି ।

ମୁଖ୍ୟମନ୍ତ୍ରୀଙ୍କ ଇଚ୍ଛା ବିରୁଦ୍ଧରେ ଏହିଭଳି ଭାବରେ ଗଲେ ଏଠି ଆଉ ବେଶୀ ଦିନ ନୁହେଁ ମୁଁ ଦେଖୁଛି ?"

"ତୁମର କ'ଣ ଏ ମନ୍ତ୍ରୀଙ୍କ କୋଠା ଦେଖି ବେଶୀ ମମତା ବଢ଼ିଗଲାଣି କି ବାସନ୍ତୀ ? ଖବରଦାର ସେ ଭୁଲ କେବେ କରିବ ନାହିଁ । ସବୁବେଳେ ମନେ ରଖିଥିବ, ଆମେ ଆଜି ଏଠି ଅଛନ୍ତ, କାଲି ଏଠି ଥିବା କି ନାହିଁ ସନ୍ଦେହ ।"

ପ୍ରକୃତରେ ମୋତେ ଏଠି ମୋଟେ ଭଲ ଲାଗୁନି । ଦେଖିଲୁ ତେତ ତୁମେ ବାପାଙ୍କୁ ଯେମିତି ଭାବରେ ଡ଼କାଇ ଆଣୁଛନା, ମୋତେ ଭାରି ଖରାପ ଲାଗୁଛି । ତୁମେ ଯେତେହେଲେ ପୁଅ, ବାପାଙ୍କୁ ଏମିତି ଫୋନ୍‌ରେ ଡ଼କାଇ ଆଣିବା, ତୁଣି ସଙ୍ଗେ ସଙ୍ଗେ ଆସିବା ପାଇଁ କହିବା କ'ଣ ଉଚିତ ହେଉଛି ?

"କିନ୍ତୁ କ'ଣ କରିବେ ବାସନ୍ତୀ ? ଇଏ ଶାସନ ! ମୁଁ ବାପାଙ୍କ ଗୋଡ଼ ତଳକୁ ହେଲେ ବି ଶାସନରେ ଯେତେବେଳେ ପଡ଼ିଛି ବାପାଙ୍କୁ ଡ଼କାଇବାକୁ ପଡ଼ିବ । ତୁମେ କ'ଣ ଭାବୁଛ ବାସନ୍ତୀ ବାପାଙ୍କୁ ଡ଼କାଇବା ବେଳକୁ ମୋତେ ନିଜକୁ କଷ୍ଟ ହେଉନି ? କିନ୍ତୁ କ'ଣ କରିବି ? ଶାସନ ଡୋରକୁ ଯେତେବେଳେ ଧରିଛି ଡ଼କାଇବାକୁ ପଡ଼ିବ ନିଁ। ମୋ ଡ଼ାକରା ପାଇ ସେ ମଧ୍ୟ ଆସିବେ । ସେତିକ ନ କରିଥିଲେ ଗତ ଦୁଇ ମାସ ହେଲା ଦଳେ ମେଧାବୀ ପିଲା ଗବେଷଣା ନ କରି ଯେଉଁ ହଇରାଣ ହେଉଛନ୍ତି, ତାହା କ'ଣ ଏତେଶୀଘ୍ର ସମାଧାନ ହୋଇ ପାରିଥାନ୍ତା ?

"ତୁମେ ବାପାଙ୍କୁ ବାରମ୍ବାର ନ ଡ଼କାଇ ବାପାଙ୍କ ପାଖକୁ ଚାଲିଯାଇ ତାଙ୍କ ସହିତ ଆଲୋଚନା କରି ସେଇଠାରେ ଅର୍ଡ଼ର କରିଦେଇ ଆସିଲେ କଅଣ ହୁଅନ୍ତା ନି ?

ହସିଲା ଅମରେଶ, "ଲୋକେ କ'ଣ କହିବେ ଯେ ଅଙ୍କୁ ଟିକିଏ ଖିଅଲ ଅଛି ତ ? ଲୋକେ କହିବେ, "ଏହା ହରକାଣ୍ଟ ଶାସନ ନା ଘରୋଇ କାରବାର ?" ଏମିତି ଶାସନ ହୁଏନି ବାସନ୍ତୀ, ଶାସନର ଏକ ଡେକୋରମ ଅଛି । ସେହି ଡେକୋରମ ରଖିବାକୁ ପଡ଼ିବ, ନଚେତ୍ ଲୋକେ ଆମକୁ ଛି ଛି କାର କରିବେ । ଆମେ ମୁହଁ ଟେକି ଚାଲିପାରିବା ନାହିଁ ଏଠି ।"

କିନ୍ତୁ ଏ ସବୁ ଦେଖି ଦେଖି ମୋତେ ବଡ଼ ଖରାପ ଲାଗିଲାଣି । ମୁଁ ଖାଲି ଦିନ ଗଣୁଛି ଆମେ ଏଠୁଁ କେଉଁଦିନ ବଦଳି ହୋଇ ଆମ ଗୋବିନ୍ଦପୁରକୁ ଚାଲିଯିବା । ତୁମେ ଯେ ମନ୍ତ୍ରୀ କାହିଁକି ହେଲ, ବର୍ତ୍ତମାନ ମୁଁ ସେଇଆ ଭାବୁଛି ; ଆମେ ସେଠି ବେଶ୍ ଭଲରେ ଥିଲେ ।

× × ×

ସନ୍ଧ୍ୟା ପ୍ରାୟ ହୋଇଗଲାଣି । ରାଧାମଣି ଦେବୀ ଆସି ମନ୍ତ୍ରୀଙ୍କ ଘରେ ପହଞ୍ଚିଗଲେ । ଘର ଭିତରକୁ ଶାଶୁଙ୍କୁ ପଶି ଆସିବା ଦେଖି ବାସନ୍ତୀ ଯାଇ ତାଙ୍କ ଗୋଡ଼ଧୂଳି ନେଇ ସାଷ୍ଟାଙ୍ଗ ପ୍ରଣାମ ଜଣାଇ ପାଖେଇ ଆଣିଲା । ମା'ଙ୍କୁ ମୁଣ୍ଡିଆ ମାରିବାକୁ ପିଲାମାନଙ୍କୁ କହିଦେଲା ।

ଘରଆଡ଼କୁ ଚାହିଁ ରାଧାମଣି ଦେବୀ ପଚାରିଲେ, "କ'ଣ ମା, ଅମରେଶ କ'ଣ ଘରେ ନାହିଁ ?

"ନାଁ ବୋଉ, ସେ ମୁଖ୍ୟମନ୍ତ୍ରୀଙ୍କ ଘରକୁ ଯାଇଛନ୍ତି । ବର୍ତ୍ତମାନ ଆସି-ଯିବେ ଯେ ।"

ତୁ ଦିନସାରା ଏଠି ବସି ବସି ବିରକ୍ତ ହୋଇଯାଉଥିବୁ ମା ? ଟିକିଏ ଆମ ଘର ଆଡ଼େ ବୁଲି ଆସନ୍ତୁନ ? ମୁଁ ତ ଘରେ ଏକାଟିଆ ରହୁଛି । ମୋ ମନ ସବୁବେଳେ ତୋ'ଠାରେ ଓ ଏ ପିଲା ଦି'ଟାଙ୍କ ପାଖରେ । ତୁମମାନଙ୍କୁ ନ ଦେଖିଲାବେଳକୁ ମୋ ମନ ଥୟ ଧରୁନି ମା ।"

"କ'ଣ କରିବି ବୋଉ ? ଘରେ ଏତେ କାମ ଯେ ମୋତେ ମରିବାକୁ ବି ଫୁରସତ ନାହିଁ ? ସକାଳେ, ଉମରଓ୍ଵାଲା ପିଲାମାନଙ୍କୁ ପାଠପଢ଼ା । ମଧ୍ୟାହ୍ନ ବେଳେ ସେ ଖାଇବାକୁ ଅଫିସରୁ ଆସିବେ । ସନ୍ଧ୍ୟାରେ ଅଫିସରୁ ଫେରିଲେ ସାଙ୍ଗସାଥି କେତେଆସୁଛନ୍ତି । ମୁଁ ତ ଏଠି ସବୁବେଳେ ଖଡ଼ା ପହରା ରହୁଛି, ମୋତେ ବେଳ ମିଳୁଛି କେତେବେଳେ ? ମୋର କ'ଣ ମନ ହେଉନି ବୋଉ, ଆପଣମାନଙ୍କୁ ଯାଇ ଟିକିଏ ଦେଖି ଆସିବା ପାଇଁ । ମୁଁ ଏତେ ହତଭାଗିନୀ ଯେ ବାପାଙ୍କୁ ଏ ପର୍ଯ୍ୟନ୍ତ ମୁଁ ଦେଖିନି, କି ସେ ମୋତେ କେବେ ଦେଖିନାହାନ୍ତି । ପିଲାମାନେ ଏତେ ବଡ଼ ବଡ଼ ହେଲେଣି, ସେମାନେ କେବେ କ'ଣ ଆଜାଙ୍କୁ ଦେଖିଲେଣି ନା ଚିହ୍ନିଲେଣି ? କେଉଁ ହତଭାଗିଆ ଏ ପିଲା ଦି'ଜଣ ବୋଉ ?

"ସେ ଭୁଲ ତୋର ନୁହେଁ ମା, ସେ ଭୁଲ ତୋ ଶ୍ୱଶୁରଙ୍କର । ମୋତେ ବି ଶୁଣିଲାବେଳକୁ ଲାଜ ମାଡ଼ୁଛି ମା, ସେ ନିଜ ବୋହୂ, ନାତି ନାତୁଣୀଙ୍କୁ ଚିହ୍ନି ନାହାନ୍ତି । ଅନେକ ଥର ତ ସେ ଏଠାକୁ ଆସିଲେଣି । ମୁଁ ମଧ୍ୟ କେତେଥର କହିଲିଣି, ତୋତେ ଓ ପିଲାମାନଙ୍କୁ ଦେଖି ଆସିବା ପାଇଁ । ସେ କ'ଣ କୁହନ୍ତି

ଜାଣୁ ମା ।" ଶାସନକଳ ଭିତରେ ପାରିବାରିକ ସମ୍ପର୍କକୁ ଜାହିର କରାଯାଇ ପାରେ ନାହିଁ । ମନ୍ତ୍ରୀଙ୍କ ଘର ଭିତରକୁ ବାରମ୍ବାର ଡ଼ି. ପି. ଆଇ. ଯିବା ଆସିବା କଲେ ଲୋକେ ନାନା କଥା କହିବେ,' ପୁଅର ବି ବଦନାମ ହେବ, ବାପର ବି ବଦନାମ ହେବ ।

ମୁଁ ପରା ଆଜ ତାଙ୍କୁ କହୁଥିଲି, "ବାପାଙ୍କୁ ବାରମ୍ବାର ଏଭଳି ଭାବରେ ଡ଼କାଇବା ମୋଟେ ଭଲ ନୁହେଁ । ଯେତେହେଲେ ସେ ବାପା, ଇଏ ହେଉଛନ୍ତି ପୁଅ । ପୁଅ ବାପ ପାଖକୁ ଯିବା କଥା, ବାପ ପୁଅ ପାଖକୁ ଆସିବା କଥା ନୁହେଁ । ବାପାଙ୍କୁ ଡ଼କାଇବାକୁ ଆଦେଶ ଦେଇ ସେ କ'ଣ ନିଜ କମ୍ ମନ କଷ୍ଟ କରନ୍ତି ବୋଉ ? ମୋତେ କୁହନ୍ତି, ତୁମେ କ'ଣ ଭାବୁଛ ବାସନ୍ତୀ; ବାପାଙ୍କୁ ଡ଼କାଇଲାବେଳେ ମୋତେ କଷ୍ଟ ହୁଏନି ବୋଲି । କିନ୍ତୁ କ'ଣ କରିବି, ଶାସନ-ଡ଼ୋରି ତ ଧରିଛି, ସେ କଷ୍ଟ ମୋତେ ସହିବାକୁ ପଡ଼ିବ ।"

ମୁଁ ତାଙ୍କୁ ସେଥିପାଇଁ କେତେଥର କହିଲଣି, ଚାଲ, ଆମେ ଏଠା ଛାଡ଼ି, ଆମ ଗୋବନ୍ଦପୁରକୁ ଚାଲିଯିବା । ଆମେ ସେଠି ବେଶ୍ ଭଲରେ ଥିଲେ ।"

"ନା ମା, ତୁ ଏତେ ବ୍ୟସ୍ତ ହେଉଚୁ କାହିଁକି ? ପୁଅ ମନ୍ତ୍ରୀ ହେବାରେ ଯେ ଖୁସି ନୁହେଁ, ତା ମୁଁ ଜାଣେ । ଯେତେବେଳେ ଶାସନ ଦାୟିତ୍ୱ ଧରିଛି, ଏ ଭଳି ଛାଡ଼ି ପଳାଇଲେ ଲୋକେ ହସିବେ ନା । ତା' ସମ୍ମାନ କେତେ ତଳକୁ ଖସିଯିବ କହିଲୁ ?

"ତୁ ପିଲା ଦୁହିଁଙ୍କୁ କ'ଣ ସ୍କୁଲରେ ଦେଇନୁ ମା ?"

"ନା, ବୋଉ, ମୁଁ ଘରେ ପଢ଼ାଉଛି ।

"ତୁ ପୁଅର ଖାଇବା ପିଇବା ଦାୟିତ୍ୱ ଭିତରେ ପିଲାମାନଙ୍କୁ ପଢ଼ାଇ ପାରୁଚୁ ମା ? ବେଳ ପାଉଛୁ କେମିତି ?

"ହଁ, ବୋଉ, ନ ପଢ଼ାଇବି କେମିତି ? ସେଥିପାଇଁ ସମୟ କରିବାକୁ ପଡୁଛି । ମୁଁ ତ ସ୍କୁଲରେ ଶିକ୍ଷୟିତ୍ରୀ ଥିଲି । ମୋତେ ପିଲାଙ୍କୁ ପଢ଼ାଇବାକୁ ଭଲ ଲାଗେ । ତା' ଛଡା ଆପଣଙ୍କ ପୁଅ କହନ୍ତି ପିଲାମାନଙ୍କୁ ମା ଯେଉଁଭଳି ଭାବରେ

"ଆରେ, ଆମେ ଏଠି ଠିଆହୋଇ କ'ଣ କଥାବାର୍ତ୍ତା ହେଉଛନ୍ତି ? ଭିତରକୁ ଆସ ।"

ଏତକ କହି ଅମରେଶ ଶୁଭ୍ରାକୁ ଡାକ ନେଇଗଲା ଡ୍ରଇଁ ରୁମ୍‌କୁ । ଅନ୍ୟଘରୁ ବାସନ୍ତୀକୁ ଡ଼ାକ ଆଣୁ ଆଣୁ କହିଲା, 'ଦେଖିଲଣି ବାସନ୍ତୀ, ଆଜ ଆମ ଘରକୁ କିଏ ଆସିଛନ୍ତି ?'

"ଶୁଭ୍ରା ଦେବୀ ଯେ, ନମସ୍କାର । ଆପଣ କେବେ ଆମେରିକାରୁ ଆସିଲେ ?

"ନମସ୍କାର, ଏଇ କାଲିତ ଆସିଲି । ଆପଣମାନେ ଏଠି ରହୁଛନ୍ତି ଜାଣି ଚାଲିଆସିଲି । ଆପଣମାନେ ଏଠି ନଥିଲେ ମୋତେ ଯିବାକୁ ପଡ଼ିଥାନ୍ତା, ଆପଣମାନଙ୍କ ସେହି ପୂର୍ବସ୍ଥାନ ଗୋବର୍ଦ୍ଧନପୁରକୁ । ଅତି ଚମତ୍କାର ସ୍ଥାନଟିଏ ବାସନ୍ତୀ ଦେବୀ । ଆପଣମାନେ ସେହି ଗାଁଟିକୁ କ'ଣ କରି ଗଢ଼ିନାହାନ୍ତି ସତେ ! ମୋତେ ଭାରି ଭଲଲାଗେ ସେହି ସ୍ଥାନଟି, ସତେ ଯେମିତି ବୈକୁଣ୍ଠପୁର ।

ସେଇ ଗୋବର୍ଦ୍ଧନପୁରକୁ ଯିବାପାଇଁ ବାସନ୍ତୀ ଏବେ ଯେଉଁ ଯିଦ୍ ଧରିଥିଲା, ତୁମେ ଶୁଣିଲେ ହସି ହସି ଗଡ଼ିଯିବ ଶୁଭ୍ରା । ଦିନେ ହଠାତ୍ ରୁଷି ଯାଇଥିଲା ବାସନ୍ତୀ । ମୋତେ ଗୋଟିଏ କାଗଜ ଆଣି କହିଲା ଏଥିରେ ଦସ୍ତଖତ କର । ସେ କାଗଜ ପୁଣି କ'ଣ ଜାଣିଛ ? ମନ୍ତ୍ରୀତ୍ୱରୁ ଇସ୍ତଫା ଦେବାପାଇଁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଏକ ଚିଠି ।

"କିନ୍ତୁ, କାରଣ ?"

"ବାପାଙ୍କର ଏକ ଭୁଲପାଇଁ ବାପାଙ୍କ ଉପରେ ବିରକ୍ତ ହେଲିବୋଲି । ସେ ବୁଝିପାରେନି ଶୁଭ୍ରା, ବାପାଙ୍କ ଉପରେ ମୁଁ ବିରକ୍ତ ହେଲାବେଳେ ମୋତେ ଯେମିତି କଷ୍ଟ ନହୁଏ । କିନ୍ତୁ କ'ଣ କରିବ ? ଇଏ ଦେଶ ଶାସନ !

"ବୁଝିଲେ ଶୁଭ୍ରାଦେବୀ, ପ୍ରତିଦିନ ସକାଳ ହେଲାଠାରୁ ରାତିରେ ଶୋଇଲା ପର୍ଯ୍ୟନ୍ତ ମୁଁ ଯାଙ୍କଠାରୁ ସବୁବେଳେ ଶୁଣୁଛି ଏ ଦେଶ ଶାସନ, ଏ ଦେଶ ଶାସନ । ଏହା ଶୁଣି ଶୁଣି ମୋ କାନ ବଧିର ପଡ଼ିଗଲାଣି । ସେଥିପାଇଁ କହିଲି ଚାଲ ଆମେ ପଳାଇଯିବା ଗୋବର୍ଦ୍ଧନପୁର । ଏ ଦେଶଶାସନ ଆମର ଦରକାର ନାହିଁ ।

କିନ୍ତୁ, କିଛି ଗୋଟିଏ କାରଣ ନଥାଇ ସାର୍ କେମିତି ପଳାଇଯିବେ ବାସନ୍ତୀ ଦେବୀ ?

"ବାପାଙ୍କର ସେ ଭୁଲ ଯିଏ ଶୁଣିବ, ସେ ବିରକ୍ତ ହେବ ଶୁଭ୍ରା । ତୁମେ ଜାଣିଥିବ ଶୁଭ୍ରା କିଛିଦିନ ତଳେ ପାଟନା ସାଏନ୍‌ସ କଲେଜରେ ଜଣେ ପ୍ରିନ୍‌ସପାଲ ଥିଲେ ଡକ୍ଟର ସିହ୍ନା । ସରକାରଙ୍କୁ ଏକ ଚିଠି ଲେଖିଥିଲେ ଯେଉଁ ଛାତ୍ରମାନେ ଗବେଷଣା କରୁଛନ୍ତି, ସେମାନେ ଡ଼ିପାର୍ଟମେଣ୍ଟର ପାଣି ଖରଚ, ଗ୍ୟାସ ଖର୍ଚ୍ଚ, ବିଜୁଳିଶକ୍ତି ଖର୍ଚ୍ଚ ବାବଦକୁ କିଛି ଟଙ୍କା ସେମାନେ କଣ୍ଟିଜେନ୍‌ସି ଗ୍ରାଣ୍ଟ୍‌ରୁ କାଟିକରି ସରକାରଙ୍କୁ ଦିଅନ୍ତୁ ।

"ହଁ ହଁ, ସାର୍, ଏଇ କିଛି ସମୟ ତଳେ ମୁଁ ସାଏନ୍‌ସ କଲେଜକୁ ଯାଇଥିଲି । ଠିକ୍ ଏଇ କଥା ଆଲୋଚନା ଚାଲିଥିଲା ସେଠି ଶୁଣି ଆସିଲି । ସେମାନେ ଭୂତପୂର୍ବ ପ୍ରିନ୍‌ସିପାଲଙ୍କୁ ଯେଉଁ ଭାଷାରେ ଗାଳି ଦେଉଛନ୍ତି, ମୁଁ ଶୁଣି ଥାଟଙ୍ଗା ।

"ବାପା, ଏହି ପ୍ରସ୍ତାବଟାକୁ ଫରଓ୍ୱାର୍ଡ଼ କରି ସରକାରଙ୍କୁ ପଠାଇଲେ । ତୁମେ କହିଲ ଶୁଭ୍ରା ! ବାପା ଡ.ପି.ଆଇ: ହିସାବରେ ଏହାକୁ ଫରଓ୍ୱାର୍ଡ଼ କରିବା କ'ଣ ଠିକ୍ ହୋଇଛି ?

ସାର୍, ସେ ଯେଉଁ ପ୍ରିନ୍‌ସିପାଲ ଥିଲେ ନା ଅତି ଖଳପ୍ରକୃତିର ଲୋକ । ନିଜର ପୁଣି ଅସଂଖ୍ୟ ପ୍ରକାର ଚଳିତି, ଆପଣ ଶୁଣିଲେ କାନରେ ହାତଦେବେ । ରସାୟନ ବିଭାଗରେ ଅଧିକ ଗବେଷଣା ହେଉଛି ବୋଲି ସହି ନପାରି ଏଭଳି କାଣ୍ଡ କରିଛନ୍ତି । ରସାୟନ ବିଭାଗ ଉପରେ ତାଙ୍କର ଭାରି ରାଗ । ମୁଖ୍ୟମନ୍ତ୍ରୀଙ୍କ ଲୋକ ବୋଲି କାହାରିକୁ ଖାତିର ନକରି ସବୁ ମନଇଚ୍ଛା କରିଯାଉଥିଲେ । ଆପଣ ସେହି ଲୋକକୁ ବିଦା କରିଦେଇଛନ୍ତି ଖୁବ୍ ଭଲ କରିଛନ୍ତି ।

ଛାଡ଼ ସେ କଥା ଶୁଭ୍ରା, ତୁମେ ବର୍ତ୍ତମାନ କୁହ, ଆମେରିକାରେ ତୁମ ଗବେଷଣା କେମିତି ଚାଲିଛି ? କର୍କଟ ରୋଗ ପାଇଁ ତୁମର ସେହି ଔଷଧ କେମିତି କାମ ଦେଉଛି ଶୁଣେ ?

"ସାର, ସେ ଔଷଧ ଛଡ଼ା ଆମର ଏବେ ଆଉ ଏକ ଔଷଧ ପରୀକ୍ଷା କ୍ଷେତ୍ରରୁ ବାହାରି ଏକ ଦକ୍ଷ ଔଷଧ ଭାବରେ ବଜାରକୁ ଆସିଯିବା ଉପରେ । ଏହି

ଔଷଧଟିର ଶକ୍ତିଶାଳିତା ବର୍ଣ୍ଣନାତୀତ । ପ୍ରାୟ ସବୁ ପ୍ରକାର କେନ୍‌ସର ରୋଗ ପାଇଁ ଏହା ଖୁବ୍ ଭଲ କାମ ଦେଉଛି । ଆମେରିକାର ସୁପ୍ରସିଦ୍ଧ ସଲଷ୍ଟ୍ରିଜର କୋମ୍ପାନୀ ଏହାର ବ୍ୟାପକ ଉତ୍ପାଦନ କରି ବଜାରକୁ ଆଣିବା ଉପରେ ।"

"ଅତି ଚମତ୍କାର କଥା ଶୁଭ୍ରା । ତୁମ କୃତିତ୍ୱ ଶୁଣି ମୁଁ ଖୁବ୍ ଖୁସି ।

"ଏହି ଔଷଧ ପାଇଁ ଆମେ ଏବେ ଆମେରିକାର ସର୍ବଶ୍ରେଷ୍ଠ ସମ୍ମାନ ଫ୍ରେଙ୍କଲିନ୍ ପଦକ ପାଇଚୁଁ । ଗତବର୍ଷ ଆମ ନାଁ ଯୁକ୍ତରାଷ୍ଟ୍ରରୁ ନୋବେଲ ପ୍ରାଇଜ ପାଇଁ ପଠାଯାଇଛି । ଅଧ୍ୟାପିକା ମିସ୍ କାରୁସୋ, ତାଙ୍କର ସହକର୍ମୀ ମେରି ଲିଟଲମେନ ଓ ସେଥି ସହିତ ମୋ ନାଁ । ମୁଁ ଶୁଣୁଛି କାଲେ ଇଂଲଣ୍ଡର ଆଉ ଜଣେ ବୈଜ୍ଞାନିକ କେନସର ରୋଗ ପାଇଁ ଆଉ ଗୋଟିଏ ଭଲ ଔଷଧ ବାହାର କରିଛନ୍ତି । ତାଙ୍କ ନାଁ ମଧ୍ୟ ଇଂଲଣ୍ଡରୁ ପଠା ଯାଇଛି । ଆଶା କରା ଯାଉଛି ଏହି ବର୍ଷର ଚିକିତ୍ସା ବିଭାଗରେ ଏହି ଦୁଇଦଳ ନୋବେଲ ପୁରସ୍କାର ପାଇବାର ସମ୍ଭାବନା ଅଛି । ତା ଯଦି ହୁଏ, ତେବେ ସେହି ଇଂରେଜ ବୈଜ୍ଞାନିକ, ମିସ କାରୁ ସୋ, ମିସ୍ ଲିଟଲମେନ୍ ନୋବେଲ୍ ପୁରସ୍କାର ବିଜେତା ହେବେ, ମୋ ନାଁ କଟିଯିବ । କାରଣ ଏକ ସଙ୍ଗରେ ତିନିଜଣରୁ ଅଧିକ ଲୋକ ନୋବେଲ୍ ପୁରସ୍କାର ପାଇବେନି ବୋଲି ଆଇନ ଅଛି । ଯଦି ଇଂଲଣ୍ଡର ସେ ବୈଜ୍ଞାନିକଙ୍କ ନାମ ନୋବେଲ ପ୍ରାଇଜ ପାଇଁ ଗୃହୀତ ନହୁଏ, ତେବେ ମିସ୍ କାରୁସୋ ଓ ମିସ୍ ଲିଟଲ୍‌ମେନଙ୍କ ସହ ମୁଁ ନୋବେଲ ପ୍ରାଇଜ ବିଜେତା ହେବି । ଆଉ ମାସେ ଭିତରେ ଜଣା ପଡ଼ିଯିବ ଏକା, ଆମ ଦଳ ନୋବେଲ ପ୍ରାଇଜ ପାଉଛି କି ନାହିଁ ।"

"ମୁଁ ଅତ୍ୟନ୍ତ ଆନନ୍ଦିତ ଶୁଭ୍ରା, ତୁମ ନାମ ନୋବେଲ ପ୍ରାଇଜ ପାଇଁ ଯାଇଛି ବୋଲି । ଏହା ତୁମ ପକ୍ଷରେ ତ ଖୁବ ବଡ଼ ସମ୍ମାନ, ମୋ ପକ୍ଷରେ ବି କମ ନୁହେଁ । ମୋର ଜଣେ ଛାତ୍ରୀ ଯେ ଆଜି ନୋବେଲ ପୁରସ୍କାର ବିଜେତା ହେବ, ଏହା ଠାରୁ ବଡ଼ ସମ୍ମାନ ମୋ ପାଇଁ ଆଉ କ'ଣ ହୋଇପାରେ ଶୁଭ୍ରା ?

"ଦେଖୁଛ ଦେଖୁଛ ବାସନ୍ତୀ, ଶୁଭ୍ରା ଆମ ଦେଶ ପାଇଁ କେତେବଡ଼ ସମ୍ମାନ ଟାଏ ଘେନି ଆସୁଛି । ଭାରତମାତାର ସେ ଯୋଗ୍ୟତମ ସନ୍ତାନ ବାସନ୍ତୀ । "ଆନନ୍ଦରେ ଉତ୍‌ଫୁଲ୍ଲିତ ହୋଇ କହି ପକାଇଲେ ଅମରେଶ ।

"ତୁମେ କ'ଣ ସବୁଦିନ ପାଇଁ ଆମେରିକାରେ ରହିଯିବ ଶୁଭ୍ରା ? ତୁମକୁ ଯଦି ଭାରତରେ ଅଧ୍ୟାପକ ଚାକିରି ମିଳେ କ'ଣ ଆସିବାକୁ ଇଚ୍ଛୁକ ନୁହଁ ?

'ନାଁ ସାର, ମୋଟେ ନୁହେଁ । ଏଠି ତ ବିଜ୍ଞାନ କି ବୈଜ୍ଞାନିକର ମହତ୍ତ୍ୱ କେହି ବୁଝନ୍ତି ନାହିଁ । ଆପଣ ଯାହା ଦୁଃଖ କରି କହନ୍ତି, ଏଠି ଖାଲି ଗବେଷଣା ନାଁରେ ଚଷୁ କୁଟା ଚାଲିଛି, ତାହା ଅକ୍ଷରେ ଅକ୍ଷରେ ସତ । ଏଠି ତ ବୈଜ୍ଞାନିକ ମାନେ ଗଣା ହୁଅନ୍ତି କାହା ଅଧୀନରେ କେତେ ଜଣ ପି.ଏଇଚ.ଡ଼ି ପାଇଲେ, କାହାର କେତୋଟି ଗବେଷଣା ପ୍ରବନ୍ଧ ପ୍ରକାଶ ପାଇଲା । ଏଠି ସମସ୍ତେ ସଂଖ୍ୟା ଉପରେ ଚାଲନ୍ତି, ଗୁଣ ଦେଖନ୍ତିନି । ଯା'ଠାରୁ ଯେତେ ଅଧିକ ପିଲା ପି.ଏଇଚ.ଡି ପାଇଲେ, ସେ ସେତେ ବଡ଼ ବୈଜ୍ଞାନିକ । ଯା'ର ଯେତେ ଗବେଷଣା ପ୍ରବନ୍ଧ ପ୍ରକାଶ ପାଇଲା ସେ ସେତେ ବଡ଼ ବୈଜ୍ଞାନିକ । କାମର ମାନ କେତେ ସେ ଆଡ଼କୁ କାହାର ଖିଆଲ ନଥାଏ । ଆମେରିକାରେ ଏକଥା କହିଲେ ଲୋକେ ହସି ହସି ଗଡ଼ିଯିବେ । ଏହା କ'ଣ କେବେ କୃତୀ ବୈଜ୍ଞାନିକ ବାଛିବାର ମାନଦଣ୍ଡ ହୋଇପାରେ ? ସାର୍ ଆପଣ ବିଶ୍ୱାସ କରିବେନି, ଆମର ଯେଉଁ କାମ ଆଜି ନୋବେଲ ପ୍ରାଇଜ ପାଇଁ ଗୃହୀତ ହୋଇଛି, ତାହା ମାତ୍ର ପ୍ରକାଶ ପାଇଥିଲା ଏକ ନୋଟ ଭାବରେ ବିଲାତର 'ନେଚର' ପତ୍ରିକାରେ । ପୂରା ପ୍ରବନ୍ଧ ଏ ପର୍ଯ୍ୟନ୍ତ ପ୍ରକାଶ ପାଇନି ।

ଖାଲି ତୁମର କାହିଁକି ଶୁଭ୍ରା, ତୁମ ଆଗରୁ ବହୁ ନୋବେଲ ପୁରସ୍କାର ବିଜେତାଙ୍କ କାମ ନେଚର ପତ୍ରିକାରେ ନୋଟ ଭାବରେ ସର୍ବପ୍ରଥମ ପ୍ରକାଶିତ ହୋଇ ସେମାନଙ୍କ ପ୍ରସିଦ୍ଧି ପ୍ରଚାର କରି ଦେଇଥାଏ । ଓ୍ୱାଟସନ-କ୍ରିକ୍ଙ୍କ କାମ କ'ଣ ? ନେଚର ପତ୍ରିକାର ଏକ ନୋଟ୍ ତ ସେମାନଙ୍କ ପାଇଁ ନୋବେଲ ପୁରସ୍କାର ଘେନି ଆସିଥିଲା । ମୁଁ ତୁମ ସହିତ ଏକମତ ଶୁଭ୍ରା, ପ୍ରବନ୍ଧର ସଂଖ୍ୟା, କି ପି. ଏଇଚ୍. ଡ଼ି. ଛାତ୍ରଙ୍କ ସଂଖ୍ୟା କୌଣସି ବୈଜ୍ଞାନିକର କୃତି ନିର୍ଣ୍ଣୟ କରିବାରେ ମାନଦଣ୍ଡ ହୋଇ ନପାରେ । ଶିକ୍ଷାମନ୍ତ୍ରୀ ଭାବରେ ମୁଁ ସେ ସଂଖ୍ୟାକୁ କେବେ ଗୁରୁତ୍ୱ ଦେଇନି । ଅବଶ୍ୟ ମୋ ପୂର୍ବରୁ ଏଠି ଯେଉଁମାନେ ଥିଲେ ସେମାନେ ତ ଗବେଷଣା ବିଷୟରେ ଅଜ୍ଞ ଥିଲେ, ତେଣୁ ସେମାନଙ୍କୁ ଯିଏ ଯାହା ବୁଝାଇଦେଲା, ସେମାନେ ସେଥିରେ ଭୁଲି ଯାଉଥିଲେ ।

"ତା'ଛଡ଼ା ସେଠି ଆଉ ଏକ ଖରାପ ପ୍ରଥା ରହିଆସିଛି ସାର୍ । ଯାହାକୁ ମୁଁ ପ୍ରଥା ବୋଲି କହିବିନି, ବୈଜ୍ଞାନିକମାନଙ୍କର ଅସାଧୁତା ବୋଲି କହିବି । ଏ ଦେଶରେ ବହୁ ବୈଜ୍ଞାନିକ ପି. ଏଚ୍‌ଡି. ପରେ ପୁଣି ଡି.ଏସ୍.ସି. ଡିଗ୍ରୀ ପାଇବାପାଇଁ ଥିସିସ୍ ଦିଅନ୍ତି । ଆମେରିକାରେ ସେଭଳି ପ୍ରଥା ନାହିଁ । ଏହା ଇଂଲଣ୍ଡରେ ଅଛି । ଗବେଷଣା ପାଇଁ ଏକାଧିକ ଡିଗ୍ରୀ ପାଇବାର ବ୍ୟବସ୍ଥା ଆମେରିକାରେ ନାହିଁ । ଆମେ ଇଂରେଜମାନଙ୍କର ମତ ଅନୁକରଣ କରୁଥିବାରୁ ଆମ ଦେଶରେ ସେହି ପ୍ରଥା ରହିଆସିଛି । ଆମେରିକାନ୍‌ମାନଙ୍କୁ ଦୁଇଟା ଡିଗ୍ରୀ କଥା କହିଲେ—ସେମାନେ ଥଟ୍ଟା କରିବେ ? ଗବେଷଣା, ଡିଗ୍ରୀ କେବେ ବୈଜ୍ଞାନିକ ମାନଦଣ୍ଡ ନିର୍ଣ୍ଣୟ କରିବାରେ ସହାୟକ ନୁହେଁ । ନିଜର କାମର ମାନ ହିଁ ମାନଦଣ୍ଡର ପରିଚୟକ । ଦେଶର ମୂର୍ଖ ଜନତା ଓ ଅଜ୍ଞ ପ୍ରଶାସକମାନଙ୍କୁ ଠକାଇବାର ଏହା ଏକ କାରସାଦି । ଯାହାର ପି.ଏଚ୍‌.ଡି., ଡି.ଏସସି. ଦୁଇଟା ଡିଗ୍ରୀ ଅଛି, ସେ ନିଶ୍ଚୟ ଖାଲି ପି.ଏଚ୍.ଡି., ଡିଗ୍ରୀଥିବା ବୈଜ୍ଞାନିକଠାରୁ ବଡ଼ । ଏଭଳି ପ୍ରତାରଣାପୂର୍ଣ୍ଣ ପ୍ରଶ୍ନର କେଉଁ ନିକୃଷ୍ଟ ଧରଣର ମୁଁ ଭାବି ପାରେନି ସାର୍ ।

"ଏହାଠାରୁ ଆହୁରି ହୀନ ହେଉଛି, ଆମ ଦେଶର ବହୁ ବୈଜ୍ଞାନିକ ସେମାନଙ୍କ ଅଧୀନରେ ହୋଇଥିବା ପି.ଏଚ୍.ଡି. ଛାତ୍ରମାନଙ୍କ ଗବେଷଣା ପ୍ରବନ୍ଧକୁ ଏକ ସନ୍ଦର୍ଭ ଆକାରରେ ବିଶ୍ୱବିଦ୍ୟାଳୟରେ ଦେଇଠକର ଉଚ୍ଚତର ଡି. ଏସସି. ଡିଗ୍ରୀ ପାଇଁ ଚେଷ୍ଟା କରନ୍ତି ଓ କେତେକେ ପାଆନ୍ତି ମଧ୍ୟ । ଗବେଷଣାରେ ଆନ୍ତର୍ଜାତିକ ମତ ଅନୁସାରେ ଗୋଟିଏ କାର୍ଯ୍ୟ ଗୋଟିଏ ଡିଗ୍ରୀ ପାଇଁ ବ୍ୟବହୃତ ହୋଇଥିଲେ, ସେହି କାର୍ଯ୍ୟ ଅନ୍ୟ ଜଣେ ଲୋକର ଆଉ ଏକ ଡିଗ୍ରୀପାଇଁ ବିନିଯୋଗ ହୋଇନପାରେ । ଯଦି ହୁଏ, ତେବେ ଏହା ପୁରାପୁରି ଏକ ଅସାଧୁତା ବା ଖୋଲାଖୋଲି ଭାଷାରେ ଚୋରି । ଗବେଷଣାରେ ଯଦି ଚୋରି ବା ଅସାଧୁତା ଦେଖାଦେଲା, ତେବେ ସେ ବୈଜ୍ଞାନିକ ବିଶ୍ୱାସଯୋଗ୍ୟ ନୁହେଁ ବା ତା' କାମ ବିଶ୍ୱାସଯୋଗ୍ୟ ହୋଇ ନପାରେ । ଯେଉଁ ବୈଜ୍ଞାନିକ ଆଉ ଗୋଟିଏ ଡିଗ୍ରୀ ପାଇବାପାଇଁ ଅସାଧୁତା ବା ଚୋରିର ଆଶ୍ରୟ ନେଲା ସେ ବୈଜ୍ଞାନିକ ତା' ଗବେଷଣାରେ ଯେ ସେହିଭଳି କେତେ ଚୋରି କରିନଥିବ, ତା'କୁ ଅସ୍ୱୀକାର କରିଯାଇ ନପାରେ ।

"ତୁମେ କାହାକୁ ଆକ୍ଷେପ କରୁଛ ଶୁଭ୍ରା ? ଏହା କ'ଣ ଆମ ରାଜ୍ୟରେ କେଉଁଠି ହୋଇଛି ନା କଅଣ ?

"ସାର୍, ଆପଣେ କ'ଣ ଜାଣିନାହାନ୍ତି ? ପାଟନା ସାଏନ୍ସ କଲେଜର ଅଧ୍ୟାପକ ସାକ୍‌ସେନା ଏବେ ଡ଼.ଏସ୍. ସି. ଡ଼ିଗ୍ରୀ ପାଇଛନ୍ତି । ସେ ତ କେବେ ନିଜେ ଗବେଷଣା କରିବାର ମୁଁ ଦେଖିନି କି ଶୁଣିନି । ଯେଉଁ ପିଲାମାନେ ତାଙ୍କ ଅଧୀନରୁ ପି. ଏଇଚ୍. ଡି. ପାଇଛନ୍ତି ସେ ସେମାନଙ୍କର କାମକୁ ନେଇ ଏକ ବଡ଼ ଥିସିସ୍ କରି ଡ଼. ଏସ୍‌ସି ପାଇଁ ଦେଇଥିଲେ । ତାଙ୍କୁ ଏବେ ଡ଼ ଏସସି ଡ଼ିଗ୍ରୀ ମିଳିଯାଇଛି । ଠିକ୍ ତାଙ୍କର ଭଳି ରାଞ୍ଚି ବିଶ୍ୱବିଦ୍ୟାଳୟର ପ୍ରଫେସର ଓ ସହଯୋଗୀ ପ୍ରଫେସର ଏବେ ପିଲାମାନଙ୍କ କାମକୁ ଥିସିସ୍ ଆକାରରେ ଦେଇ ଡ଼ ଏସ୍‌ସି ଡ଼ିଗ୍ରୀ ପାଇଛନ୍ତି । ମୋ ମତରେ ଏଗୁଡ଼ିକ ଜୁଆଚୋରି ଛଡ଼ା ଅନ୍ୟ କିଛି ନୁହେଁ । ଯେଉଁ ଦେଶର ବୈଜ୍ଞାନିକମାନଙ୍କ ସାଧୁତା ଏତେ ନିମ୍ନଧରଣର ମୁଁ କ'ଣ ସେହି ବିଶ୍ୱବିଦ୍ୟାଳୟକୁ ଆସିବାକୁ ଆପଣ କହୁଛନ୍ତି ସାର୍ ? ମୁଁ ବରଂ ଚାକିରି ନକରିବି ଏହିସବୁ ସ୍ଥାନର ଷଡ଼ଯନ୍ତ୍ରରେ କଦାପି ରହିବିନି । ଆମ ଦେଶ ଯେ କେଉଁ ଅନ୍ଧକାର ଯୁଗରେ ଅଛି, ମୁଁ ଭାବି ପାରୁନି ସାର୍ ?"

"ସାର୍, ଫୋନ୍ ଆସିଛି ପୋଲିସ ଷ୍ଟେସନରୁ ।" ରୁମ ଭିତରକୁ ପଶି ଆସି ପି. ଏ. ଖବର ଦେଲା ।

"ମୋ ପାଖକୁ ?"

"ହଁ, ସାର୍, ଆପଣଙ୍କ ପାଖକୁ ।"

ତେବେ ଫୋନ୍‌ଟା ଏଠାକୁ ନେଇଆସ ।

ଅମରେଶ ଫୋନ୍ ଧରିଲା । 'ହଁ, ହଁ, ମୁଁ ଶିକ୍ଷାମନ୍ତ୍ରୀ କହୁଛି ।" ଆଁ, ଆଁ ପୁଷ୍ପା ଆତ୍ମହତ୍ୟା କରିଛି ? ବାଥ୍‌ରୁମ୍‌ରେ ? ଏଇ କିଛି ସମୟ ତଳେ ସେ ଓ ତାର ସ୍ୱାମୀ ଏଠାକୁ ଆସିଥିଲେ । ହଁ, ହଁ ଏହି କିଛିସମୟ ତଳେ, ଆଁ, ଏଠାରୁ ଫେରି ବାଥ୍‌ରୁମ୍‌ରେ ନିଜ ଦେହରେ ପେଟ୍ରୋଲ ଢାଳି ନିଆଁ ଲଗାଇ ପୋଡ଼ି ମରିଛି ପୁଷ୍ପା ?

"ଓଃ, କେତେ ଦୁଃଖର କଥା ସତେ ? ନିଜ ସ୍ୱାମୀଙ୍କ ଅପକୀର୍ତ୍ତି ଜାଣିବା ପରେ ସେ ଆତ୍ମହତ୍ୟା କରିଥିବ ନିଶ୍ଚୟ ! ଝିଅଟା ବଡ଼ ସେନ୍‌ସିଟିଭ ଥିଲା ।

"ସାର୍, କିଏ ଆତ୍ମହତ୍ୟା କଲା ?" ଶଭ୍ରା ବ୍ୟଗ୍ର ହୋଇ ପଚାରିଲା । ବାସନ୍ତୀ ମଧ୍ୟ ବ୍ୟସ୍ତ ହୋଇ ଠିକ୍ ପଚାରିବା ଉପରେ ।

ଏହି କିଛି ସମୟ ତଳେ ପୁଷ୍ପା ସିହ୍ନା ଓ ତା'ର ସ୍ୱାମୀ ମୋ ଠାକୁ ଆସିଥିଲେ, ସ୍ୱାମୀଙ୍କ ନାଁରେ ଏକ ଭିଜିଲାନ୍‌ସ ମୋକଦ୍ଦମା ନେଇ । ମୋକଦ୍ଦମାଟି ଏମିତି ସାଂଘାତିକ ଯେ ମୋ ଠାରୁ କିଛି ସାହାଯ୍ୟ ମିଳିବା ସମ୍ଭବ ହେଲାନି । ସ୍ୱାମୀଙ୍କ ଅପକୀର୍ତ୍ତିରୁ ରକ୍ଷା ପାଇବାପାଇଁ ପୁଷ୍ପା ବାଧହୋଇ ଆତ୍ମହତ୍ୟା କଲା । ବଡ଼ ଦୁଃଖଦ ଘଟଣା ସତେ ! ବଗୃହ ବଡ଼ଆଶାରେ ଧାଇଁଆସିଥିଲା ମୋଠାକୁ । ତୁ ମ ବୋଧହୁଏ ଚିହ୍ନି ନଥିବ ଶୁଭ୍ରା, ପୁଷ୍ପାକୁ । ବିହାରର ଭୂତପୂର୍ବ ଶିକ୍ଷାମନ୍ତ୍ରୀ 'ମିଷ୍ଟର ଧନୁର୍ଦ୍ଧର ସିଂହଙ୍କ ଜ୍ୟେଷ୍ଠା କନ୍ୟା ସେ । ସେ ପାଟନା କଲେଜରେ ଏମ୍. ଏସ. ସି. ପଢ଼ୁଥିଲାବେଳେ ମୁଁ ସେଠି ଅଧ୍ୟାପକ ଥିଲି । ମୋର ଛାତ୍ରୀ ଥିଲା ସେ । ସେ ତୁମଠାରୁ ତେର ସିନିୟର ଥିଲା ।

ଆପଣଙ୍କ ସହିତ ଯାହାଙ୍କ ବିବାହ ପ୍ରସ୍ତାବ ଚାଲିଥିଲା ଆପଣ ଯେତେବେଳେ ଆଇ. ଏ ଏସ୍: ଥିଲେ । ସେହି ଝିଅତ ? ମୁଁ ସେତେବେଳେ ରାମଦାସ୍ କଲେଜରେ ଆଇ. ଏସ. ସି. ପଢ଼ୁଥିଲି ।

"ତୁମେ କେମିତି ସେ ଖବର ପାଇଲ ଶୁଭ୍ରା ! ମୁଁ ଦେଖୁଛି ତୁମେ ବଡ଼ ଓସ୍ତାଦ୍ ଏସବୁ ଖବର ରଖିବାରେ ।

"ସାର୍ ଥିଲି, ବର୍ତ୍ତମାନ ନୁହେଁ । ସାର୍, ମୁଁ ବହୁତ ଖବର ରଖେ । ଖବର ସଂଗ୍ରହ କରିବା ମୋର ଗୋଟିଏ ବଡ଼ ହବି ଥିଲା ସେତେବେଳେ ।

"ଆପଣଙ୍କ ମନେଥିବ ସାର୍, ଆପଣ ମୋତେ ଆରେଷ୍ଟ କରି ଯେତେବେଳେ ଥାନା ହାଜତରେ ରଖିଦେଲେ, ଆପଣ କେଉଁଠି ରହନ୍ତି, ଆପଣ କାହା ଧିଅ କେଉଁ ଝିଅ ଆପଣଙ୍କୁ ବିଭାହେବା ପାଇଁ ପ୍ରସ୍ତାବ ଅଛି, ସେହି ସବୁର ଠିକଣାଖି ଖବର ସେହିଦିନ ସନ୍ଧ୍ୟା ସୁଦ୍ଧା ସଂଗୃହିତ ହୋଇ ମୋ ଠାରେ ପହଞ୍ଚି ଯାଇଥିଲା ।"

"ତୁମେ ଏତେ ଓସ୍ତାଦ୍ ଝିଅ ଶୁଭ୍ରା ? ମୁଁ ଜାଣିନଥିଲି ।

"ନାଁ, ସାର୍ ଫେର୍ ଭୁଲକଲେ । ମୁଁ ଥିଲି, ବର୍ତ୍ତମାନ ନୁହେଁ ।"

"ଏହା କ'ଣ ସତ, ତୁମେ ଶୁଭ୍ରା ଦେବୀଙ୍କୁ ଆରେଷ୍ଟକରି ଥାନା ହାଜତରେ ରଖିଦେଇ ଥିଲ ?" ବଡ ଆଶ୍ଚର୍ଯ୍ୟ ହୋଇ ଅମରେଶଙ୍କୁ ପଚାରିଲା ବାସନ୍ତୀ ।

ହଁ, ବାସନ୍ତୀ, ତୁମେ ଶୁଭ୍ରାକୁ ବର୍ତ୍ତମାନ ଯେମିତି ଶିଷ୍ଟ, ଭଦ୍ର ଦେଖୁଛ ଶୁଭ୍ରା ତା'ର କଶୋରୀ ବୟସରେ ସେମିତି ନଥିଲା । ପୋଷାକପତ୍ର ପିନ୍ଧିବାରେ ସେ ସେତେ ଭଦ୍ର ନଥିଲା । ଧନୀର ଦୁଲାଳୀ ସେ । ନିହାତି ଆଧୁନିକ ଧରଣରେ ଆମେରିକାନ୍ ପୋଷାକ ପିନ୍ଧି କଲେଜକୁ ଆସିବା ଥିଲା ତା'ର ଏକ ବଦଭ୍ୟାସ । ସେଥିପାଇଁ ଗ୍ରାମ୍‌ଦାସ୍ କଲେଜରେ ହୋଇଥିଲା ଏକ ଷ୍ଟ୍ରାଇକ୍ । ମୁଁ ସେତେବେଳେ ଥିଲି ପାଟନାରେ ଆଡ଼ିସନାଲ ଜିଲ୍ଲାମାଜିଷ୍ଟ୍ରେଟ । ଅଶ୍ଳୀଳ ପୋଷାକ ପିନ୍ଧିଥିବା ଅପରାଧରେ ଶୁଭ୍ରାକୁ ଆରେଷ୍ଟ କରି ଥାନା ହାଜତରେ ପକାଇଦେଇଥିଲି । ତା' ନ ହୋଇଥିଲେ ଶୁଭ୍ରାର ପରିବର୍ତ୍ତନ ଆସି ନଥାନ୍ତା ମନରେ, କଲେଜ ଷ୍ଟ୍ରାଇକ୍ ଭାଙ୍ଗି ନଥାନ୍ତା ।

"ମୋତେ ଆପଣ ଆଜିର ଶୁଭ୍ରାଭାବରେ ଦେଖି ନଥାନ୍ତେ ବାସନ୍ତୀ ଦେବୀ ।"

ଅମରେଶ ମୁହଁରୁ କଥା ଛଡ଼ାଇ ନେଇ କହିଲା ଶୁଭ୍ରା, "ମୁଁ ବର୍ତ୍ତମାନ ବୁଝୁଛି ସାର୍ । ଆପଣ ମୋତେ ସେଦିନ ଆରେଷ୍ଟ କରି ହାଜତରେ ପକାଇ ଦେଇ ନ ଥିଲେ ମୁଁ ଠିକ୍ ବାଟକୁ ଆସି ପାରି ନ ଥାନ୍ତି । ମୁଁ ଖାଲି ଆପଣଙ୍କଠାରୁ ପ୍ରାଥମିକ ଗବେଷଣା ଟ୍ରେନିଂ ପାଇନି ସାର୍, ମୋତେ ଆଜି ମଣିଷ କରି ଗଢ଼ି ତୋଳିବାରେ ଆପଣଙ୍କ ଅବଦାନ ଅସୀମ । ମୁଁ ଆଜି ଯଦି ମଣିଷ ହୋଇଥାଏ କି ବୈଜ୍ଞାନିକ ହୋଇଥାଏ ତେବେ ତାହା ପୂରାପୂରି ଆପଣଙ୍କ ଯୋଗୁଁ । ଆନ୍ତର୍ଜାତିକ କ୍ଷେତ୍ରରେ ମୁଁ ଆଜି ଯେଉଁ ସବୁର ସମ୍ମାନ ପାଇଛି, ସେସବୁ ଆପଣଙ୍କ ଯୋଗୁଁ ସାର୍ । ଆପଣ ସେ ଶୁଭ୍ରାର ମୃତ ଶରୀରଉପରେ ଗଢ଼ିତୋଳିଥିଲେ ଯେଉଁ ନୂତନ ଶୁଭ୍ରା, ସେହି ସୃଷ୍ଟିର ସ୍ରଷ୍ଟାଭାବରେ ମୋର ସମସ୍ତ ସମ୍ମାନ ଆପଣଙ୍କ ପାଦତଳେ ଲୋଟି ପଡ଼ିବା କଥା ।

କିଛି ସମୟ ପରେ, "ପୂର୍ଣ୍ଣିମାଦେବୀ କାହିଁ କି ଆତ୍ମହତ୍ୟା କଲେ ?" ପଚାରିଲା ଶୁଭ୍ରା ।

"ତୁମେ ତ ଜାଣିଛ ଶୁଭ୍ରା, ତାଙ୍କ ବାପା ଖୋଜିଖୋଜି ଝିଅକୁ ଜଣେ ଦକ୍ଷ ଆଇ.ଏ.ଏସ. ଅଫିସରଙ୍କୁ ବିବାହ ଦେଇଥିଲେ । ସେହି ଆଇ.ଏ.ଏସ. ଅଫିସରଙ୍କ ବିରୁଦ୍ଧରେ ବହୁଦିନ ଧରି ଭିଜିଲାନ୍ସ ବିଭାଗ ଲାଗିଥିଲା । ସେ ବର୍ତ୍ତମାନ ଯେତିକି ଧନର ମାଲିକ ହୋଇଛନ୍ତି, ତାଙ୍କ ଜୀବନକାଳ ଭିତରେ ସେ ସେତେ ଧନ କଦାପି ନ୍ୟାୟ ଭାବରେ ଅର୍ଜନ କରି ପାରି ନ ଥିବେ । ତେଣୁ ପ୍ରଶ୍ନ ହେଲା ସେ ଏତେ ଧନ ଆଣିଲେ କେଉଁଠୁ ? ଚାକିରୀକାଳ ଭିତରେ ସେ ନିଶ୍ଚୟ ସରକାରୀ ଧନ ଆତ୍ମସାତ କରିଛନ୍ତି । ତା' ଯଦି ପ୍ରମାଣିତ ହୋଇଯାଏ, ତେବେ ଚାକିରି ଯିବ ଓ ତାପରେ ଜେଲ୍ ଭୋଗିବେ ।

ନିଜକୁ ରକ୍ଷା କରିବା ପାଇଁ ଏହି ଗଚ୍ଛିତ ଧନ ସେ କେମିତି ପାଇଲେ ତାହାଁର ଯେଉଁ କୈଫିୟତ ଦେଲେ, ଶୁଣିଲେ ତୁମେ କାନରେ ହାତଦେବ ଶୁଭ୍ରା । ତୁମେ ଶୁଣି ପାରିବନି ସେ କୈଫିୟତ ।

"ଆଃ, ଏମିତି !

"ହଁ, ସେ କୈଫିୟତ ଦେଲେ, ତାଙ୍କ ସ୍ତ୍ରୀ ପୁଷ୍ପା ରାତିରେ ବିଭିନ୍ନ ହୋଟେଲକୁ କଲ୍‌ଗାର୍ଲ'ଭାବରେ ଯାଇ ଏହି ଧନ ସଂଗ୍ରହ କରିଛି । ପୁଣି ହିସାବଦେଲେ, ତାଙ୍କ ସ୍ତ୍ରୀ ପୁଷ୍ପା ଏହି କାର୍ଯ୍ୟ ଆରମ୍ଭ କରିଥିଲେ ବିବାହର ବହୁ ପୂର୍ବରୁ । ସେ ସେଦିନରୁ ସଞ୍ଚିତ ଗୁପ୍ତଧନ ତାଙ୍କୁ ଦେଇଥିଲେ ବିବାହର ପରେ ।

ଏହି କୈଫିୟତକୁ କ'ଣ ଭିଜିଲାନ୍‌ସ ବିଭାଗ ବିଶ୍ୱାସ କଲା ?

କେମିତି ବା କରିଥାନ୍ତା ! ଜଣେ ମନ୍ତ୍ରୀଙ୍କ ଝିଅ, ପୁଣି ଉଚ୍ଚ ମେଧାବୀ ଛାତ୍ରୀ, ସେ କ'ଣ କେବେ ଏଭଳି ହୀନ ଜୀବନଯାପନ କରିପାରେ ? ପୁଷ୍ପା ମୋର ଛାତ୍ରୀ, ଅତି ଉଚ୍ଚ ଭଦ୍ର ଘରର ଝିଅ ବୋଲି ମୁଁ ତାକୁ ଜାଣେ । ଏ ପରିସ୍ଥିତିରେ ଏଭଳି ଏକ ଡାହା ମିଛ କୈଫିୟତକୁ କିଏବା କେମିତି ଗ୍ରହଣ କରିବ ?

ଏଇ କିଛିଦିନ ତଳେ ପୁଷ୍ପା ଓ ତା'ର ସ୍ୱାମୀ ମୋଠାକୁ ଆସିଥିଲେ । ମୁଁ ତାଙ୍କ କୈଫିୟତକୁ ଯେତେବେଳେ ପଢ଼ି ଶୁଣାଇଦେଲି, ପୁଷ୍ପାକୁ ବଡ଼ ବାଧିଲା ଏହି କୈଫିୟତ । ସେ ପାଗଳଭଳି ହୋଇଗଲା ଏହି କୈଫିୟତ ଶୁଣୁ ଶୁଣୁ ।

"ଏଭଳି କୈଫିୟତ କାହାକୁ ନ ବାଧିବ ସତେ ? ଓଃ ମଣିଷ ନିଜ କୁକର୍ମକୁ ଘୋଡ଼ାଇବା ପାଇଁ ନିଜ ଧର୍ମପତ୍ନୀର ମାନ ଇଜ୍ଜତକୁ ଏମିତି ବଳି ଦେଇପାରେ ? ଓଃ ସେ ମଣିଷ ନା ପିଶାଚ ? ଏତେବଡ଼ ଡାହା ମିଛ କଥା ନିଜ ସ୍ୱାମୀ ତାଙ୍କ ସ୍ତ୍ରୀଙ୍କ ନାଁରେ ଯେ କହି ପାରନ୍ତି, ମୁଁ ଧାରଣା କରି ପାରୁନି ସାର୍ ।

"ଏଭଳି ଦୁର୍ନାମକୁ ନେଇ ପୁଷ୍ପା କେମିତି ଜୀବନଧାରଣ କରିଥାନ୍ତା କହିଲ ଶୁଭ୍ରା ? ସ୍ୱାମୀ ପାପର ପ୍ରାୟଶ୍ଚିତ କଲା ନିଜ ଜୀବନକୁ ଆହୁତି ଦେଇ । ପୁଷ୍ପାର ସ୍ୱାମୀ ମଧ୍ୟ ଇହଧାମରେ ନାହାନ୍ତି । ପୁଷ୍ପାର ଆତ୍ମହତ୍ୟା ପରେ ସେ ତାଙ୍କ ଚାକିରିରୁ ବରଖାସ୍ତ ହେଲେ । ଆୟକର ବିଭାଗ ତାଙ୍କର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କଲାପରେ ସେ ନୈରାଶ୍ୟରେ ବେକରେ ବିଜୁଳି ତାର ଗୁଡ଼ାଇ ଆତ୍ମହତ୍ୟା କଲେ । ଆଇ.ଏ.ଏସ. କୋଇଁ ପାଇଁ ଯେଉଁ ବାପମା

ପାଗଳ ହୁଅନ୍ତି, ତାର ପରିଣତି ହୁଏ ଏହିଭଳି ଶୋଚନୀୟ ଭାବରେ । ବଡ଼ ଦୁଃଖଦାୟକ ଏଇ ଘଟଣା । ଲୋକେ ଯେତେବେଳେ ଅନ୍ୟାୟରେ ଧନ ଉପାର୍ଜନ କରନ୍ତି, ସେମାନେ ଆଗପଛ କିଛି ବିଚାର ନ କରି ଅସତ୍ ଧନ ସଂଗ୍ରହରେ ଲାଗି ପଡ଼ନ୍ତି । ଏହାର ଫଳ ଯେ ଦିନେ ବିଷମୟ ହେବ, ସେ ଆଡ଼କୁ ସେମାନଙ୍କର ଦୃଷ୍ଟି ନଥାଏ ।

ଏଇ କିଛି ଦିନ ତଳେ ମୋର ଆଉ ଜଣେ ଛାତ୍ରୀ ଆତ୍ମହତ୍ୟା କରିଥିଲା, ଅତି ନିର୍ମମ ଭାବରେ ଗଙ୍ଗାନଦୀରେ ଝାସ ଦେଇ । ତାଙ୍କ ସ୍ୱାମୀ ଜଣେ ଆଇ.ଏ.ଏସ ଅଫିସର । ଅତ୍ୟଧିକ ବାଉଗୃଷା, ଲାଞ୍ଚଖୋର ଅସତ୍ ଚରିତ୍ର ବୋଲି ଜାଣିଲା ପରେ ସେ ଆତ୍ମହତ୍ୟା କଲା । ତୁମେ ତାଙ୍କୁ ଜାଣିଥିବ ଶୁଭ୍ରା । ସେ ଆମ ରାଜ୍ୟର ଭୂତପୂର୍ବ ଡ଼ି.ପି.ଆଇ ଡ଼କ୍ଟର କାନ୍ତା ପ୍ରସାଦଙ୍କ କନ୍ୟା ସ୍ମିତା । ସେ ମଧ୍ୟ ପୁଷ୍ପାର ସହପାଠିନୀ ଥିଲା ।

"ହଁ ସାର୍, ଜାଣେ । ତାଙ୍କ ସହିତ ଆପଣଙ୍କର ବିଭାହର ପ୍ରସ୍ତାବ ମଧ୍ୟ ଶୁଣାଥିଲା ସେ ସମୟରେ ।

"ତୁମେ ସେ ଖବର ବି ରଖିଛ ? ତୁମକୁ ଆଉ ପାରି ହେବନି ଦେଖୁଛି । ତୁମେ ଭାରି ଦୁଷ୍ଟ ଶୁଭ୍ରା ।

"ନାଁ ସାର୍, ଫେର୍ ଭୁଲ କଲେ । ଏକସମୟରେ ଥିଲି, କିନ୍ତୁ ବର୍ତ୍ତମାନ ନୁହେଁ ।

"ସ୍ମିତାର ସ୍ୱାମୀ ମିଷ୍ଟର ଓଝା ଚାକିରିରୁ ବରଖାସ୍ତ ହେଲାପରେ ପାଗଳ ହୋଇଯାଇ ଡ଼ାକ୍ତରଖାନାରେ ଚିକିତ୍ସିତ ହେଉଥିଲେ । ସେ ବର୍ତ୍ତମାନ ଭଲ ହେଲେଣି କି କଅଣ ଜାଣିନି । ଜୀବନ ସାରା ସେ ଯେଉଁ ଅକ୍ଷମଣୀୟ ଅପରାଧ କରିଛନ୍ତି, ସେଥିଯୋଗୁଁ ସେ ଯେ ପାଗଳରୁ ଭଲ ହେବେ ଏଥିରେ ମୋର ଯଥେଷ୍ଟ ସନ୍ଦେହ ଅଛି ।

ଅମରେଶ, ଶୁଭ୍ରା କଥାବାର୍ତ୍ତା ହେଉଥାନ୍ତି, ହଠାତ୍ ବାହାରେ ଏକ ଗଣ୍ଡଗୋଳ ଶୁଣାଗଲା । 'ହେଇ ପାଗଳ ଅଇଲା', 'ହେଇ ପାଗଳ ଅଇଲା', ପିଲାମାନେ ବଡ଼ ଜୋରରେ ପାଟି କରୁଥାନ୍ତି । ପାଟି ସଙ୍ଗେ ସଙ୍ଗେ ଢେ଼ଲା, ଡା ଢେ଼ଲା ପଥର ପଡ଼ିବାର ଆବାଜ । ଅମରେଶ ଓ ଶୁଭ୍ରା ଦୁଆର

ପାଖକୁ ଯାଇ କ'ଣ ହେଲା ଅନେଇଲେ ବେଳକୁ ପାଗଳାଟାଏ ପିଲାଙ୍କ ଠାରୁ ଢେଲା ମାଡ଼ ଖାଇବା ଭୟରେ ମନ୍ତ୍ରୀଙ୍କ ଗେଟ୍ ଭିତରକୁ ପଳାଇ ଆସୁଛି ଢେଲା ମାଡ଼ରୁ ରକ୍ଷା ପାଇବା ପାଇଁ । ଏହି ଗଣ୍ଡଗୋଳ ଶୁଣି ବାସନ୍ତୀ ମଧ୍ୟ ଘର ଭିତରୁ ଦାଣ୍ଡ ଦୁଆରକୁ ଚାଲି ଆସିଲା ଗଣ୍ଡଗୋଳ କ'ଣ ହେଉଛି ଜାଣିବା ପାଇଁ । ସେ ଆସି ବାରଣ୍ଡାରେ ଠିଆ ହୋଇଛି କି ନାହିଁ ପାଗଳଟା ଗେଟ୍ ଆଡ଼ୁ ଦୌଡ଼ି ଆସି ବାସନ୍ତୀର ଗୋଡ଼ ତଳେ ପଡ଼ିଯାଇ କହିଲା "ମା ମୋତେ ରକ୍ଷା କର, ରକ୍ଷାକର ମା, ଏମାନେ ମୋତେ ମାରି ପକାଇବେ ।"

"ଏ ପାଗଳଟା କେଉଁଠୁ ଆସିଲା ? ହଠାତ୍ ଚିତ୍କାର କରିଉଠିଲା ବାସନ୍ତୀ । ସଙ୍ଗେ ସଙ୍ଗେ ଚପରାଶୀ ମାନଙ୍କୁ ଡାକିଲା ଏ ପାଗଳଟାକୁ ଗେଟ୍ ବାହାରକୁ ବାହାର କରିଦେବା ପାଇଁ । ପାଗଳଠାରୁ ଦୂରେଇ ଯାଇ ଶଶ୍ରୀ ଓ ଅମରେଶ ଯେଉଁଠି ଠିଆ ହୋଇଥିଲେ ସେହିଠି ଯାଇ ଠିଆ ହେଲା ବାସନ୍ତୀ ।

ଅମରେଶ ଚିହ୍ନିଲା, ଏ ପାଗଳ ଆଉ କେହି ନୁହେଁ, ସିଂହଭୂମ ଜିଲ୍ଲାର ପୂର୍ବ ଜିଲ୍ଲାପାଳ ମିଷ୍ଟର ପ୍ରେମନାଥ ଓଝା । ହସପିଟାଲରୁ ସମସ୍ତଙ୍କ ଅଲକ୍ଷ୍ୟରେ ପଳାଇ ଆସି ସମ୍ଭବତଃ ରାସ୍ତାରେ ବୁଲୁଛି ।

ବାସନ୍ତୀକୁ ଲକ୍ଷ୍ୟ କରି ଅମରେଶ ପଚାରିଲା, "ତୁମେ ଏହାଙ୍କୁ ଚିହ୍ନି ପାରୁଛ ବାସନ୍ତୀ, ଏ କିଏ ?

ବାସନ୍ତୀ ଅମରେଶ ମୁହଁକୁ ବଲବଲ କରି ଅନାଇ ରହିଲା ।

"ଏ ହେଉଛନ୍ତି, ସେହି ସିଂହଭୂମ ଜିଲ୍ଲାର ପୂର୍ବ ଜିଲ୍ଲାପାଳ ମିଷ୍ଟର ପ୍ରେମନାଥ ଓଝା ।"

"ଆଁ, ମିଷ୍ଟର ଓଝା ? ଚମକି ପଡ଼ିଲା ବାସନ୍ତୀ ।

ଓଃ, କି ଦୁରବସ୍ଥା ସତେ ! ଦେହରେ କିଛି ନାହିଁ, ଛିଣ୍ଡା ପେଣ୍ଟ, ଛିଣ୍ଡା ସାର୍ଟ ଟାଏ । ଦେହ ସାରା ଧୂଳି ଧୂସର । ଠାଏ ଠାଏ ଦେହରେ ଢେଲା ମାଡ଼ର ଚିହ୍ନ । କେଉଁଠୁ କେଉଁଠୁ ରକ୍ତ ବୋହୁଛି ।

ଗେଟ୍ ପାଖରେ ପିଲମାନେ ଠିଆ ହୋଇ ପାଟି କରୁଥାନ୍ତି "ଏ ପାଗଳଟାକୁ ବାହାର କରି ଦିଅନ୍ତୁ ଆଜ୍ଞା । ସେ ସେଠି ଅଇଁଠା ପତର ଗୋଟୁଥିଲା । କୁକୁର ଠାରୁ ଅଇଁଠା ପତର ଛଡ଼ାଇ ନେଇ ଇଏ ଚାଟୁଛି । ତାକୁ ବାହାର କରି ଦିଅନ୍ତୁ, ସେଠ । ସେଠି ତାକୁ ବସିବାକୁ ଦିଅନ୍ତୁନି ଆଜ୍ଞା ।"

ବାସନ୍ତୀ ପାଗଳଟାକୁ ପୁଣି ଥରେ ଅନାଇଲା । ପାଗଳର ଫେର ସେହି କାକୁତି ମିନତି । ମୋତେ ରକ୍ଷା କର ମା, "ମୋତେ ରକ୍ଷାକର, ମୋତେ ଏମାନେ ମାରି ପକାଇବେ ।"

ବାସନ୍ତୀ ଆଖିରୁ ଦୁଇଟୋପା ଉଷ୍ମ ଅଶ୍ରୁ ଗଡ଼ିପଡ଼ିଲା ବାରଣ୍ଡାର ସେଇ ସିମେଣ୍ଟ ଚଟାଣ ଉପରେ । ଏ ଖାଲି ଲୋତକ ନୁହେଁ ପ୍ରତିହିଂସାର ଲୋତକ । ଏ ଲୋତକ ହେଉଛି ଦୟା ଓ କାରୁଣ୍ୟର ଲୋତକ । ମନେ ମନେ ଭାବୁଥାଏ ବାସନ୍ତୀ, କି ଅତ୍ୟାଚାରୀ ନ ଥିଲା ଏହି ଓଝା ? ଆଜି କି ଦୁର୍ଦ୍ଦଶା ନ ହେଉଛି ଇଏ ? ସ୍ତ୍ରୀ ଗଲା, ପୁତ୍ରକନ୍ୟା ଗଲେ, ଘରଦ୍ୱାର ଗଲା, ଶେଷରେ ପାଗଳ ହୋଇ ଅଇଁଠାପତ୍ର ଗୋଟୁଛି । ନାରୀହରଣ, ନାରୀ ଧର୍ଷଣ, ଲୁଣ୍ଠନ, ଲାଞ୍ଚ ଆଦି କୁକର୍ମରେ କି ସିଦ୍ଧହସ୍ତ ନଥିଲା ଇଏ ? ଏହି କୁକର୍ମର ଫଳ ତାକୁ ଯେ ଦିନେ ଏମିତି ଭାବରେ ଭୋଗିବାକୁ ପଡ଼ିବ, ଜାଣିଥିଲେ, ହୁଏତ ବାଟୁଆ ଏହି ଅବାଟକୁ ଆସିନଥାନ୍ତା । ଓଃ, କି ଦଣ୍ଡ ଭଗବାନଙ୍କ ବିଚାରରେ ସତେ ?

ହସିଲା ଶୁଭ୍ରା, ପାଗଳର କାକୁତି ମିନତି ଶୁଣି ଏକ ଦୟାମୟୀ ହସ । "ଭଗବାନ ଏହାକୁ କ୍ଷମା ଦେଇପାରିବେନି ବାସନ୍ତୀ ଦେଇ । ନିଜ କୁକର୍ମରୁ ଇଏ ଏମିତି ତିଳେ ତିଳେ କଷ୍ଟପାଇ ମରିବେ । ଭଗବାନଙ୍କ ବିଚାରରେ ଏହାଙ୍କର ଦୈହିକ କଷ୍ଟ ଶେଷ ନହେଲା ପର୍ଯ୍ୟନ୍ତ ଏମାନଙ୍କଠାକୁ ମୃତ୍ୟୁ ଆସିବନି । ଏହିଭଳି ପାପପାଇଁ ମଣିଷ ଦଣ୍ଡଠାରୁ ଢ଼େର ଅଧିକ ନିର୍ମମ ଭଗବାନଙ୍କ ଦଣ୍ଡ ।"

× × ×

ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରେ କେବିନେଟ୍ ମିଟିଂ । ସବୁ ମନ୍ତ୍ରୀ, ଉପମନ୍ତ୍ରୀ,ରାଷ୍ଟ୍ରମନ୍ତ୍ରୀ ନିମନ୍ତ୍ରିତ ହୋଇ ଏଥିରେ ଯୋଗଦେଇଥାନ୍ତି । ସଭାପତିତ୍ୱ କରୁଥାନ୍ତି ସ୍ୱୟଂ ମୁଖ୍ୟମନ୍ତ୍ରୀ ମିଷ୍ଟର ସିଂହ । କେତେଗୁଡ଼ି ଗୁରୁତ୍ୱପୂର୍ଣ୍ଣ ବିଷୟ ଉପରେ କେବି-ନେଟ୍‌କୁ ସେଦିନ ସିଦ୍ଧାନ୍ତ ନେବାକୁ ପଡ଼ିବ । ସାରା ରାଜ୍ୟରେ ଟେକ୍‌ନୋକ୍ରାଟ୍ ଓ

ବ୍ୟୁରୋକ୍ରାଟ୍ ନେଇ ଯେଉଁ ବାଦାନୁବାଦ ଚାଲିଥିଲା ତା'ର ଏକ ସମାଧାନ ସେହି ମିଟିଂ ରେ ହୋଇଯିବାର ଆଶା ଥାଏ । ଗତ ସରକାର ବେଳୁଁ ରାଜ୍ୟରେ ଦେଖାଦେଇଛି ଏହି ବାଦାନୁବାଦ ।

ସେ ସରକାର ରାଜ୍ୟର ସବୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ଭଲ ଶାସନ ପରିଚାଳନା ପାଇଁ ଆଇ.ଏ.ଏସ୍. ଅଫିସରମାନଙ୍କୁ ମୁତୟନ କରିଥିଲେ । ଏପରିକି ସ୍ୱାସ୍ଥ୍ୟବିଭାଗ, ମତ୍ସ୍ୟ ବିଭାଗ ପ୍ରଭୃତି ବହୁ ବିଭାଗର ନିର୍ଦ୍ଦେଶକ ଭାବରେ ସେ ସରକାର ଆଇ.ଏ.ଏସ.ମାନଙ୍କୁ ନିଯୁକ୍ତ ଦେଇଥିଲେ । ଏହା ଫଳରେ ବହୁ ବିଭାଗରେ ନାନା ଅସନ୍ତୋଷ ଓ ଆନ୍ଦୋଳନ ଦେଖା ଦେଇଥିଲା । ସେମାନଙ୍କର ଦାବୀ ବିଭାଗୀୟ ମୁଖ୍ୟଭାବରେ ବିଭାଗୀୟ ବିଶେଷଜ୍ଞମାନେ ରହିବା କଥା, ଆଇ· ଏ· ଏସ୍·ମାନେ ରହିବା ଉଚିତ ନୁହେଁ । ଆଜିକାର ମିଟିଂରେ ସେ ସମ୍ପର୍କରେ ଆଲୋଚିତ ହୋଇ ସିଦ୍ଧାନ୍ତ ଗ୍ରହଣ କରାଯିବ ।

ମୁଖ୍ୟମନ୍ତ୍ରୀ ସମସ୍ୟାଟିକୁ ପ୍ରାଞ୍ଜଳ ଭାବରେ ବୁଝାଇ ଦେଲେ । ତତ୍ପରେ ବିଭିନ୍ନ ସଭ୍ୟମାନଙ୍କୁ ସେମାନଙ୍କ ମତାମତ ବ୍ୟକ୍ତ କରିବାପାଇଁ କୁହାଗଲା । ସମସ୍ତେ ଖୋଲାମନ ନେଇ ଏହା ଉପରେ ଯେମିତି ଆଲୋଚନା କରନ୍ତି ଅନୁରୋଧ କରାଗଲା ।

ମେମ୍ବରମାନେ ଜଣକପରେ ଜଣେ ସେମାନଙ୍କ ମତାମତ ବ୍ୟକ୍ତ କଲେ । ଚାହୁଁ ଚାହୁଁ ମେମ୍ବରମାନେ ଦୁଇଦଳ ର ବିଭକ୍ତ ହେଲାଭଳି ଜଣାପଡ଼ିଲା । ଦଳେ ହେଲେ ଆଇ, ଏ, ଏସ, ସପକ୍ଷବାଦୀ, ଦଳେ ବିପକ୍ଷବାଦୀ । ପ୍ରତ୍ୟେକ ପ୍ରତ୍ୟେକଙ୍କର ମତକୁ ଖୁବ୍ ଦୃଢ଼ଭାବରେ ଉପସ୍ଥାପିତ କରିବାକୁ ଚେଷ୍ଟା କଲେ ।

ଅମରେଶ ସେ ପର୍ଯ୍ୟନ୍ତ ଭିନ୍ନ ଭିନ୍ନ ମେମ୍ବରଙ୍କ ମତ ଶୁଣୁଥାଏ, ନିଜ ମତ ବ୍ୟକ୍ତ କରିନଥାଏ । ସମସ୍ତେ କହିସାରିଲା ପରେ ତାକୁ ଅନୁରୋଧ କରାଗଲା ନିଜ ମତବ୍ୟକ୍ତ କରିବା ପାଇଁ ।

ସମସ୍ତେ ଜାଣନ୍ତି ଅମରେଶ କିଛିଦିନ ତଳେ ଆଇ·ଏ·ଏସ୍· ଥିଲା । ଇସ୍ତଫା ଦେଇ ଚାଲିଆସିଛି ସେ ଚାକିରିରୁ । ଟେକ୍ନୋକ୍ରାଟର ଭୂମିକା ତାକୁ ଭଲଭାବରେ ଜଣା, କାହିଁକନା ସେ ଜଣେ ବଡ଼ ବୈଜ୍ଞାନିକ । ତେଣୁ ତା ମତାମତ ନିଶ୍ଚୟ ଗୁରୁତ୍ୱପୂର୍ଣ୍ଣ ହେବ ଓ ସମସ୍ୟାଟିର ସମାଧାନ ଦିଗରେ ନିଶ୍ଚୟ ଖୁବ୍ ସହାୟକ ହେବ !

ସେ ଆରମ୍ଭ କଲେ, "ଦେଖନ୍ତୁ, ସବୁ ଉଚ୍ଚ ପଦବୀରେ ଆଇ.ଏ.ଏସ୍.ମାନଙ୍କୁ ରଖିବା ସପକ୍ଷରେ ମୁଁ ମୋଟେ ନୁହେଁ । ଯେଉଁମାନେ ସେମାନଙ୍କୁ ସେସବୁ ସ୍ଥାନରେ ରଖିବାକୁ ଚାହାନ୍ତି, ସେମାନଙ୍କ ଏକମାତ୍ର ଯୁକ୍ତି ହେଉଛି ସେମାନେ ରହିଲେ ଅଫିସ ପରିଚାଳନା ଠିକ୍‌ଭାବରେ ଚାଲିବ । ତେବେ ଆମର ଗୋଟିଏ କଥା ମନେରଖିବା ଉଚିତ ଅଫିସ ଠିକ୍‌ଭାବରେ ଚାଲିଲେ କି କାଗଜପତ୍ର ଠିକ୍ ଭାବରେ ରହିଲେ କି ଶାସନ ସୁଶୃଙ୍ଖଳ ହେଲେ କ'ଣ ଦେଶକୁ ପ୍ରକୃତରେ ଉନ୍ନତି ପଥରେ ଆଗେଇ ନେଇହେବ ? ଦେଶର ଉନ୍ନତିପାଇଁ ପ୍ରତି ବିଭାଗରେ କି କି ଯୋଜନା ତିଆରି ହେବ ଓ ସେଗୁଡ଼ିକ କେମିତି କାର୍ଯ୍ୟକାରୀ ହେବ ତା ଉପରେ ଦୃଷ୍ଟି ଦେବା କଥା, ସେଥିପାଇଁ ବିଶେଷଜ୍ଞ ନ ହେଲେ ଏଗୁଡ଼ିକୁ କରିବ କିଏ ?

ଆଇ.ଏ.ଏସ. ମାନେ କ'ଣ ସବୁ ବିଷୟରେ ବିଶେଷଜ୍ଞ ? ସେମାନେ କ'ଣ ସବୁ ଯୋଜନା ତିଆରି କରିପାରିବେ ? ଅବଶ୍ୟ କେତେକ ସ୍ଥାନରେ ଦେଖା-ଯାଇଛି ଏହି ଆଇ.ଏ.ଏସ. ମାନେ ସେହି ବିଭାଗର କେତେ ଜଣ ନିକୃଷ୍ଟ ଧରଣର କାନକୁହାଙ୍କୁ ଧରି ଏକ ତୃତୀୟ ଶ୍ରେଣୀର ଯୋଜନା ତିଆରି କରନ୍ତି ଓ ତାକୁ ନିଜ ତିଆରି ଯୋଜନା ବୋଲି କହି କାର୍ଯ୍ୟକାରୀ କରନ୍ତି । ତେଣୁ ସେ ପରିସ୍ଥିତିରେ ଏହି ଯୋଜନା ନିକୃଷ୍ଟ ଧରଣର ନହେବ କେମିତି ?

ମୋ ମତରେ ପ୍ରତ୍ୟେକ ବିଭାଗର ମୁଖ୍ୟ ବିଭାଗୀୟ ବିଶେଷଜ୍ଞ ରହିବା ଉଚିତ୍ । ପ୍ରତ୍ୟେକ ବିଭାଗରୁ ଭଲ ଦକ୍ଷ ଅଫିସରମାନଙ୍କୁ ସର୍ବଭାରତୀୟ ଭିତ୍ତିରେ ବାଛି ସେମାନଙ୍କୁ ଆଇ.ଏ.ଏସ୍. ଭଳି ସର୍ବଭାରତୀୟ କ୍ୟାଡ଼ରରେ ରଖାଯିବା ଉଚିତ୍ । ଆଇ. ଏ. ଏସ. ମାନଙ୍କୁ ଯେମିତି ପ୍ରଥମରୁ ନାନାପ୍ରକାର ତାଲିମ ଦିଆଯାଇ ଶାସନ ପରିଚାଳନାରେ ଟ୍ରେନିଂ ଦିଆଯାଏ, ଏମାନଙ୍କୁ ସେମିତି ତାଲିମ ଦିଆଯିବା ଦରକାର । ଏହି ତାଲିମ ପ୍ରାପ୍ତ ଅଫିସରମାନେ ବିଭିନ୍ନ ବିଭାଗର ମୁଖ୍ୟ, ଉପମୁଖ୍ୟ ଭାବରେ ଯୋଗଦେବା ଉଚିତ୍ ।

ଏହିମାନେ ମଧ୍ୟ ସର୍ବଭାରତୀୟ ସ୍ତରରେ ବଦଳି ହୋଇ ବିଭିନ୍ନ ରାଜ୍ୟରେ ରହିବା ଦରକାର । ସେମାନେ ଗୋଟିଏ ରାଜ୍ୟରେ ପୁରାପୁରି ନରହି ଭିନ୍ନ ଭିନ୍ନ ରାଜ୍ୟକୁ ସେହି ସେହି ବିଭାଗରେ ବଦଳି ହୋଇ ନାନା ଅଭିଜ୍ଞତା ଅର୍ଜନ କରିବା ବାଞ୍ଛନୀୟ । ଏହି ମାନେ ଯେ କେବଳ ବିଭିନ୍ନ ବିଭାଗର ନିର୍ଦ୍ଦେଶକ ପଦବୀରେ ରହିବେ ତା' ନୁହେଁ, ସେମାନେ ମଧ୍ୟ ବିଭାଗୀୟ ସେକ୍ରେଟେରୀ ପଦବୀରେ ରହି ବିଶେଷଜ୍ଞ ଭାବରେ ସେହି ବିଭାଗର ଶାସନ ପରିଚାଳନା କରିବେ ।

ଆଇ· ଏ· ଏସ·ମାନଙ୍କର ଯେଉଁ ସ୍ତରରେ ପଦୋନ୍ନତି ହୁଏ, ଏମାନଙ୍କର ଠିକ୍ ସେହି ସ୍ତରରେ ପଦୋନ୍ନତି ହେବା ଉଚିତ୍ । ଏହିମାନେ ହେଲେ ଆମ ଦେଶର ଟେକ୍ନୋକ୍ରାଟ । ଏମାନେ ବିଭାଗୀୟ ବିଶେଷଜ୍ଞମାନଙ୍କ ଭିତରୁହିଁ ବଛା ହେବେ ।

ମୁଁ ଅବଶ୍ୟ ଜାଣେନି, ଆପଣମାନେ ମୋ ମତ ସହିତ ଏକମତ ହେବେ କି କିଅଣ । ଆପଣମାନେ ଯଦି ଏକମତହୁଅନ୍ତି, ତେବେ ଏ ସମ୍ପର୍କରେ ଏକ ଯୋଜନା ତିଆରି କରି କେନ୍ଦ୍ର ସରକାରଙ୍କ ସୁପାରିସ ପାଇଁ ପଠାଯାଇପାରେ ।

କେନ୍ଦ୍ର ସରକାର ଇଚ୍ଛାକଲେ ଏହା ଉପରେ ବିଭିନ୍ନ ରାଜ୍ୟରୁ ସେମାନଙ୍କ ମତାମତ ସଂଗ୍ରହ କରିପାରନ୍ତି । ଏହା ଯଦି ବହୁ ଲୋକଙ୍କ ଦ୍ୱାରା ଆଦୃତ ହୁଏ, ତେବେ କେନ୍ଦ୍ର ସରକାର ଏହାକୁ ଗ୍ରହଣ କରିବା ପାଇଁ ଚିନ୍ତାକରି ପାରନ୍ତି । ତା' ନହେଲେ ଗୋଟିଏ ସରକାର ଯାଉଥିବ, ଆଉ ଏକ ସରକାର ଆସୁଥିବ । ବ୍ୟୁରୋକ୍ରାଟ ଓ ଟେକ୍ନୋକ୍ରାଟ୍ ଭିତରେ କଳିକଜିଆ ବଢ଼ୁଥିବ, ବିଭାଗୀୟ ଅସନ୍ତୋଷ ବଢ଼ୁଥିବ । ଏହାର କିଛି ସମାଧାନ ହୋଇ ପାରିବନି ।

ଅମରେଶର ବକ୍ତବ୍ୟ ଅନ୍ୟ ମନ୍ତ୍ରୀମାନଙ୍କ ବେଶ୍ ହୃଦୟଗ୍ରାହୀ ହେଲା । ପରବର୍ତ୍ତୀ କେବିନେଟ୍ ମିଟିଂରେ ଏ ସଂପର୍କରେ ଆହୁରି ଅଧିକ ଆଲୋଚନା ହେବା ଠିକ୍ ହେଲା । ଏହା ଉପରେ ଅମରେଶ ଏକ ବିସ୍ତୃତ ଯୋଜନା ତିଆରିକରି ପରବର୍ତ୍ତୀ ମିଟିଂରେ ପେଶ୍ କରିବାକୁ ଅନୁରୋଧ କରାଗଲା ।

× × ×

"ବାସନ୍ତୀ, ବାସନ୍ତୀ", ଅମରେଶ ଅଫିସରୁ ଡାକପକାଇଲା । ଅଫିସ ଦୁଆର ଦେଇ ଚାଲିଯାଉଥିଲା ବାସନ୍ତୀ । ଅମରେଶ କାହିଁକି ଡାକୁଛି ଶୁଣିବାପାଇଁ ଚାଲିଆସିଲା ତା' ପାଖକୁ ।

"ବାସନ୍ତୀ ଆସ, ଆସ, ତୁମକୁ ଗୋଟିଏ ମଜାକଥା ଦେଖାଇବି, ବସ । ତୁମେତ ଖାଲି ମୋ ଉପରେ ବିରକ୍ତ ହେଉଥିଲ, ବାପାଙ୍କ କାମକୁ ସମାଲୋଚନା କରୁଥିଲ ବୋଲି । ତୁମେ ଏ ଫାଇଲଟି ଦେଖିଲ । ତୁମ ମନ୍ତବ୍ୟ କ'ଣ ମୋତେ କହିଲ ?"

ଫାଇଲ, ମୋତେ କ'ଣ ଦେଖାଉଛ ମ ? ମୁଁ ସେଥିରୁ କ'ଣ ବୁଝିବି ?

ହସିଲା ଅମରେଶ, "ମୁଁ ଆଜି ଯଦି ମନ୍ତ୍ରୀ ନ ହୋଇଥାନ୍ତି ତୁମେତ ଆଜି ମୋ ସ୍ଥାନରେ ମନ୍ତ୍ରୀ ହୋଇଥାନ୍ତ ବାସନ୍ତୀ । ମୁଁ ଯେତେବେଳେ ଏମ୍.ଏଲ୍.ଏ. ପାଇଁ ଠିଆ ହେବନି ବୋଲି ମନା କରିଦେଲି, ତୁମକୁ ତ ସେ ଅଞ୍ଚଳର ଲୋକେ କହିଲେ ଏମ୍.ଏଲ. ଏ ପାଇଁ ଠିଆ ହେବା ପାଇଁ । ତୁମେତ ଠିଆ ହୋଇଥିଲେ ମୋ ଭଳି ନିର୍ଦ୍ୱନ୍ଦରେ ନିର୍ବାଚିତ ହୋଇ ଏମ୍.ଏଲ୍.ଏ. ହୋଇଥାନ୍ତ । ଏମ୍.ଏଲ୍.ଏ. ହେଲାପରେ ତୁମେବି ତ ଆଜି ମନ୍ତ୍ରୀ ହୋଇଥାନ୍ତ ?"

"ଥାଉ, ଥାଉ, ମୁଁ ଯାଉଥିଲି ମନ୍ତ୍ରୀ ହେବାକୁ ? ମନ୍ତ୍ରୀ କିଏ, ମୁଁ କିଏ ?

ମନ୍ତ୍ରୀ ନହୁଅ ଏମ୍.ଏଲ.ଏ. ହୋଇଥିଲେ ତ ଏହିଭଳି ବହୁକଥା ତୁମକୁ ବୁଝିବାକୁ ପଡ଼ୁଥାନ୍ତା । ରାଜ୍ୟର ସମସ୍ୟାକୁ ଯଦି ନବୁଝିବ, ତେବେ ଏମ୍.ଏଲ.ଏ ହେବ କାହିଁକି ?

ମୁଁ କ'ଣ ସତରେ ଏମ୍.ଏଲ୍.ଏ. ହେଉଥିଲି ନା କଅଣ ? ଗ୍ରାମ ଉନ୍ନୟନ କ ପିଲାଙ୍କୁ ପାଠପଢ଼ାଇବା ଯାର କାମ, ତାକୁ ମନ୍ତ୍ରୀତ୍ୱରୁ ହେଉ ବା ଏମ୍ ଏଲ ଏ ରୁ ହେଉ କ'ଣ ମିଳିବ କହିଲ ? ସେସବୁ ରାଜନୀତି କଲାବାଲାଙ୍କୁ ପୋଷାଏ । ଆମଭଳି ସାଧାରଣ କର୍ମୀଙ୍କୁ ମୋଟେ ପୋଷାଇବ ନାହିଁ ।

ସବୁ କଥାରେ ଏଭଳି ପଳାୟନ ମନୋବୃତ୍ତି ନେଲେ କ'ଣ ଚଳିବ ବାସନ୍ତୀ ? ଶିକ୍ଷା ବିଭାଗରେ ଏକ ଗୁରୁତର ସମସ୍ୟା ବର୍ତ୍ତମାନ ଦେଖା ଦେଇଛି, ତା'କୁ କେମିତି ସମାଧାନ କରିହେବ, ସେଇ ହେଉଛି ଚିନ୍ତା । ଶିକ୍ଷା ବିଭାଗରେ ବିଶୃଙ୍ଖଳା ପୁରାଇବାକୁ ବୁରୋକ୍ରାଟମାନଙ୍କର ଯେଉଁ ଚକ୍ରାନ୍ତ ଚାଲିଛି, ଶୁଣିଲେ ତୁମେ ଆଶ୍ଚର୍ଯ୍ୟ ନହୋଇ ରହିପାରିବନି । ଶିକ୍ଷା ବିଭାଗ ଛାରଖାର ହୋଇଯିବ ସେମାନଙ୍କ ଦ୍ୱାରା ।

"କ'ଣ ହୋଇଛି କହିଲ ?" କହି କହି ଅମରେଶର ସାମନା ଚେୟାରରେ ବସିପଡ଼ିଲା ବାସନ୍ତୀ ।

ଅମରେଶ ଆରମ୍ଭକଲା, "ଦେଖ, ବାସନ୍ତୀ ! ବର୍ତ୍ତମାନଏକ ବଡ଼ ସମସ୍ୟା ଉପୁଜିଛି ଶିକ୍ଷା ବିଭାଗରେ । ମୁଁ ଯଦି ଟିକିଏ ସାବଧାନ ନ ହୋଇ ମୋ ବିଗ୍ରୁର ଧାରକୁ ଠିକ୍ ଭାବରେ ନ ଚଳାଉଛି, ତେବେ ସାରା ରାଜ୍ୟର ଶିକ୍ଷାବିଭାଗ ଧ୍ୱଂସ ପାଇଯିବ ଅଳ୍ପ କେଇଦିନ ଭିତରେ ।"

"କ'ଣ ଘଟଣା ହୋଇଛି କହିଲ ।"

"ଶୁଣ, ବହୁଦିନ ହେଲା ଆମ ଉଚ୍ଚତର ଶିକ୍ଷାବିଭାଗରେ ରହିଆସିଛି, ଯେତେ ଲେକ୍‌ଚରର ହେବେ, ତାହାଁର ଶତକଡ଼ା କୋଡ଼ିଏ ଭାଗ ପ୍ରମୋସନ୍ ପାଇ ରିଡ଼ର ହେବେ । ଏହା ଆବହମାନ କାଳରୁ ଚାଲି ଆସୁଛି । ଇଉ.ଜି.ସି. କିଛି ବର୍ଷତଳେ ରିଡ଼ରମାନଙ୍କ ଦରମାହାର ବଢ଼ାଇଦେଲେ । ଆମର ଗତ ସରକାର ସେମାନଙ୍କ ଉନ୍ନତ ମସ୍ତିଷ୍କରୁ ବାହାର କଲେ କ'ଣନା ଶତକଡ଼ା କୋଡ଼ିଏ ଭାଗ ରିଡ଼ର ପୋଷ୍ଟକୁ କାର୍ଯ୍ୟକାରୀ ନକରାଇ ଅନର୍ସ ସ୍ତରରେ ରିଡ଼ର ପୋଷ୍ଟ ସୃଷ୍ଟି କରିବେ । ଏହାଫଳରେ ରିଡ଼ର ସଂଖ୍ୟା କମି ଆସିବ । ସରକାରଙ୍କୁ ଅଧିକ ଟଙ୍କା ଦେବାକୁ ପଡ଼ିବ ନାହିଁ । ଯେଉଁଠି ଅନର୍ସ ପାଠ ଅଛି, ସେଠି ଜଣେ ରିଡ଼ର ଓ ଯେଉଁଠି ଏମ୍. ଏସ.ସି ପର୍ଯ୍ୟନ୍ତ ଅଛି ସେଠି ଦୁଇଜଣ ରିଡ଼ର ରହିବେ । ଏହି ପଦ୍ଧତି ଯଦି କାର୍ଯ୍ୟକାରୀ କରାଯାଏ, ତେବେ ବେଶି କ୍ଷତି ହେବ ବିଜ୍ଞାନ ବିଭାଗର ଲେକ୍‌ଚରରମାନଙ୍କର । ତୁମେ ତ ଜାଣ ବାସନ୍ତୀ, ସବୁଠାରୁ ମେଧାବୀ ପିଲା ବିଜ୍ଞାନ ପଢ଼ିବାକୁ ଆସନ୍ତି । ସାଧାରଣ ପିଲାଏ ଆର୍ଟସ ପଢ଼ନ୍ତି । ବର୍ତ୍ତମାନ ଏହି ପଦ୍ଧତି ଯଦି କାର୍ଯ୍ୟକାରୀ ହେଉଛି, ତେବେ ଆସନ୍ତା କୋଡ଼ିଏ ବର୍ଷ ଭିତରେ କୌଣସି ବିଜ୍ଞାନ ଲେକ୍‌ଚରର୍ ରିଡ଼ର ପଦକୁ ଉନ୍ନୀତ ହୋଇ ପାରିବେନି । ଆମ ରାଜ୍ୟରେ ଯେଉଁଠି ଆର୍ଟସ କଲେଜଟିଏ ଖୋଲିଲା, ଦୁଇବର୍ଷ ଭିତରେ ସେଠି ଅନର୍ସ ଖୋଲି ଯାଉଛି, ତେଣୁ ଆର୍ଟସ ବିଭାଗର ଲେକ୍‌ଚରର୍‌ମାନଙ୍କର ପ୍ରମୋସନ ସମ୍ଭାବନା ଢ଼େର ବେଶି । ଆମେ ଯଦି ଏହାକୁ କାର୍ଯ୍ୟକାରୀ କରୁଁ, ତେବେ ବିଜ୍ଞାନ ଲେକ୍‌ଚରରମାନଙ୍କ ଭିତରେ ବିରାଟ ଅସନ୍ତୋଷ ଓ ନୈରାଶ୍ୟ ଦେଖା ଦେବ । ସେମାନଙ୍କ ଠାରୁ ନିକୃଷ୍ଟ ମେଧା'ଶକ୍ତିର ପିଲାଏ ପ୍ରମୋସନ ପାଇ ଉପରକୁ ଉଠି ଯାଉଥିବାବେଳେ ଉଚ୍ଚ ମେଧାଶକ୍ତିର ବିଜ୍ଞାନ ଲେକ୍‌ଚରର୍‌ମାନେ ପ୍ରମୋସନ ନ ପାଇ ସେହି ଗୃହକାରରେ ସଡ଼ିଥିବେ । ତୁମେ ଆହୁରି ଜାଣିଛ ବାସନ୍ତୀ ଆମ ବିଜ୍ଞାନ ବିଭାଗର ଲେକ୍‌ଚରର୍‌ମାନେ ଗବେଷଣା କରି ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରି

ପାରିଛନ୍ତି । ଏଭଳି ଯୋଗ୍ୟ ଲେକ୍‌ଚରରମାନେ ପ୍ରମୋସନ ନପାଇ ପଡ଼ି ରହିଲେ କେଡ଼େ ଦୁଃଖର କଥା ହେବ କହିଲ ? ଅଥଚ ଯେଉଁମାନେ କଷ୍ଟେମଷ୍ଟେ ଏମ.ଏ ଖଣ୍ଡେ ପାସ କରି ପକାଇଛନ୍ତି, ସେମାନେ ପ୍ରମୋସନ ପାଇ ସେମାନଙ୍କ ଉପରକୁ ଉଠିଯିବେ । ଏହି ଯେଉଁ ଅନ୍ୟାୟ ହେବ, ସେଥିପାଇଁ ଦାୟୀ ହେବ କିଏ କହିଲ ?

"ଏହା ତ ନିହାତି ଅନ୍ୟାୟ, ତୁମେ ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଅନୁମତି ଦେଉଛ କାହିଁକି ?"

"ଆମ ପୂର୍ବରୁ ଯେଉଁ ସରକାର ଥିଲେ ସେ ଏହିଭଳି ଏକ ଅଦ୍ଭୁତ ସିଦ୍ଧାନ୍ତ ନେଇ ଯାଇଥିଲେ । ସେତେବେଳର କେବିନେଟ୍‌ରେ ଏହା ପାସ୍ ହୋଇଯାଇ ଥିଲା । ସେତେବେଳେ ଯେଉଁ ସେକ୍ରେଟେରୀ ଥିଲେ ସେ ଚିଫ୍ ସେକ୍ରେଟେରୀ ଓ ଅନ୍ୟ ସେକ୍ରେଟେରୀଙ୍କ ସହିତ ଦଳସୂତ୍ରର ହୋଇ ଏହାକୁ କେବିନେଟ ଦ୍ୱାରା ପାସ୍ କରାଇ ନେଇଥିଲେ । ଏହା ଯଦି କାର୍ଯ୍ୟକାରୀ ହୁଏ, ତେବେ ଶିକ୍ଷା ବିଭାଗରେ ଯେଉଁ ବିଶୃଙ୍ଖଳା ସୃଷ୍ଟି ହେବ, ତୁମେ ଧାରଣା କରି ପାରୁଛ ବାସନ୍ତୀ ?

"କିନ୍ତୁ ସେତେବେଳର ଡ଼.ପି.ଆଇ କଣ କରୁଥିଲେ ? ସେତ ଶିକ୍ଷା ବିଭାଗର ଲୋକ । ଏଭଳି ସିଦ୍ଧାନ୍ତ ଶିକ୍ଷା ବିଭାଗ ପ୍ରତି ମାରାତ୍ମକ ହେବ ବୋଲି କହି ପ୍ରତିରୋଧ କରିପାରି ଥାନ୍ତେ । ତୁମେ ଯା କୁହ, ଯିଏ ଡ଼.ପି.ଆଇ ଥିଲେ, ସେ ତାଙ୍କ ଦାୟିତ୍ୱ ଠିକ ଭାବରେ ତୁଲାଇ ନାହାନ୍ତି ମୋ ମତରେ ।

"ଜାଣିଛ ବାସନ୍ତୀ, ସେତେବେଳେ କିଏ ଡ.ପି.ଆଇ ଥିଲେ ?

"କିଏ ଥିଲେ ?"

"ଆଉ କିଏ ଥାନ୍ତେ ? ବାପା ପରା ଥିଲେ ।

"ଆଁ, ବାପା ? ଚମକି ପଡ଼ିଲା ବାସନ୍ତୀ । ବାପାଙ୍କ ନାଁ ଶୁଣି ଉଠି ପଳାଉଥିଲା ସେଠୁ । ଅମରେଶ ହଠାତ୍ ବାସନ୍ତୀର ଲୁଗାକାନି ଧରି ପକାଇ ଝିଙ୍କିଦେଇ କହିଲା, "ହାଁ, ହାଁ, ପଳାଇ ଯାଉଛ କୁଆଡ଼େ ? ବାପାଙ୍କର ଭୁଲ କିଏ ଧରିଲା ? ତୁମେ ନା ମୁଁ ?"

ଦେ, ଗୁଡ଼ମ । କଏ ଯଦ ଗୃହ ଆସିବ, ଦେଖିଲେ କ'ଣ ଭାବିବ କହିଲ ? ମୁଁ ଯାଏ ତେଣେ ରନ୍ଧା କ'ଣ ହେଲା ଦେଖେ । ତୁମ ଶାସନ କଏ, ମୁଁ କଏ ? ମାନେତ ସେଥିରେ କାହିଁକି ପୂରଉଛ ? ମୁଁ ଜଣେ ସାଧାରଣ ଲୋକ, ତୁମ ଫାଇଲ ଉପରେ ମନ୍ତବ୍ୟ ଦେବାକୁ ମୁଁ କଏ ?

"ଦେବ କ'ଣ, ଦେଇତ ସାରିଲଣି । ମୋତେ ସେଦିନ କହୁଥିଲ, ପରା ବାପାଙ୍କ କାମର ସମାଲୋଚନା କଲ ବୋଲି । ଆଜ ତୁମେତ ଠିକ ସେହି ସମାଲୋଚନା କଲ । ସେଦିନ ଯେଉଁ କାନ୍ଦ ହେଉଥିଲ, ଆଜ ସେ କାନ୍ଦ କୁଆଡ଼େ ଗଲା ?

ମୁଁ ମୋ କଥାକୁ ଫେରାଇ ନେଉଛି । ମୋର ସେ ମନ୍ତବ୍ୟ ନିହାତି ଭୁଲ ହୋଇଛି ।

ବାପା ଜଣେ ବିଜ୍ଞାନାଧ୍ୟାପକ ହୋଇ ବିଜ୍ଞାନ ଲେକଚରର ମାନଙ୍କ ସ୍ୱାର୍ଥକୁ କେମିତି ଜଳାଞ୍ଜଳି ଦେଲେ, ମୁଁ ତାହାହିଁ ଭାବୁଛି ।" ଅମରେଶ କହିଲ ।

ବାପା ସମ୍ଭବତଃ ସେତେବେଳେ ନୂଆ ହୋଇ ଡ଼ି.ପି.ଆଇ ଭାବରେ ଜଏନ କରିଥାନ୍ତି । ତେଣୁ ବିଶେଷ କିଛି ଏହା ଉପରେ ଅନୁଧ୍ୟାନ ନକରି ଛାଡ଼ି ଦେଇ ପାରିଥାନ୍ତି ।" ବାସନ୍ତୀ କହିଲା ।

"ଏହା ବି ହୋଇପାରେ, ବାପାଙ୍କ ଉପରେ ହୁଏତ ଚାପ ପଡ଼ିଥାଇ ପାରେ, ଯା ପାଇଁକି ସେ ଜାଣିଶୁଣି ଉଦାସୀନ ରହିଗଲେ । କିନ୍ତୁ···"

ଯାହା ହେଲେବି ବାପାଙ୍କ ଭୁଲ ବୋଲି ଧରିବାକୁ ପଡ଼ିବ ।

"ମୋତେ ଏବେ ଛାଡ଼ । ମୁଁ ଯାଏ, ତେଣେ କ'ଣ ରନ୍ଧା ହେଲା ଦେଖେଁ ? ତୁମେ କ'ଣ ଆଜ ସେକ୍ରେଟେରିଏଟ୍ ଯିବନି ନା କଅଣ ?

ଶୁଣ ବାସନ୍ତୀ, ବାପାଙ୍କର ଆଉ ଗୋଟିଏ ଭୁଲ ଶୁଣ । ଗତ ସରକାର ସିଦ୍ଧାନ୍ତ ନେଇଥିଲେ ସରକାରୀ କଲେଜମାନଙ୍କରେ ଯେଉଁଠି ସ୍ନାତକୋତ୍ତର ବ୍ୟବସ୍ଥା ଅଛି, ସେଠି ବିଭାଗୀୟ ମୁଖ୍ୟ ରହିବେ ସେହି ବିଭାଗର ସବୁପୁରାତନ

ଅଧ୍ୟାପକ । ସ୍ନାତକୋତ୍ତର ଶ୍ରେଣୀରେ ତାଙ୍କର ପଢ଼ାଇବା ଯୋଗ୍ୟତା ଥାଉ ବା ନଥାଉ । ଏଥିପୂର୍ବରୁ ଗବେଷଣାରେ ଦକ୍ଷତା ଥିବା, ସ୍ୱାଧୀନଭାବରେ ଗବେଷଣାକୁ ନିର୍ଦ୍ଦେଶ ଦେଇ ପାରୁଥିବା ଓ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟାପନା କରୁଥିବା ଅଧ୍ୟାପକମାନେ ସାଧାରଣତଃ ବିଭାଗୀୟ ମୁଖ୍ୟ ହୋଇ ରହିବା ବ୍ୟବସ୍ଥା ଥିଲା । ଗତ ସରକାରଙ୍କ ଏହି ସିଦ୍ଧାନ୍ତ ପୂର୍ବ ଖାତକୁ ପୂରାପୂରି ଓଲଟପାଲଟ କରିଦେଲା । ତୁମେ କହିଲ ବାସନ୍ତୀ ବିଶ୍ୱବିଦ୍ୟାଳୟମାନଙ୍କରେ ଯେଉଁମାନେ ବିଭାଗୀୟ ମୁଖ୍ୟ ହେଉଛନ୍ତି, ସେମାନଙ୍କର ଗବେଷଣା ଡ଼ିଗ୍ରୀ, ସ୍ୱାଧୀନ ଗବେଷଣାର ଦକ୍ଷତା ଆଦି ଦେଖାଯାଉଥିବା ସ୍ଥଳେ ଠିକ୍ ସେହି ପାଠ ପଢ଼ାଉଥିବା ସ୍ନାତକୋତ୍ତର ସରକାରୀ କଲେଜର ମୁଖ୍ୟ ଅଧ୍ୟାପକମାନଙ୍କର ସେହିସବୁ ଦକ୍ଷତା ଦେଖାନଯିବ କେମିତି ? ତା ବଦଳରେ ଯିଏ ଯେତେ ବରଷ ଚାକିରୀ କଲା, ସେହି ହିସାବରେ ସବୁ ପୁରାତନ ଲୋକ ବିଭାଗୀୟ ମୁଖ୍ୟ ହେବ । ଏହା କେତେ ହାସ୍ୟାସ୍ପଦ କଥା କହିଲ ? ଏହାକୁ ଯଦି କାର୍ଯ୍ୟକାରୀ କରାଯାଏ, ତେବେ ସରକାରୀ ସ୍ନାତକୋତ୍ତର କଲେଜର ମର୍ଯ୍ୟାଦା କ'ଣ ଆଉ ରହିବ ? ସେଠି କି ପାଠ ପଢା ହେବ ଆଉ ! ପିଲାମାନେ ସ୍ନାତକୋତ୍ତର ଡ଼ିଗ୍ରୀ ପାଇଁ ଆଉ ଏ କଲେଜକୁ କାହିଁକି ଆସିବେ ? ବିଭାଗୀୟ ମୁଖ୍ୟର ଯୋଗ୍ୟତା ଯଦି ବିଶ୍ୱବିଦ୍ୟାଳୟ ଲେକ୍‌ଚରର ଯୋଗ୍ୟତା ଠାରୁ କମ୍ ହେଲା, ତେବେ ସେ ବିଭାଗକୁ ଲୋକେ ଓ ଛାତ୍ରମାନେ କେଉଁ ଦୃଷ୍ଟିରେ ଦେଖିବେ ? ବିଭାଗୀୟ ବ୍ୟୁରୋକ୍ରାଟମାନଙ୍କ ଚକ୍ରାନ୍ତ ସେଥିସହିତ ଡ଼: ପି. ଆଇଙ୍କ ଉଦାସୀନତା ଏହି-ଭଳି ଏକ ହାସ୍ୟାସ୍ପଦ ସିଦ୍ଧାନ୍ତ କେବିନେଟ୍‌ରେ ପାସ କରାଇ ନେବାରେ ସାହାଯ୍ୟ କଲା । ଗତ ସରକାରର ମନ୍ତ୍ରୀମାନେ କ'ଣ ଯେ କରୁଥିଲେ ମୁଁ ଭାବି ପାରୁନ । ସେମାନେ ପ୍ରକୃତରେ ମନ୍ତ୍ରୀଥିଲେ ନା ପ୍ରଶାସକ ଗୋଷ୍ଠୀଙ୍କ ହାତରେ କ୍ରୀଡ଼ା ପୁତ୍ତଳିକା ଥିଲେ ମୁଁ ବୁଝି ପାରୁନ ବସନ୍ତୀ ?

"ତୁମର ବୁଝିବା ଦରକାର ନାହିଁ । ଆଉ, ଚାଲ ଖାଇବ ।

"ତୁମେ କ'ଣ ଶୁଦ୍ଧ ଭାଉଳି ପିଲାଳିଆମୀ ଦେଖାଉଛ ବାସନ୍ତୀ ? ଏତେବଡ଼ ସମସ୍ୟାଟାକୁ ତୁମେ ଯେ କେମିତି ହୃଦୟଙ୍ଗମ କରିପାରୁନ ମୁଁ ଦେଖି ଆଶ୍ଚର୍ଯ୍ୟ ହେଉଛି ।

"ମୁଁ ହୃଦୟଙ୍ଗମ କରୁଛି ଯେ କାଲୁ ଘରର ପୁଣି ବାପାଙ୍କ ଦୋଷ ବାହାରିବ । ଦେଖ, ମୁଁ ତୁମକୁ ହାତଯୋଡ଼ି କହୁଛି, ତୁମେ ବର୍ତ୍ତମାନ କାହାର ଦୋଷ

ବାହାର ନକରି ଶିକ୍ଷା ବିଭାଗକୁ କେମିତି ଏଥିରୁ ରକ୍ଷା କରିବ, ତହିଁର ବାଟ ବାହାର କର ।

ବାଟତ ମାତ୍ର ଗୋଟିଏ, ଆଉ ବାହାର କରିବ କ'ଣ ? ଗତ କେବି-ନେଟ୍ ଯାହା ସିଦ୍ଧାନ୍ତ ନେଇଥିଲା, ଆମେ ତାକୁ କାର୍ଯ୍ୟକାରୀ କରିବାକୁ ବାଧ୍ୟ ନୋହୁଁ । ଏହା ପୁଣି ବର୍ତ୍ତମାନର କେବିନେଟ ମିଟିଂରେ ପଡ଼ି ଗୃହୀତ ହେଲେ ଯାଇଁ ଯାହା ହେବ । ଏହି ଦୁଇଟି ଧାଡ଼ି ବିଷୟ ବର୍ତ୍ତମାନର କେବିନେଟ୍‌ରେ ପଡ଼ିଲେ ମୋର ବିଶ୍ୱାସ, ମୋ ଯୁକ୍ତିକୁ କାଟି ଏହାକୁ ପାସ କରାଇବାକୁ କେହି ସାହସ କରିବେ ନାହିଁ । କି ଧ୍ୱଂସାତ୍ମକ ସିଦ୍ଧାନ୍ତ ? କି ଚରମ ପ୍ରଶାସକ ଗୋଷ୍ଠୀଙ୍କର ନିରୀହ ଶିକ୍ଷା ବିଭାଗର ଲୋକଙ୍କ ବିରୁଦ୍ଧରେ । ଏତେଦିନ ଧରି ସୁସ୍ଥ ପରମ୍ପରାରେ ଚାଲି ଆସୁଥିବା ପ୍ରମୋସନ ରୀତିକୁ ଓଲଟାଇ ଦେବାରେ ସେମାନଙ୍କ ଅଗ୍ରହ ଏତେ କାହିଁକି ? ସେଥିରୁ ସେମାନଙ୍କର କ'ଣ ଯେ ଲାଭ ହେବ, ମୁଁ ବୁଝି ପାରୁନି ।

''ଏହାକୁ ଓଲଟପାଲଟ କରିଦେଲେ ସେମାନଙ୍କ ଭାଇ, ବନ୍ଧୁ ସାଙ୍ଗସାଥୀ ଭିତରୁ କେହି ହୁଏତ ଉପକୃତ ହେଉଥିବେ, ତା' ନହେଲେ ଏତେବଡ଼ ପୁରାତନ ରୀତିଟାକୁ ସେମାନେ ବଦଳାଇବାକୁ ଯାଆନ୍ତେ କାହିଁକି ? ନୀଚସ୍ୱାର୍ଥହିଁ ଏହି ଧ୍ୱଂସାତ୍ମକ ମନୋବୃତ୍ତି ମୂଳରେ କାର୍ଯ୍ୟ କରୁଛି ।' ବାସନ୍ତୀ କହିଲା ।

× × ×

ଉଡ଼ାଜାହାଜ ଭିତରକୁ ଅମରେଶ ପଶି ଆସିଲାବେଳକୁ ସାମନା ଦୁଇ ନମ୍ବର ସିଟ୍‌ରେ ବସିଛି ଶୁଭ୍ରା । ଅମରେଶକୁ ଦେଖି ଶୁଭ୍ରା ହଠାତ୍ ଉଠିପଡ଼ି ପ୍ରଣାମ ଜଣାଇ ଠିଆ ହୋଇ କହିଲା, ''ଆପଣ ଆଜି ଦିଲ୍ଲୀ ଯାଉଛନ୍ତି ବୋଲି ମୁଁ ଜାଣିଥିଲି ସାର୍ ।''

ଏକ ନମ୍ବର ସିଟ୍‌ରେ ବସୁଁ ବସୁଁ ଅମରେଶ କହିଲା, ''ମୁଁ ଦିଲ୍ଲୀ ଯାଉଛି ବୋଲି ତୁମେ କେମିତି ଜାଣିଲ ଶୁଭ୍ରା ?'' ।

''ସାର୍ ମୁଁ ସବୁବେଳେ ଉଡ଼ାଜାହାଜର ଏକ ନମ୍ବର ସିଟ୍‌ରେ ଯାଏ । ଏକ ନମ୍ବର ଓ ଦୁଇ ନମ୍ବର ସିଟ୍ ହେଉଛି ଭି.ଆଇ.ପି. ସିଟ୍ । ଉଡ଼ାଜାହାଜ

ଛାଡ଼ିବାର ପ୍ରାୟ ଦୁଇ ଘଣ୍ଟା ପୂର୍ବରୁ ଏହି ସିଟ୍‌ରେ ଯଦି ଭି. ଆଇ. ପି.ମାନେ ଯାଉ ନ ଥାନ୍ତି ତେବେ ସାଧାରଣ ଯାତ୍ରୀଙ୍କ ପାଇଁ ଛାଡ଼ି ଦିଆଯାଏ । ମୁଁ ଆଜି ଉଡ଼ାଜାହାଜ ଘାଟିକୁ ଆସି ଜାଣିଲି ଯେ, ଏକ ନମ୍ବର ସିଟ୍ ଛଡ଼ା ଯାଉନି, କାରଣ ଶିକ୍ଷାମନ୍ତ୍ରୀ ଏହି ଫ୍ଲାଇଟ୍‌ରେ ଦିଲ୍ଲୀ ଯାଉଛନ୍ତି । ତେଣୁ ମୋତେ ଦୁଇ ନମ୍ବର ସିଟ୍‌ଟି ମିଳିଲା ।

"ଓଃ ତୁମେ ଆଜି ତାହାଲେ ଜଣେ ଭି. ଆଇ. ପି. ? ଭି. ଆଇ. ପି. ମାନଙ୍କ ସାଙ୍ଗରେ ଯାଉଥିବାରୁ ଆଜି ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଛି ଶୁଭ୍ରା ।

"ସାର୍, ଆପଣଙ୍କର ସବୁବେଳେ ଥଟ୍ଟା ।" ନାକରେ କାନ୍ଦିଲା ଭଳି ସ୍ୱରରେ କହିଲା ଶୁଭ୍ରା ।

"ତୁମେ କ'ଣ ପାଇଁ ଦିଲ୍ଲୀ ଯାଉଛ ଶୁଣେ ? କ'ଣ ଏମିତି ବୁଲିବାକୁ ?

"ହଁ, ସାର୍, ଦିଲ୍ଲୀରେ ମୋ ବଡ଼ ମଉସା ରହନ୍ତି । ସେଠି ଆମ ବ୍ୟବ-ସାୟ ପ୍ରତିଷ୍ଠାନର ହେଡ୍ ଅଫିସ ଅଛି । ମୋ ମଉସା ହେଡ୍ ଅଫିସ ଇନ୍‌ଚାର୍ଜରେ ଥା'ନ୍ତି । ମୁଁ ଆଜି ତାଙ୍କ ଘରକୁ ବୁଲି ଯାଉଛି ।

"ତୁମ ବାପାଙ୍କର ଆଉ ଏକ ଅଫିସ ବମ୍ବେରେ ଅଛି ।

"ହଁ ମୋର ସାନ ମଉସା ସେଠି ଥା'ନ୍ତି । ସେ ସେଠାକାର ମେନେଜର ।

"ତୁମ ବାପା ତା' ହେଲେ କ'ଣ ବୁଝନ୍ତି ?

"ସାରା ବ୍ୟବସାୟର ପୂରା ଦାୟିତ୍ୱ ବାପାଙ୍କ ମୁଣ୍ଡରେ । ସେ ପୃଥିବୀର ବିଭିନ୍ନ ଦେଶ ବୁଲି ଆମଦାନୀ, ରପ୍ତାନୀ ତଦାରଖ କରନ୍ତି । ନିଉୟର୍କ ଓ ଲଣ୍ଡନ ଅଫିସ ତଦାରଖ ତାଙ୍କ କାମ ।

"ତୁମେ କେତେଦିନ ଦିଲ୍ଲୀରେ ରହିବ ?

"ନାହିଁ ସାର୍, ବେଶୀ ଦିନ ନୁହେଁ । ଦୁଇ ଚାରିଦିନ । ସେଠାରୁ ଫେରି ଆମେରିକା ଚାଲିଯିବି । ଆମେରିକା ଯିବା ପୂର୍ବରୁ ସାନ ମଉସାଙ୍କ ଘରେ ବମ୍ବେରେ ଦିନଟାଏ ରହିବି ।

"ସାର୍, ଆପଣ ଦିଲ୍ଲୀ ଯାଉଛନ୍ତି, କିଛି ଗୋଟାଏ ମିଟିଂ ଅଛି ବୋଧହୁଏ ?"

"ହଁ ଶୁଭ୍ରା, ବିଭିନ୍ନ ରାଜ୍ୟର ଶିକ୍ଷାମନ୍ତ୍ରୀମାନଙ୍କର ସମ୍ମିଳନୀ । ସେଥିରେ କେନ୍ଦ୍ର ଶିକ୍ଷାମନ୍ତ୍ରୀ ସଭାପତିତ୍ୱ କରିବେ । ଆଲୋଚନାର ବିଷୟବସ୍ତୁ ହେଉଛି ବିଶ୍ୱବିଦ୍ୟାଳୟ ସ୍ତରରେ ଇଂରାଜୀ ମାଧ୍ୟମ ରହିବ କି ନାହିଁ । ଯଦି ରହିବ, ଆଉ କେତେବର୍ଷ ପାଇଁ ରହିବ ?

ଅମରେଶ ଓ ଶୁଭ୍ରା ପାଖ ସିଟ୍‌ରେ ବସି କଥାବାର୍ତ୍ତା ହେଉଥିଲାବେଳେ ସବା ପଛ ସିଟ୍‌ରେ ଲୋକେ ଫୁସ୍‌ଫାସ୍ ହେଉଥାନ୍ତି 'ଆରେ ଆମ ଶିକ୍ଷାମନ୍ତ୍ରୀ ଦିଲ୍ଲୀ ଯାଉଛନ୍ତି । ତାଙ୍କ ପାଖରେ ଯେଉଁ ଭଦ୍ରମହିଳା ଜଣକ ବସିଛନ୍ତି ସେ କିଏ ଜାଣିଛୁ କିରେ ?

ଅନ୍ୟ ଜଣେ କହୁଥାନ୍ତି, 'ଆରେ ଆଉ କିଏ ହେବେ, ମନ୍ତ୍ରୀଙ୍କ ସ୍ତ୍ରୀ ହୋଇଥିବେ ? ତାଙ୍କ କଥାବାର୍ତ୍ତାରୁ ଦେଖୁନୁ ?

ଆଉ ଜଣେ କହୁଥାନ୍ତି 'ଆରେ ଧେତ୍, ତୁ ବୋକାଟାଏ କିରେ ? ସେ ତ ମନ୍ତ୍ରୀଙ୍କ ସ୍ତ୍ରୀ ଭଳି ଜଣା ପଡୁନାହାନ୍ତି । ମନ୍ତ୍ରୀ ତ ସାଧାସିଧା ଲୋକ, ତାଙ୍କ ସ୍ତ୍ରୀ ହୋଇଥିଲେ ସେ କ'ଣ ଏତେ ଦାମିକା ଶାଢୀ, ଗହଣାପତ୍ର ଲଗାଇ ଏତେ ଷ୍ଟାଇଲ୍ ହୋଇ ଆସିଥାନ୍ତେ ।

"ହଁ, ସତ ରେ, ଏପରି ଭୂଦାନୀ ମନ୍ତ୍ରୀ ? ତାଙ୍କ ସ୍ତ୍ରୀ କ'ଣ ଏତେ ଚକଚକିଆ ହୋଇଥିବେ ?" ପୋଷାକପତ୍ରର ଆଡ଼ମ୍ବରରୁ କ'ଣ ଜଣାପଡୁନି ଯେ ସେ କଦାପି ମନ୍ତ୍ରୀଙ୍କ ସ୍ତ୍ରୀ ନୁହଁନ୍ତି ବୋଲି ?

"ତୁ ତ ସବୁ ଜାଣିଛୁ ? ଆରେ ଆଜିକାଲି ମନ୍ତ୍ରୀମାନେ ଉପରକୁ ବେଶ୍ ସାଧାସିଧା । କିନ୍ତୁ ତାଙ୍କ ସ୍ତ୍ରୀମାନେ ବିଳାସବ୍ୟସନର ଚରମ ସୀମାରେ ।

ଶେଷ କେଇପଦ କଥା ଶୁଭ୍ରା କାନରେ ପଡ଼ିଗଲା । କିଏ କହୁଛି ଜାଣିବା ପାଇଁ ସେ ପଛକୁ ଅନାଇଲା । ନୀଳ ଚଷମା ଭିତରେ ଲକ୍ଷ୍ୟ କରିବାକୁ ରହୁଥିଲା ଅମରେଶ ସହିତ ତା'ର ଏଭଳି ଏକ ସମ୍ପର୍କ ସ୍ଥାପନ କରି କଥା କହିଲା ବାଲା କିଏ ? ଶୁଭ୍ରାକୁ ମୁହଁ ବୁଲାଇବା ଦେଖି ସେମାନେ ସମସ୍ତେ ଅଙ୍ଗୁଳି

ଖଣ୍ଡାଖଣ୍ଡି ହୋଇ ଚପ୍ ଚୁପ୍ ହୋଇଗଲେ । ଶୁଭ୍ରା ସେମାନଙ୍କ ଏଭଳି ହାବ୍‌ଭାବ ଦେଖି ନ ହସି ରହି ପାରିଲିନି !

ପଛରୁ ମୁହଁ ବୁଲାଇ ଆଣି ପଚାରିଲି, "ସାର୍ ଆପଣ ଇଂରାଜୀ ମାଧ୍ୟମ ସପକ୍ଷରେ ନା ବିପକ୍ଷରେ ?"

"ଦେଖ, ଶୁଭ୍ରା, ଇଂରାଜୀ ମାଧ୍ୟମ ସପକ୍ଷରେ କ'ଣ କୌଣସି ଭାରତୀୟ କେବେ ରହିପାରେ ? ଯେ ପ୍ରକୃତ ଭାରତୀୟ ହୋଇଥିବ, ଯା'କାନରେ ଭାରତର ଅନ୍ତରଗତ କଥା ପ୍ରତିଧ୍ୱନିତ ହେଉଥିବ ସେ କଦାପି ଏକ ବିଦେଶୀ ଭାଷାକୁ ବିଦେଶୀ ଭାଷା ଜାଣି ନଥିବା ଅଜ୍ଞ ଲୋକଙ୍କ ଉପରେ ଜାହିର କରି ରଖିବାକୁ ଚାହିଁବନି । ପୃଥିବୀର ସବୁ ଉନ୍ନତ ଦେଶରେ ବିଶ୍ୱବିଦ୍ୟାଳୟ ଶିକ୍ଷା ସେମାନଙ୍କ ମାତୃଭାଷା ମାଧ୍ୟମରେ ଦିଆଯାଏ । ଏହା କେବଳ ଆମ ଦେଶ, ସ୍ୱାଧୀନ ହୋଇ ଥିଲେହେଁ ବିଦେଶୀ ଭାଷାର ଗୋଲାମୀ ଛାଡ଼ିପାରୁ ନାହିଁ ।

ଆମେ ଯଦି ଇଂରାଜୀ ଭାଷାକୁ ମାଧ୍ୟମ କରି ରଖିବା କେତେଦିନ ପାଇଁ ରଖିବା ? ସବୁଦିନ ପାଇଁ ତ ରଖି ପାରିବା ନାହିଁ । ସବୁଦିନ ପାଇଁ ଯଦି ରଖି ପାରିବା ନାହିଁ, ତେବେ ଯେତେ ଶୀଘ୍ର ବିଦା କରିଦେବା ସେତେ ଭଲ । ଏହି ଭାଷା ନେଇ ଯେଉଁ ଗୋଳମାଳ ହେଉଛି ତାର ମୂଳ କେଉଁଠି ଜାଣ ? ଆମେ ତାର ମୂଳରେ ।

ଆମ ଦେଶ ଯେତେବେଳେ ସ୍ୱାଧୀନ ହେଲା, ସ୍ୱାଧୀନତା ନାଁରେ ଆମେ ଯଦି ସେତେବେଳେ ଇଂରାଜୀ ଭାଷାକୁ ପୁରାପୁରି ଉଠାଇ ଦେଇ କଷ୍ଟେମଷ୍ଟେ ଆମ ମାତୃଭାଷାରେ ସବୁ କାମ ଚଳାଇ ନେଇଥାନ୍ତୁ, ତେବେ ଏତେ ବେଳକୁ ଆଉ କିଛି ଅସୁବିଧା ନଥାନ୍ତା । ଆମ ଭାଷା ଢେର ଉନ୍ନତ ହୋଇ ଅନ୍ୟଭାଷାର ସମକକ୍ଷ ହୋଇ ସାରନ୍ତାଣି । ଆମେ ଯେହେତୁ ଇଂରାଜୀ ଭାଷାକୁ ରଖିଦେଲୁ, ବର୍ତ୍ତମାନ ସବୁ ଗୋଳମାଳ ଘଟିଲା ବେଳେ ।

ଆମ ଭାଷାକୁ କେମିତି ଉନ୍ନତ କରି ଇଂରାଜୀ ଭାଷା ସ୍ତରକୁ ଆଣିବୁ, ଆମର ଚେଷ୍ଟା ନାହିଁ ? ଆମର ତ ଆତ୍ମ ବିଶ୍ୱାସ କମ୍, ତେଣୁ ଡ଼ରୁଛୁ ଇଂରାଜୀ ଭାଷା ଉଠାଇଦେଲେ ଆମ ପାଠ ସବୁ କାଳେ ଭୁଲଭାଲ ହୋଇଯିବ କି ? ଯେଉଁ ମାନଙ୍କର ନିଜ ଉପରେ ବିଶ୍ୱାସ ନାହିଁ, ସେମାନେ ଅନ୍ୟ ଭାଷାକୁ

ଜାବୁଡ଼ି ଧରିଅଛନ୍ତି । ଆମ ଲୋକଙ୍କର ଗୋଲାମୀ ଭାବ କେବେ ଯିବ, ଆତ୍ମ ବିଶ୍ୱାସ କେବେ ଆସିବ, ମୁଁ ସେଇଆ ହିଁ ଭାବୁଛି ।''

''ସାର, ମୁଁ ମଧ୍ୟ ଆମ ଭାରତୀୟ ଭାଷା ବିଶ୍ୱବିଦ୍ୟାଳୟ ଶିକ୍ଷାର ମାଧ୍ୟମ ହେବା ସପକ୍ଷରେ । ମୁଁ ପିଲାଟି ଦିନରୁ ଇଂରାଜୀ ମାଧ୍ୟମରେ ସବୁ ପଢ଼ି ଆସିଛି । ବର୍ତ୍ତମାନ ଇଂରାଜୀ ଭାଷାଭାଷୀ ଦେଶରେ ରହୁଛି, ତଥାପି ବି ମୁଁ କହୁଛି ବିଶ୍ୱବିଦ୍ୟାଳୟ ସ୍ତରରେ ଇଂରାଜୀ ମାଧ୍ୟମର କିଛି ଆବଶ୍ୟକତା ନାହିଁ । ଆମେ ଅନ୍ୟ ଜଣେ ଲୋକର ଭାଷା କହି ନିଜକୁ ସ୍ୱାଧୀନ ବୋଲି କହିବା କେତେ ହାସ୍ୟାସ୍ପଦ ଆମ ଲୋକେ ଜାଣି ପାରୁନାହାନ୍ତି । ପୃଥିବୀର ବହୁ ଦେଶ ଲୋକଙ୍କ ସହିତ ମୁଁ ମିଶିଛି, ସେମାନେ ନିଜ ଭାଷା ଛଡ଼ା ଇଂରାଜୀ ଭାଷା କି ଅନ୍ୟଭାଷା ଜାଣି ନାହାନ୍ତି । ଦେଖିଲି ବେଳକୁ ସେମାନେ ପୃଥିବୀର ଖୁବ୍ ବଡ଼ ବଡ଼ ବୈଜ୍ଞାନିକ । ଇଂରାଜୀ ଭାଷା ସପକ୍ଷରେ କାଣିଚାଏ ବି ଯୁକ୍ତି ନାହିଁ ସାର୍ । ଏହା ଖାଲି ଆମର ଗୋଲାମୀ ମନୋବୃତ୍ତି ଛଡ଼ା ଅନ୍ୟ କିଛି ନୁହେଁ ।

ଉପରଓଳି ଚାରିଟା ସୁଦ୍ଧା ଉଡ଼ାଜାହାଜ ଦିଲ୍ଲୀ ବିମାନ ଘାଟିରେ ଓହ୍ଲାଇଲା ! ଅମରେଶ, ତା ପଛେ ପଛେ ଶୁଭ୍ରା ଉଡ଼ାଜାହାଜରୁ ଓହ୍ଲାଇଲେ । ସେମାନେ ଉଡ଼ାଜାହାଜ ପଡ଼ିଆ ଦେଇ ଲାଉଞ୍ଜରେ ପହଞ୍ଚିଛନ୍ତି କି ନାହିଁ ଶୁଭ୍ରାକୁ ନେବାପାଇଁ ଆସିଥିବା ଡ୍ରାଇଭର ଶୁଭ୍ରାକୁ ସଲାମ ପକାଇଲା । ଅମରେଶ କିଛି ସମୟ ଲାଉଞ୍ଜରେ ଅପେକ୍ଷା କରିବା ପରେ କହିଲା, ''ଏ କ'ଣ ବିହାର ଭବନ ଗାଡ଼ି ଆସି ନାହିଁ ନା କ'ଣ ? ବିହାର ଭବନର କୌଣସି କର୍ମଚାରୀ କ'ଣ ଦେଖାଯାଉ ନାହାନ୍ତି ? କିଛି ସମୟ ପରେ ପୁଣି କହିଲା ''ଦେଖ ଶୁଭ୍ରା, ତୁମ ଗାଡ଼ି ତ ଆସି ଯାଇଛି, ତୁମେ ଚାଲିଯାଅ । ବିହାର ଭବନ ଗାଡ଼ି ଆସିଲେ ମୁଁ ପରେ ଯିବି । ତୁମେ କାହିଁକି ଅଯଥା ମୋ ପାଇଁ ଅପେକ୍ଷା କରିବ ?''

''ନାହିଁ ସାର, ବିହାର ଭବନ ଗାଡ଼ି ଆସୁ । ଆପଣ ଯାଇ ସାରନ୍ତୁ ତା'ପରେ ମୁଁ ଯିବି । ମୋର ଯେମିତି କିଛି ତର ତର ନାହିଁ । ମୁଁ ତ ଏମିତି ବୁଲି ଆସିଛି । ଆଉ ଘଣ୍ଟାଏ ଡେରି ହେଲେବି କିଛି କ୍ଷତି ନାହିଁ ।''

''ତେବେ ତୁମ ମଉସା, ମାଉସୀ ଅପେକ୍ଷା କରି ବସିଥିବେ ?''

"କିଛି ନାହିଁ ସାର୍, ସେମାନେ କିଛି ଭାବିବେନି । ସେମାନେ ତ ଜାଣିଛନ୍ତି, ସେମାନଙ୍କ ଗାଡ଼ି ଯାଇଛି, ଡ୍ରାଇଭର ଯାଇଛି, ଅସୁବିଧା କିଛି ହେବନି ମୋ ଆସିବାରେ । କାଳେ ଉଡ଼ାଜାହାଜ ଡେରି ଥିବ, ତେଣୁ ମୋ ପହଞ୍ଚିବା ଡେ଼ରି ହେଉଛି ବୋଲି ଭାବିବେ ।

"ବିହାର ଭବନ ଗାଡ଼ି ନ ଆସିବା ଦେଖି ବଡ଼ ବ୍ୟସ୍ତ ହୋଇ ପଡ଼ିଲି ଅମରେଶ । "ବିହାର ଭବନ ଗାଡ଼ି ଖରାପ ହୋଇ ଯାଇଛି ନା' କଅଣ ? କେବେ ତ ସେମାନେ ଏତେ ଡେ଼ରି କରନ୍ତିନି ।"

"ସାର୍, ଆପଣ ବସିଥାନ୍ତୁ, ମୁଁ ବିହାର ଭବନକୁ ଫୋନ କରି ବୁଝି ଆସେ ।" ଏତିକି କହି ଶୁଭ୍ରା ଚାଲିଗଲା ଉଡ଼ାଜାହାଜ ଘାଟି ଅଫିସକୁ । କିଛି ସମୟ ପରେ ଫେରିଆସି କହିଲା, "ନାଇଁ ସାର୍, ଟେଲିଫୋନ ଲାଇନ ବି ସମ୍ଭବତଃ ଖରାପ ହୋଇଯାଇଛି । କେହି ତ ଧରୁ ନାହାନ୍ତି । ଟୋନ୍‌ଟା ଖରାପ ହୋଇଥିବ, ଫୋନ୍‌ର ଟୋନ୍ ଭଲ ଜଣା ପଡ଼ୁଛି ।

"ତା ହେଲେ—"

"ସାର୍ ଆପଣ ଯଦି କିଛି ମନେ ନ କରିବେ, ଆମ ଗାଡ଼ି ଆପଣଙ୍କୁ ବିହାର ଭବନରେ ପହଞ୍ଚାଇଦେବ । ଆପଣ ଏଠି କେତେ ସମୟ ଅପେକ୍ଷା କରିବେ ? ସନ୍ଧ୍ୟା ଆସିବା ଉପରେ ? ସେଠାରେ ପହଞ୍ଚିଲେ ଆପଣ ଟିକିଏ ଗାଧୁଆ ପାଧୁଆ ସାରି ଶାନ୍ତିରେ ବିଶ୍ରାମ ନେଇପାରନ୍ତେ ।"

ହସିଲି ଅମରେଶ, କହିଲି "ମୁଁ ଦେଖୁଛି ଶୁଭ୍ରା ତୁମେ ମୋତେ ଛାଡ଼ି ଯିବନି । ମୋର ଟିକିଏ ଅସୁବିଧା ହୋଇଗଲେ ତୁମକୁ ଯେ କାହିଁକି କଷ୍ଟ ହୁଏ ମୁଁ ବୁଝି ପାରେନି । ମୁଁ ଅଧ୍ୟାପକ ଥିଲି ବେଳେ ମୋର ଟିକିଏ ଅସୁବିଧାକୁ ତୁମେ ଯେମିତି ସହ୍ୟ କରି ପାରୁ ନଥିଲ, ମୁଁ ଆସି ବର୍ତ୍ତମାନ ମନ୍ତ୍ରୀ ହେଲିଣି ତଥାପି ବି ତୁମର ମୋ ପ୍ରତି ସେଇ ମନୋଭାବ ରହିଛି, ଟିକିଏ ବି ବଦଳି ନାହିଁ । ମୁଁ ଜାଣେ ମୁଁ ନଗଲା ପର୍ଯ୍ୟନ୍ତ ତୁମେ ଏଠୁଁ ଯିବନି । ହେଉ, ତୁମରି କଥା ହେଉ ଚାଲ । ମୋତେ ବିହାର ଭବନରେ ପହଞ୍ଚାଇ ଦେଇ ତୁମେ ତୁମ ମଉସାଙ୍କ ଘରକୁ ଯିବ । ତୁମ ମଉସାଙ୍କ ଘର କେଉଁଠି ?

କନଟ୍ରେକ୍ଟରେ । ତଳେ ଅଫିସ, ଉପରେ ରହିବା ଘର ।

ତୁମେ ମୋତେ ଗୃଣକାଁପୁରରେ ଛାଡ଼ି ଦେଇ କନଟ୍ରେକ୍ଟକୁ ଯିବ । ବହୁତ ବୁଲିବାକୁ ପଡ଼ିବ ତୁମକୁ ?

ସେଥିରେ କଷ୍ଟ ଯାଏଆସେ ନାହିଁ ସାର୍, କେତେ ସମୟ ଲାଗିବ ଯେ ?"

× × ×

ଆଲୋ ମା, କୁଆଡ଼େ ଗଲୁକି ? କହୁଁ କହୁଁ ଶାଶୁ ରାଧାମଣି ଦେବୀ ଘର ଭିତରକୁ ପଶି ଆସିଲେ । ସେତେବେଳକୁ ଅମରେଶ ଜଳଖିଆ ଖାଇ ଟୁରରେ ବାହାରି ଗଲାଣି । ଗୃହର ସନଆ ମା'ଙ୍କୁ ଦେଖି ଘର ଭିତରକୁ ପାଗ୍ରେଟି ଆଣିଲା । ସେତେବେଳକୁ ବାସନ୍ତୀ ପିଲା ଦୁଇଟିକୁ ପଢ଼ାଉଥିଲା ପଢ଼ା ଘରେ । ସ୍କୁଲମାନଙ୍କରେ ଯେମିତି ବେଞ୍ଚ ଟେବୁଲ୍ ଆଦି ପଡ଼ିଥାଏ, ଏଠି ଠିକ୍ ସେମିତି । ସେହି ବେଞ୍ଚ ଟେବୁଲରେ ପିଲା ଦୁଇଟି ବସି ବହିପତ୍ର ରଖି ପଢ଼ୁଥାନ୍ତି । ବାସନ୍ତୀ ବ୍ଲାକବୋର୍ଡ଼ ପାଖରେ ଠିଆ ହୋଇ ପିଲା ଦୁଇଟିକୁ ପଢ଼ାଉଥାଏ ଠିକ୍ ସ୍କୁଲରେ ପଢ଼ାଇଲା ଭଳି । ସ୍କୁଲଘର ଭଳି କାନ୍ଥରେ ବ୍ଲାକ ବୋର୍ଡ଼, ଶିକ୍ଷୟିତ୍ରୀ ବସିବା ପାଇଁ ବ୍ଲାକ ବୋର୍ଡ଼ ସାମନାକୁ ଚେୟାର ଟେବୁଲ । ବାସନ୍ତୀ ଶିକ୍ଷୟିତ୍ରୀ ପୋଷାକ ପିନ୍ଧି ପଢ଼ାଇବାରେ ଲାଗି ଯାଇଥାଏ ।

ନିଜ ବୋହୂକୁ ଶିକ୍ଷୟିତ୍ରୀ ବେଶରେ ଦେଖି ଚମକି ପଡ଼ିଲେ ରାଧାମଣୀ ଦେବୀ । ଶାଶୁକୁ ଏତେ ସଅଳ ଆସିବା ଦେଖି ଅପ୍ରସ୍ତୁତ ହୋଇ ପଡ଼ିଲା ବାସନ୍ତୀ ।

ଶାଶୁଙ୍କୁ ଦେଖି ତାଙ୍କ ଗୋଡ଼ ଧୂଳି ନେଉଁ ନେଉଁ କହିଲା" କଣ ଆଜି ଅବେଳାଟାରେ ଚାଲି ଆସିଲେ ବୋଉ ?

ମୁଁ ଶୁଣିଲି, ଆଜି ପୁଅ ଟୁରରେ ଯାଇଛି । ତୋ ଶ୍ୱଶୁର ବି ତା'ର ସଙ୍ଗରେ ଯାଇଛନ୍ତି । ମୁଁ ଭାବିଲି ଯାଏଁ, ବୋହୂଟାକୁ ଡାକି ଆଣେ, ସାଙ୍ଗରେ ଏଠି ଖାଇବା । ପିଲାଗୁଡ଼ିକ ସାଆନ୍ତଙ୍କ ଘରେ କେବେ ହନେ ଖାଇଲେନି ?"

ଆଜି ତ ଆମର ରନ୍ଧା ବନ୍ଦ କରି ଦେଇଛୁ ବୋଉ । ସନଆ, ପୁଷ୍ପାଗ୍ରି, ଆମେ ସମସ୍ତେ ଆଜି ପଖାଳ ଖାଇବୁଁ ବୋଲି ଠିକ୍ କରିଛୁଁ । ଆଜି ଭାରି ଗରମ

ସଡ଼ୁଛି । ବହୁ ଦିନ ହେଲା ଆମେ ପଖାଳ ଖାଇନୁ । ସିଏ ନଥିଲେ ଆମ ସମସ୍ତଙ୍କୁ ପଖାଳ ଖାଇବାକୁ ଭଲ ଲାଗେ । ସିଏ ଥିଲେ ପଖାଳ ଭୁଲରେ ବି କରେନି । କାଲେ କିଏ ଭାବିବ ମନ୍ତ୍ରୀଙ୍କ ଘରେ ପଖାଳ ହେଉଛି ।"

"ତୁ ଜାଣିଛୁ ମା, ପୁଅ ମନ୍ତ୍ରୀ ହେବା ପୂର୍ବରୁ ବାପାଙ୍କୁ ଲୁଚି ଘରକୁ ଯାଇ ପଖାଳ ଖାଇ ପଳାଇ ଆସେ । ସେତ ପଖାଳ ଖାଇବାକୁ ଖୁବ ଭଲ ପାଏ । ଅଉ ଏ ଯେଉଁ ଖରା ଦିନ, ସେଥିରେ ଗରମ ଖାଇବାକୁ କ'ଣ କାହାର ଇଚ୍ଛା ହେବ ମା ? ତୁ ମଝିରେ ମଝିରେ ପଖାଳ କରୁନାହୁଁ କାହିଁକି ମା ?

"ଆପଣ ଜାଣିଛନ୍ତି ବୋଉ, ସେ ବର୍ତ୍ତମାନ ମନ୍ତ୍ରୀ । ସବୁବେଳେ ପି.ଏ ପ୍ରାଇଭେଟ ସେକ୍ରେଟେରୀମାନେ ଆମ ଘରେ ଚଳପ୍ରଚଳ । ପ୍ରତିଦିନ କେତେ ଲୋକ ତାଙ୍କ ସାକ୍ଷାତ ପାଇଁ ଆସୁଛନ୍ତି । ସିଏ ଯଦି ପଖାଳ ଖାଇବେ, ସେମାନେ ସବୁ ଜାଣିଯିବେ ଓ କଥାଟା ଦିନେ ପଦାକୁ ବାହାରି ପଡ଼ିବ । ମନ୍ତ୍ରୀ ଘରେ ପଖାଳ ଖାଆନ୍ତି ଏକଥା ଯଦି ଜଣା ପଡ଼ିଯାଏ, ସବୁ ଗଲା । ଏହି ଦୁର୍ନାମ ହେବା ଭୟରେ ମୁଁ କେବେ ପଖାଳ କରେନି । ସେ ବି ପଖାଳ କରିବା ପାଇଁ ମୋତେ କେବେ କହି ନାହାନ୍ତି । ଆଜି ସିଏ ନାହାନ୍ତି । ତାଙ୍କ ଦଳ ବି ନାହାନ୍ତି । ତେଣୁ ଆମେ ଠିକ କରିଛୁଁ, ଆଜି ଆମ ସମସ୍ତଙ୍କର ପଖାଳ ।

"ଆଜି ମୁଁ ନିଜେ ତୋପାଇଁ ରାନ୍ଧିଛି ମା, ତୁ ଖାଇବୁ, ପିଲାମାନେ ଖାଇବେ, ଏହି ଆଶାରେ ଦୌଡ଼ି ଆସିଛି ତୋ ପାଖକୁ । ପୁଅ ଥିଲେ ଆସି ନଥାନ୍ତି । ପୁଅକୁ ତ ମୁଁ ମନ୍ତ୍ରୀହେବା ଦିନଠାରୁ କେବେ ଖାଇବାକୁ ଡାକିନି । ସାହସ ବି କରିନି ଡାକିବାକୁ । ତୋ ଶ୍ୱଶୁରଙ୍କର ଖୁବ ଡ଼ର ମନ୍ତ୍ରୀ କ'ଣ ଯିବେ ଡ଼ି·ପି·ଆଇଙ୍କ ଘରକୁ ଖାଇ ? ଲୋକେ କେତେ କଥା ବଢ଼ାଇ କରି କହିବେ । ତୋ ଶ୍ୱଶୁରଙ୍କର ସେଥିପ୍ରତି ଭାରି ଡ଼ର, ପୁଅ ମନ୍ତ୍ରୀ ହେବା ଦିନ ଠାରୁ ସେ କ'ଣ କମ୍ ଡ଼ରି ଡ଼ରି ଚଳୁଛନ୍ତି କି ମା ?"

ବୋଉ ଆପଣ ନିଜେ ଯେତେବେଳେ ଆସିଛନ୍ତି ଆମେ ନଯିବୁ କେମିତି ? ଆଜି ଏଠି ଆମ ପଖାଳଖିଆ ଥାଉ । ପୁଷ୍ପାଞ୍ଜଳି ଓ ସଞ୍ଜୀବ ଖାଇଦେବେ । ଚାଲନ୍ତୁ ଆଜି ଆମେ ସେଠି ଖାଇବା ।"

"ବୋଉ ଆପଣ ଆସିଥିଲେ କେଉଁଥିରେ ? ଫେର୍ ସେଇ ରିକ୍ସାରେ ?

"ଆଉ କେଉଁଥିରେ ଆସିଥାନ୍ତି ମା ? ତୋ ଶ୍ୱଶୁରଙ୍କର ଘର ଛାଗିଦ ଘର କାମରେ ସରକାରୀ ଗାଡ଼ି ବ୍ୟବହାର କରିବା ଉଚିତ ନୁହେଁ । ଆମ କ୍ୱାର୍ଟରରେ ତିନି ତିନୋଟା ଗାଡ଼ି ବର୍ତ୍ତମାନ ଥୁଆ ହୋଇଛି । ଡ୍ରାଇଭର ଗୁଡ଼ାକ ଡ଼ି.ପି,ଆଇ ନାହାନ୍ତି ବୋଲି ବାରଣ୍ଡାରେ ଶୋଇ ରହିଛନ୍ତି । ମୁଁ ଯେତେବେଳେ ରିକ୍ସା ଡ଼ାକାଇଲି ଏଠାକୁ ଆସିବା ପାଇଁ, ସେଥି ଭିତରୁ ଦି ତିନୋଟା ଧାଇଁ ଆସି ମୋତେ କହିଲେ. "ଆପଣ କ'ଣ ମନ୍ତ୍ରୀଙ୍କ କୋଠିକୁ ରିକ୍ସାରେ ଯିବେ ମା ? ଆମେ କ'ଣ ଆପଣଙ୍କୁ ସେଠି ଗାଡ଼ି ଦେଇ ଆସି ପାରିବୁନି ?"

ମୁଁ ମନାକଲି । କହିଲି, "ଆରେ ତୁମେ ସବୁ କ'ଣ ଜାଣିନ ବାବୁଙ୍କର ଘର ମନା ।"

"ବାବୁ ଜାଣିବେ କେମିତି ମା ? ଆମେ କ'ଣ କହିବୁ ତାଙ୍କୁ ?"

"ଆରେ, ତୁମର ସବୁ କେତୋଟା ଲେଖାଏଁ କାନ କହିଲ ?

ଜଣେ ତା' କାନ ଦି'ଟାକୁ ଅଣ୍ଡାଳି ପକାଇ କହିଲା, "କାହିଁକି ମା, ଆମର ତ ଦି'ଟା କାନ ।

"କିନ୍ତୁ ତୁମ ବାବୁଙ୍କର ଚାରିଟା କାନ ! ତୁମେ ନ କହିଲେ ବି ସେ ଜାଣିଯିବେ । ଥାଉ, ଥାଉ, ମୁଁ ରେକ୍ସାରେ ମନ୍ତ୍ରୀଙ୍କ କୋଠିକୁ ଯାଇପାରିବି । ତୁମ ଗାଡ଼ି ଦରକାର ନାହିଁ ।

"ତା' ହେଲେ ଆମେ ବର୍ତ୍ତମାନ ଯିବା କେମିତି ବୋଉ ? କଣ ସେଇ ରିକ୍ସାରେ ?" ବାସନ୍ତୀ ପଚାରିଲା ।

ମନ୍ତ୍ରୀଙ୍କ ସ୍ତ୍ରୀ, ମା ଓ ପିଲାମାନେ ବାହାରକୁ ବାହାରୁଥିବା ଦେଖି କୋଠିରେ ଥିବା ଦୁଇଟା ଗାଡ଼ି ଭିତରୁ ଗୋଟିଏ ଆସି ସେମାନଙ୍କ ପାଖରେ ହାଜର ହୋଇଗଲା । ବାସନ୍ତୀ ଗାଡ଼ିର ଦରଜା ଖୋଲୁଛି, ରାଧାମଣି ଦେବୀ କହିଲେ, "ତୁ ପୁଅକୁ ଏଠି ମନ୍ତ୍ରୀ ହୋଇ ରହି ଦେବୁନି ମା ? ତୁ ଯଦି ସରକାରୀ

ଗାଡ଼ିରେ ଆମ ଘରକୁ ଯାଉ, ତା’ ବିରୁଦ୍ଧ ଦଳ ଆସେମ୍ବ୍ଲିରେ ପ୍ରଶ୍ନ ଉଠାଇବେ, ମନ୍ତ୍ରୀଙ୍କ ସ୍ତ୍ରୀ ଘରୋଇ କାମରେ ସରକାରୀ ଗାଡ଼ି ବ୍ୟବହାର କଲେ । ପୁଅ କ’ଣ ଆଉ ମୁଣ୍ଡ ସଳଖ କରି ଚାଲି ପାରିବ ଏଠି ? ସେ ସଙ୍ଗେ ସଙ୍ଗେ ଇସ୍ତଫା ଦେଇଦେବ ଏହି ମନ୍ତ୍ରୀତ୍ୱରୁ ।

‘‘ହଁ ସତକଥା ତ ବୋଉ, ମୋର ସେ ଆଡକୁ ମୋଟେ ଖିଆଲ ନାହିଁ । ସେ ଶୁଣିଲେ ଢ଼ର ରାଗିବେ । ଆମେ ରିକ୍‌ସାରେ ଚାଲିଯିବା । ମୁଁ କେବେ ଏଠକୁ ଆସିଲି ଦିନୁ ବାହାରକୁ ଯାଇନି । ବଜାରରୁ ଯାହା କିଣିବା ଦରକାର ପଡ଼େ, ଚାକର ପୂଝାରୀଙ୍କ ହାତରେ ମଗାଇ ଆଣେ । ସେଦିନ ଯାହା ମୁଁ ଆପଙ୍କ ଗାଡ଼ିରେ ଯାଇଥିଲି ।

ଇଏତ ଏ ପର୍ଯ୍ୟନ୍ତ ଗାଡ଼ି କିଣି ନାହାନ୍ତି । ଗାଡି କିଣିବା ନାଁ ବି ତ ଧରୁ ନାହାନ୍ତି । କହୁଛନ୍ତି, ସରକାରୀ ଗାଡ଼ି ତ ଅଛି, ଆଉ ଗାଡ଼ିଟେ କିଣିବା କାହିଁକି ? ସବୁବେଳେ ତାଙ୍କ ମୁହଁରେ ତ ଗୋଟିଏ କଥା । ଆମେ ଏଠି କେତେଦିନ ରହିବା ଯେ ଗାଡ଼ିଟାଏ ଫେର କିଣିବା ?

ବେଳେବେଳେ ଭାବେଁ ବାପା ଯେଉଁଦିନ ଘରେ ଥାଆନ୍ତି, ସେଦିନ ଆପଣଙ୍କଠୁଁ ଗାଡ଼ି ମଗାଇ ନେବି । ଆପଣଙ୍କର ତ ନିଜ ଗାଡ଼ି, ଅସୁବିଧା ହୁଅନ୍ତାନି । କିନ୍ତୁ ଇଏ ରାଗିବେ । ଲୋକଙ୍କ ମୁହଁକୁ କ’ଣ ବନ୍ଦ କରିହେବ ? ଲୋକେ କହିବେ ମନ୍ତ୍ରୀଙ୍କ ସ୍ତ୍ରୀ ଡ଼.ପି.ଆଇଙ୍କ ଗାଡ଼ିରେ ବଜାର ବୁଲି ଯାଉଛନ୍ତି । ତେଣୁ ଏହି ରିକ୍‌ସା ଛଡ଼ା ଆଉ କିଛି ଆମକୁ ସୁବିଧା ନୁହେଁ ବୋଉ ।

ବାସନ୍ତୀ ଓ ରାଧାମଣୀ ଦେବୀ ରିକ୍‌ସା ଡ଼ାକିବା ପାଇଁ ଠିକ୍ ଗେଟ ପାର ହେବାକୁ ଯାଉଛନ୍ତି; ହଠାତ୍ ଶୁଭ୍ରା ଏକ ବିରାଟ ଗାଡ଼ି ନେଇ ଗେଟ ପାଖରେ ପହଞ୍ଚିଗଲା । ଆପଣମାନେ ଏମିତି କୁଆଡ଼େ ଚାଲି ଚାଲି ବାହାରିଛନ୍ତି ବାସନ୍ତୀ ଦେବୀ ? ସାର କ’ଣ ଘରେ ନାହାନ୍ତି କି ?

‘‘ନା ଶୁଭ୍ରା ଦେବୀ, ସେ ଆଜି ଘରେ ନାହାନ୍ତି । ଟୁର୍‌ରେ ଯାଇଛନ୍ତି, ତୁମେ ବୋଧହୁଏ ବୋଉଙ୍କୁ ଚିହ୍ନିନ ? ଏ ହେଉଛନ୍ତି ମୋ ଶାଶୁ ।

ଶୁଭ୍ରାକୁ ଲକ୍ଷ୍ୟ କରି ଶାଶୁଙ୍କୁ କହିଲା, ‘‘ଏ ହେଉଛନ୍ତି ଶୁଭ୍ରା ଦେବୀ ବୋଉ । ଆପଣଙ୍କ ପୁଅଙ୍କ ସ୍ତ୍ରୀ ଇଏ ବର୍ତ୍ତମାନ ଆମେରିକାରେ ରହି ଗବେଷଣା କରୁଛନ୍ତି ।’’

ଶୁଭ୍ରା ରାଧାମଣି ଦେବୀଙ୍କୁ ନମସ୍କାର ଜଣାଇଲା । "ଆପଣମାନେ ଚାଲି ଚାଲି କୁଆଡ଼େ ବାହାରିଛନ୍ତି ଯେ ?"

"ଚାଲି ଚାଲି ନୁହେଁ । ଆଗରୁ ରିକ୍ସାଟିଏ କରିନେବୁ ।"

"ଆପଣମାନେ ଯିବେ କେଉଁଠାକୁ ?

"ଡି.ପି.ଆଇଙ୍କ କୋଠିକୁ, ବୋଉଙ୍କ ସାଥୀରେ ।"

ଆପଣଙ୍କ ହତାରେ ଦୁଇ ଦୁଇଟା ଗାଡ଼ି ଥୁଆ ହୋଇଛି, ଅଥଚ ଆପଣମାନେ ରିକ୍ସାରେ ଯିବେ ଡ଼ି.ପି.ଆଇଙ୍କ କୋଠିକୁ ?

"ତୁମେ କ'ଣ ତୁମ ସାରଙ୍କୁ ଚିହ୍ନିନ ଶୁଭ୍ରା ଦେବୀ ? ତାଙ୍କ ପାଖରେ ଏତେଦିନ କ'ଣ ପଢ଼ୁଥିଲ ଯେ ?"

ହସିଲା ଶୁଭ୍ରା, "ମୁଁ ବୁଝିଲି ବାସନ୍ତୀ ଦେବୀ, ଘରୋଇ କାମରେ ସରକାରୀ ଗାଡ଼ି ବ୍ୟବହାର କରିବା ମନା । ମୋତେ ଦୁଃଖ ଲାଗେ ବାସନ୍ତୀ ଦେବୀ, ଆଜି କାଲି ଯୁଗରେ ଲୋକେ ଏ ଆଦର୍ଶକୁ ବୁଝିବେତ ? ଓଲଟି ଯଦି ନ କୁହନ୍ତି ଡ଼ରୁଆ ମନ୍ତ୍ରୀ ।"

ତୁମର ସବୁବେଳେ ସେମିତି କଥା ଶୁଭ୍ରା ଦେବୀ । ତୁମ ସହିତ କଥା ହେବାକୁ ଖୁସିଲାଗେ ସେଥିପାଇଁ ।

"ଦେଖନ୍ତୁ ବାସନ୍ତୀ ଦେବୀ, ଆପଣମାନେ ଯଦି କଷ୍ଟ ମନେ ନ କରନ୍ତି, ତେବେ ମୋ ଗାଡ଼ିରେ ବସନ୍ତୁ, ମୁଁ ଆପଣଙ୍କୁ ଡ଼ି.ପି.ଆଇଙ୍କ କୋଠିରେ ପହଞ୍ଚାଇ ଦେବି । ମନେ ରଖନ୍ତୁ ଇଏ ସରକାରୀ ଗାଡ଼ି ନୁହେଁ, ଏହା ମୋ ବାପାଙ୍କ ଗାଡ଼ି । ତେଣୁ ନିଡର ସୁରୁଖୁରୁରେ ଏଥିରେ ବସିପାରନ୍ତି ।"

"ନା, ଥାଉ ଶୁଭ୍ରା ଦେବୀ, ତୁମକୁ ହଇରାଣ କରିବାକୁ ଇଚ୍ଛା ହେଉନି । ଆମେ ସୁବିଧାରେ ରିକ୍ସାରେ ଚାଲିଯାଇ ପାରିବୁଁ ।" ତୁମେ କାହିଁକି ଆମ ପାଇଁ ଅଯଥା ହଇରାଣ ହେବ କହିଲ ?

"ସରକାରୀ ଗାଡ଼ିରେ ଗଲେ ଡ଼ର । ମୋ ଗାଡ଼ିରେ ଗଲେ ବି ଡ଼ର ? ଡରୁଆ ମନ୍ତ୍ରୀଙ୍କୁ ଆହୁରି ଡ଼ରୁଆଣି ମନ୍ତ୍ରୀଆଣୀ" ଏତକ କହି ଠୋ ଠୋ ହସି ଦେଲା ଶୁଭ୍ରା ।

ଏଥର ଗାଡ଼ିରୁ ଓହ୍ଲାଇପଡ଼ି ଗାଡ଼ିର ଦରବାଜା ଖୋଲି ଠିଆହେଲି ଶୁଭ୍ରା । "ଆପଣମାନେ ଗାଡ଼ିରେ ନ ବସିଲେ ଏଠି ରାସ୍ତା ବନ୍ଦ ।" ବାସନ୍ତୀ ରାଧାମଣି ଦେବୀ ଓ ପିଲାମାନେ ବାଧ୍ୟହୋଇ ଗାଡ଼ିରେ ବସିଲେ । ସେମାନେ ବସିଲାରୁ ନିଜେ ଦରବାଜା ବନ୍ଦକରି ଗାଡ଼ିରେ ଷ୍ଟାର୍ଟ ଦେଲି ଶୁଭ୍ରା ।

"ଆଜି କ'ଣ ତୁମ ବାପା ଘରେ ଅଛନ୍ତିକି ଶୁଭ୍ରା ଦେବୀ ? ତୁମେ ତାଙ୍କ ଗାଡ଼ି ନେଇଆସିଛ ନା କଅଣ ?

"ବାପା ତ ବାହାରକୁ ଯାଇଛନ୍ତି । ଆମର ତିନୋଟି ଗାଡ଼ି । ବାପା ଗୋଟିଏ ନେଇ ଯାଇଛନ୍ତି । ମୁଁ ଗୋଟିଏ ନେଇ ଆସିଛି ।"

"ତୁମେ କ'ଣ ଆଜି ନିଜେ ଗାଡ଼ି ଚଳାଉଛ ? ସେଥର ତ ଡ୍ରାଇଭର ଚଳାଉଥିଲା !

"ଆମେରିକାରେ ରହିଲା ଦିନୁଁ ନିଜେ ଗାଡ଼ି ଚଳାଇବାକୁ ଭଲଲାଗେ । ଅଭ୍ୟାସ ହୋଇଯାଇଛିତ ?

"ତୁମ ଗାଡ଼ିଟା ଏତେବଡ଼ କେମିତି ହୋଇଛି ମ ? ସରକାରୀ ଗାଡ଼ି ତ ଏତେବଡ଼ ନୁହେଁ । ଲାଟ୍‌ସାହେବଙ୍କ ଗାଡ଼ିଟା ବଡ଼ । ଏ ଗାଡ଼ିଟା ଲାଟ୍‌ସାହେବଙ୍କ ଗାଡ଼ିଭଳି ହୋଇଛି ।

"ଏଟା, ଏ ଦେଶ ତିଆରି ଗାଡ଼ି ନୁହେଁ । ଏହା ବିଦେଶୀ ଗାଡ଼ି । ଆମେରିକା ତିଆରି । ଆମେରିକାରେ ମୋର ଠିକ୍ ଏମିତି ଗାଡ଼ିଟିଏ ଥିବାରୁ ମୋତେ ଏଇ ଗାଡ଼ିଟି ଚଳାଇବାକୁ ଭଲଲାଗେ ।

"ତୁମେ କେବେ ଫେରି ଆମେରିକା ଯାଉଛ ?"

"ଯେଦିନ । ସାର୍ ଟୁର୍‌ରୁ ଫେରିଆସିବେତ ? ସାରଙ୍କୁ ଦେଖା ନକରି ମୁଁ କ'ଣ ଆମେରିକା ଯାଉଛି ? ମୁଁ ଯେଉଁଦିନ ଯିବି, ଆପଣମାନେ କଣ ଜାଣିପାରିବେନି ?

ଏତିକି କହୁଁ କହୁଁ ଗାଡ଼ି ଡ଼.ପି.ଆଇଙ୍କ ଫାଟକ ଭିତରକୁ ପଶିଲା । କୋଠିର ପୋର୍ଟିକୋରେ ଗାଡ଼ିକୁ ଥୋଇ ଦେଇ ଶୁଭ୍ରା । ଗାଡ଼ିରୁ ବାହାରି ଆସି ଗାଡ଼ିର ଦରବାଜା ଖୋଲି ଠିଆହେଲି ।

ବାସନ୍ତୀ ଗାଡ଼ିରୁ ଓହ୍ଲାଇ ଓହ୍ଲାଉ କହିଲା, "ଆମେ ତୁମକୁ କେମିତି ଧନ୍ୟବାଦ୍ ଦେବୁ ଜାଣିପାରୁନୁ ।"

"ଜାଣିନାହାନ୍ତି ଭଲ ହୋଇଛି । ଜାଣିଲେ ଖରା ଖରାପ ହେବ ।" କହୁଁ କହୁଁ ଖିଲ୍ ଖିଲ୍ କରି ହସିଦେଲା ଶୁଭ୍ରା ।

ଶୁଭ୍ରା ସେମାନଙ୍କୁ ଓହ୍ଲାଇ ଦେଇ ଗାଡ଼ି ନେଇ ଚାଲିଗଲା । ଶୁଭ୍ରା ଚାଲିଗଲା ପରେ ରାଧାମଣି ଦେବୀ ପଚାରିଲେ, "ଇଏ ଝିଅଟି କିଏ ମା ? ଝିଅଟି ଖୁବ୍ ଭଲ । ବଡ଼ଲୋକର ଝିଅ ଭଳି ଜଣାପଡ଼ୁଛି ।"

"ହଁ, ବୋଉ ଏଇ ଝିଅଟି ଆପଣଙ୍କ ପୁଅଙ୍କ ଅତିପ୍ରିୟ ଛାତ୍ରୀ । ବାପା ତାଙ୍କର ଜଣେ ବଡ଼ ବ୍ୟବସାୟୀ ଏହି ସହରରେ । ଝିଅଟି ଆମେରିକାରେ ରହି, ସେଠି ଗବେଷଣା କରୁଛି ।"

"ଝିଅଟି ବାହା ହୋଇନ ବୋଧେ ?"

"ନାଁ ବୋଉ, ବାହା ହୋଇନାହାନ୍ତି ।

× × ×

"ତୁମେ କ'ଣ ଆଜି ଏତେ ସଅଳ ସଅଳ ବାହାରି ପଡ଼ିଲଣି ? ଆଜି ପରା ଛୁଟି ?

"ହଁ, ବାସନ୍ତୀ ଆଜି ମୁଁ ଅଫିସ ଯାଉନ । ମୁଖ୍ୟମନ୍ତ୍ରୀ କ'ଣ ପାଇଁ ଡକାଇଛନ୍ତି ତାଙ୍କ କୋଠିକୁ ।"

"କିନ୍ତୁ ଆଜି ତ କେବିନେଟ ମିଟିଂ ନାହିଁ ?"

"ନା"

"ତୁମକୁ ଆଜିକାଲି ମୁଖ୍ୟମନ୍ତ୍ରୀ ଏତେ ଡକାଉଛନ୍ତି 'କାହିଁକି ? ଏହି ମନ୍ତ୍ରୀ ଚକ୍ରରେ ମୁକରର୍ ହୋଇଯାଉଛ ନା କଅଣ ?" ବାସନ୍ତୀ ମୁହଁରେ ଦୁଷ୍ଟାମିର ହସ ।

ହସିଲ ଅମରେଶ, "ହଁ, ଆଉ କହିବାକୁ ଅଛି ? ମନ୍ତ୍ରୀ ଗୃହକଣ ଭଲଥା ଗୃହକଣ କଣ ଆଉ ଦୁନିଆରେ ଅଛି ?"

ଅମରେଶ ମୁଖ୍ୟମନ୍ତ୍ରୀଙ୍କ କ୍ୱାର୍ଟରରେ ପହଞ୍ଚିଲା ବେଳକୁ ମୁଖ୍ୟମନ୍ତ୍ରୀ ଅମରେଶଙ୍କୁ ଅପେକ୍ଷା କରି ବୈଠକଖାନାରେ ବସିଥିଲେ । ଅମରେଶଙ୍କୁ ଦେଖି ପାଛୋଟି ନେବାପାଇଁ ଧାଇଁଆସିଲେ । ପାଛୋଟି ନେଇଁ ନେଇଁ ପଚାରିଲେ, "କିଛି ଜରୁରୀ କାମ କରୁଥିଲ ନା କଅଣ ? ମୁଁ ଡାକିଲି ବୋଲି କିଛି ଅସୁବିଧା ହୋଇନାହିଁ ତ ?"

"ନାଇଁ ଆଜ୍ଞା, ଫାଇଲ୍ ଦେଖୁଥିଲି । ଆପଣ ଡାକିଲାରୁ ଚାଲିଆସିଲି । ଅସୁବିଧା କିଛି ନାହିଁ ।"

"ଦେଖନ୍ତୁ ଅମରେଶ ବାବୁ । ବଡ଼ ଅଡ଼ୁଆରେ ପଡ଼ିଯାଇଛି ମୁଁ । ଦିଲ୍ଲୀରେ ଦୁଇଥର ପ୍ରଧାନମନ୍ତ୍ରୀଙ୍କ ସହିତ ଦେଖା ହେଲାଣି । ଆମ ରାଜ୍ୟରେ ଆଇନଶୃଙ୍ଖଳା ଭାଙ୍ଗି ପଡ଼ୁଛି ବୋଲି ସେ ବଡ଼ ବିରକ୍ତ ହେଉଥିଲେ । ତୁମେ ଦେଖୁଛ ତ, ଚୋରିଅଡ଼େ ଲୁଟତରାଜ, ନରହତ୍ୟା, ନାରୀଧର୍ଷଣ, ଚୋରାବଜାରୀ, ଅପମିଶ୍ରଣ, ଲାଞ୍ଚ ଭ୍ରଷ୍ଟାଚାର କେମିତି ବଢ଼ି ବଢ଼ି ଚାଲିଛି । ଆମ ଶାସନ ଏଗୁଡ଼ିକୁ ଆୟତ୍ତକରି ପାରୁନି ବୋଲି ପ୍ରଧାନମନ୍ତ୍ରୀ ବଡ଼ କ୍ଷୋଭ କରୁଥିଲେ ।

"ଆଜି ସକାଳେ ମୋତେ ଦିଲ୍ଲୀରୁ ପୁଣି ଫୋନ କରିଥିଲେ । ଆମ ରାଜ୍ୟରେ କେଉଁଠି କ'ଣ ଅସାମାଜିକ ଘଟଣା ହେଉଛି, ସେ ତା'ର ଠିକଣାଖି ଖବର ପାଇଯାଉଛନ୍ତି । ଆଜି ବଡ଼ ବିରକ୍ତ ହୋଇ କହିଲେ, "ଆପଣ ଯଦି ଠିକ୍ ଭାବରେ ଶାସନ ପରିଚାଳନା କରିପାରୁନାହାନ୍ତି, ତେବେ ଶାସନ ଗାଦି ଛାଡ଼ି ଅଲଗା ହୋଇଯାଉ ନାହାନ୍ତି କାହିଁକି ? ଯେଉଁମାନେ ଦକ୍ଷ, ଯେଉଁମାନେ ପାରିବେ, ଆପଣ ସେମାନଙ୍କୁ ବାଟ ଛାଡ଼ିଦିଅନ୍ତୁ ।"

ଆମ ଦଳର ମନ୍ତ୍ରୀମାନେ ଏହାକୁ ଆୟତ୍ତ କରି ପାରୁନଥିବାରୁ ମୁଁ ବଡ଼ ବ୍ୟଥିତ । ଶାସନ କଳକବ୍ଜା ପୁରାପୁରି ଢିଲା ହୋଇଗଲାଣି । ଏହାକୁ କେମିତି ଠିକ୍ ବାଟକୁ ଅଣାଯିବ ତାହାହିଁ ମୋର ଚିନ୍ତା । ଆପଣ ଆମ ଦଳରେ ନୁହଁନ୍ତି, ସତ କିନ୍ତୁ ଆପଣଙ୍କର ଶାସନ କ୍ଷେତ୍ରରେ ପଟୁତା ଦେଖି ଆପଣଙ୍କ ସହିତ ପରାମର୍ଶ ପାଇଁ ଆପଣଙ୍କୁ ଡକାଇଛି । ଆପଣଙ୍କ ଭଳି ଦକ୍ଷ ପ୍ରଶାସକ ଆମ ଦଳରେ ଖୁବ୍ କମ ଅଛନ୍ତି । ଆପଣଙ୍କ ପରାମର୍ଶ ଯେ ମୋତେ ଏ ଦିଗରେ ଠିକ ବାଟ ଦେଖାଇବ, ଏଥିରେ ମୋର ସନ୍ଦେହ ନାହିଁ ।

"ଦେଖନ୍ତୁ ମିଷ୍ଟର ସିଂହ", ଅମରେଶ କହିଲା, "ଆମ ରାଜ୍ୟରେ ଯେଉଁସବୁ ଅସାମାଜିକ କ୍ରିୟାକଳାପ ଚାଲିଛି, ସେସବୁ ମୂଳରେ ଆମ ମନ୍ତ୍ରୀମଣ୍ଡଳ ରହିଛି ବୋଲି ମୋର ବିଶ୍ୱାସ । ଆମ ରାଜ୍ୟରେ ଯେଉଁ ଅରାଜକତା ଚାଲିଛି, ତାହାର ସ୍ରଷ୍ଟା ଆମେ ନିଜେ । ଆପଣ ପ୍ରତ୍ୟେକ ଘଟଣାକୁ ଅନୁଧ୍ୟାନ କରି ଦେଖନ୍ତୁନାହାନ୍ତି । ଏବେ ରାଞ୍ଚି, ଗୁମ୍ଲା, ଚମ୍ପାରଣ, ଗୟା, ମୁଜାଫରପୁର ଜିଲ୍ଲାମାନଙ୍କରେ ଯୁବତୀ-ମାନଙ୍କ ଉପରେ ଯେଉଁ ଗଣଧର୍ଷଣ ହୋଇଗଲା, ସେସବୁ ମୂଳରେ କିଏ ? ଆପଣଙ୍କ ଦଳର ଓ ଆପଣଙ୍କ ଦଳ ସମର୍ଥିତ କେତେଗୁଡ଼ିଏ ଲୋକ ତ ? ମନ୍ତ୍ରୀ ସେମାନଙ୍କ ଲୋକ, ସେମାନଙ୍କର କିଏ କ'ଣ କରିବ ? ଏହି ଦମ୍ଭରେ ସେମାନେ ଯାହା ପାରି ତାହା କରିଗଲେ । ଲୋକେ ବହୁତ ପାଟିଭୁଣ୍ଡ କଲେ ? ଖବର କାଗଜମାନେ କଡ଼ା ଭାବରେ ଶାସନକଳକୁ ଭର୍ତ୍ସନା କଲେ । ଦୋଷୀମାନେ ଧରାପଡ଼ିଲେ । କିନ୍ତୁ ହେଲା କଅଣ ? ଲୋକମାନଙ୍କୁ କୁହାଗଲା ଦୋଷୀମାନଙ୍କୁ ଦଣ୍ଡ ଦିଆଯିବ । ଦୋଷୀମାନେ ଅଟକ ହୋଇ ରହିଲେ । କିଛିଦିନ ପରେ ପୋଲିସକୁ ନିର୍ଦ୍ଦେଶ ଗଲା, କୋହଳ ନୀତି ଧରି ! ଲୋକମାନଙ୍କ ମନରୁ ଏ ଘଟଣା ଯେମିତି ପାଶୋରିଗଲା, ଦୋଷୀମାନେ ଉପଯୁକ୍ତ ପ୍ରମାଣ ଅଭାବରୁ ଖଲାସ ହେଲେ ବା ସାମାନ୍ୟ ଦଣ୍ଡ ପାଇଲେ । ଏହିଭଳି ନାରକୀୟ ଘଟଣାରେ ଯଦି ସଙ୍ଗେ ସଙ୍ଗେ ଦୋଷୀକୁ ଧରାଯାଇ କଠିନ ଦଣ୍ଡ ଦିଆଯାଇ ଥାଆନ୍ତା, ତେବେ ଅନ୍ୟମାନେ ଏହିଭଳି କାର୍ଯ୍ୟ କରିବାକୁ ସାହସ ପାଇନ ଥାନ୍ତେ । ଆପଣମାନଙ୍କ ଦଳର ଲୁକାୟିତ ହସ୍ତକ୍ଷେପ ହେତୁ ପୋଲିସ ବିଭାଗ ନିଷ୍କ୍ରିୟ ହୋଇଗଲା । ତେଣୁ ଦୋଷୀମାନେ ଭୟ ପାଇବା ପରିବର୍ତ୍ତରେ ସାହସ ପାଇଗଲେ । ଘଟଣା ପରେ ଘଟଣା ବଢ଼ି ଚାଲିଲା ।

ଚୋରାଆଡ଼େ ଯେଉଁ ଚୋରା ବଜାରି, ଅପମିଶ୍ରଣ ଚାଲିଛି, ସେମାନେ ତ ଆପଣମାନଙ୍କ ଦଳୀୟ ପାଣ୍ଠିକୁ ଓ ଆପଣଙ୍କ ଦଳର ବିଭିନ୍ନ ସଦସ୍ୟଙ୍କୁ ବେଶ୍ ମୋଟା ରକମର ଭାଗ ଦେଉଛନ୍ତି । ତେଣୁ ସେମାନଙ୍କୁ ଧରିବ କିଏ ? ପୋଲିସ, ଭିଜିଲାନ୍ସ ବିଭାଗ ଜାଣିଶୁଣି ମଧ୍ୟ ଚୁପ୍ ରହୁଛନ୍ତି । ତେଣୁ ଏସବୁ କାର୍ଯ୍ୟ ଦିନକୁଦିନ ନ ବଢ଼ି କମିବ କେମିତି ? ଲୋକମାନେ ଯଦି ସେମାନଙ୍କୁ ଧରିଲେ, ଖବରକାଗଜବାଲା ପାଟିକଲେ, ତେବେ ପୋଲିସକୁ ଖବର ଦିଆଗଲା କୋହଳ ନୀତି ଧରି । ବେଳେ ବେଳେ ପ୍ରମାଣକୁ ନଷ୍ଟ କରାଯାଇ ଦୋଷୀକୁ ଖଲାସ କରି ଦିଆଗଲା । ରାଜ୍ୟରେ ବାହାରେ ଯେଉଁ ଉତ୍କୋଚ ହେଉଛି, ସେହି ଉତ୍କୋଚ-ମାନେତ ଆପଣଙ୍କ ଦଳର ଦଲାଲମାନଙ୍କ ଇଙ୍ଗିତରେ ଚାଲିଛି । ତେଣୁ

ମୋଟାମୋଟି କହିବାକୁ ଗଲେ ସାରା ରାଜ୍ୟରେ ଯଦି ଅସାମାଜିକ କ୍ରିୟା ବଢ଼ି ବଢ଼ି ଚାଲିଛି, ତେବେ ସେଥିପାଇଁ ଶାସକଦଳ, ମାନେ, ଆମେ ସମସ୍ତେ ମୋଟାମୋଟି ଦାୟୀ । ଆପଣମାନଙ୍କ ମନ୍ତ୍ରୀମାନେ ଯଦି ନ୍ୟାୟକୁ ଆଖି ସାମନାରେ ଆଦର୍ଶ କରି ରଖନ୍ତେ, ଯାହା ହେଲେବି ଆମେ ନ୍ୟାୟଠାରୁ ତିଳେମାତ୍ର ଟସିବୁ ନାହିଁ, ତେବେ ଆଖି ପିଛୁଳାକେ ସବୁ ଅସାମାଜିକ କ୍ରିୟା କଳାପ ବନ୍ଦ ହୋଇଯାନ୍ତା । ସେମାନେ କ'ଣ ଜାଣୁନାହାନ୍ତି, ଏହିସବୁ ଅସାମାଜିକ କ୍ରିୟାରେ ଦୋଷୀ କେଉଁମାନେ ? ସେମାନଙ୍କ ଭୟ ସେମାନଙ୍କୁ ଯଦି ଦଣ୍ଡ ଦିଆଉଛନ୍ତି, ତେବେ ଆସନ୍ତା ଭୋଟବେଳକୁ ସେମାନେ ଭୋଟ ପାଇବେନି । ଭୋଟ ନ ପାଇଲେ ମନ୍ତ୍ରୀ ହେବେ କେମିତି ? ମନ୍ତ୍ରୀତ୍ୱ ପାଇଁ ସେମାନଙ୍କର ଏହି ଯେଉଁ ଅହେତୁକ ଲୋଭ, ତାହାହିଁ ସେମାନଙ୍କୁ ଏଭଳି ନୀତି ଧରିବାକୁ ବାଧ୍ୟ କରୁଛି । ଆଜି ଆପଣଙ୍କ ମନ୍ତ୍ରୀମାନଙ୍କର ଯଦି ସତ୍‌ସାହସ ଉଦୟ ହୁଅନ୍ତା, ଆମେ ଭୋଟ ପାଉ ବା ନପାଉ ଆମେ ମନ୍ତ୍ରୀ ହୋଇ ଆସୁ ବା ନଆସୁ, ଆମେ ଦୋଷୀମାନଙ୍କୁ ଉପଯୁକ୍ତ ଦଣ୍ଡ ନ ଦିଆଇ ଛାଡ଼ିବୁନି, ତେବେ ଗୋଟିଏ ବି ସୁଦ୍ଧା ଅସାମାଜିକ କାର୍ଯ୍ୟକଳାପ ଦେଖା ଦିଅନ୍ତାନି ଆମ ରାଜ୍ୟରେ ।

ଆପଣ ଦେଖିଛନ୍ତିତ କଲେଜମାନଙ୍କରେ କେତେ ଗଣ୍ଡଗୋଳ ହେଉଥିଲା । ଆପଣଙ୍କ ଦଳୀୟ ନେତାମାନଙ୍କ ପ୍ରରୋଚନାରେ ଛାତ୍ରମାନେ କଲେଜର ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କୁ ମାନୁନଥିଲେ । ଛାତ୍ରମାନଙ୍କ ନିର୍ଦ୍ଦେଶରେ କଲେଜ ଶାସନ ଚାଲୁଥିଲା । ମୁଁ ଆସିଲି ପରେ ଅଧ୍ୟକ୍ଷମାନଙ୍କୁ ଅଖଣ୍ଡ କ୍ଷମତା ଦେଲି । ଦଳୀୟ ନେତାମାନେ ଯେମିତି କଲେଜରେ ମୁହଁ ନ ପୂରାନ୍ତି ତାହାର ବ୍ୟବସ୍ଥା କଲି । ଅସାମାଜିକ କ୍ରିୟାରେ ଲିପ୍ତଥିବା ଛାତ୍ରମାନଙ୍କ କଠିନ ଦଣ୍ଡାଦେଶର ବ୍ୟବସ୍ଥା କଲି । ଅଧ୍ୟକ୍ଷମାନଙ୍କ ସିଦ୍ଧାନ୍ତ ଉପରେ ଯେଉଁ ହସ୍ତକ୍ଷେପ ଉପରୁ କରାଯାଉଥିଲା, ତାହା ବନ୍ଦହେବା ଫଳରେ ଆପଣମାନେ ମୋ ଉପରେ ଖାଲି ଖପ୍‌ପା ହେଲେ ସିନା, କଲେଜମାନଙ୍କରେ ଶାନ୍ତି ବିରାଜମାନ କଲା । ଆଜିକାଲି ଯେଉଁଠି କାହିଁ ଗଣ୍ଡଗୋଳ ହେଉଛି, ଛାତ୍ରମାନଙ୍କ ସହିତ ଆଲୋଚନା କରି ସେସବୁ ଦୂର କରି ଦିଆଯାଉଛି । ମୁଁ ଯଦି ପିଲାଙ୍କ କଥା ଶୁଣି ଅଧ୍ୟକ୍ଷଙ୍କ ଶାସନରେ ହସ୍ତକ୍ଷେପ କରିଥାନ୍ତି, ତେବେ ଅଧ୍ୟକ୍ଷ ଓ ଅଧ୍ୟାପକମାନେ ନିଷ୍କ୍ରିୟ ହୋଇଥାନ୍ତେ, ପିଲାମାନଙ୍କୁ ଆୟତ୍ତରେ ରଖିବା ସମ୍ଭବ ହୋଇ ନଥାନ୍ତା । ଆପଣମାନେ ମନେ ମନେ ମୋ ଉପରେ ଖୁବ୍ ବିରକ୍ତ ହେଉଥିବେ, ହେଲେ ମୁଁ ସେ ଆଡକୁ ଦୃଷ୍ଟି ନ ଦେଇ ଏହି କଠୋର ନୀତି ଗ୍ରହଣ ଫଳରେ ଛାତ୍ର

ସମାଜରେ ଶାନ୍ତି ବିରାଜିଲା । ମୁଁ ଆଇନକୁ ତା ବାଟରେ ଯିବାକୁ ଦେଉଛି, ପ୍ରତିରୋଧ କରିନି । ଆପଣମାନେ ଆଇନକୁ ତା ବାଟରେ ଯିବାକୁ ଦିଅନ୍ତୁ, ଶାସନ କଳ ତା ବାଟରେ ଗଡ଼ନ୍ତୁ ଆପଣମାନେ ପ୍ରତିରୋଧ କରନ୍ତୁନି, ଦେଖିବେ ଅଳ୍ପା ସବୁ ଠିକ୍‌ଠାକ୍ ହୋଇଯିବ ।"

ହଠାତ୍ ବୈଠକଖାନା ଭିତରକୁ ତରତର ହୋଇ ମୁଖ୍ୟମନ୍ତ୍ରୀଙ୍କ ପ୍ରାଇଭେଟ ସେକ୍ରେଟେରୀ ପଶିଆସିଲେ ।

"ସାର୍, ପ୍ରଧାନମନ୍ତ୍ରୀ ପୁଣି ଦିଲ୍ଲୀରୁ ଫୋନ୍ କରିଛନ୍ତି ।" ଅମରେଶ ସହିତ ଆଲୋଚନାକୁ ଅଧା ରଖି ମୁଖ୍ୟମନ୍ତ୍ରୀ ତାଙ୍କ କ୍ୱାର୍ଟରର ଅଫିସ କକ୍ଷରେ ଥିବା ଫୋନ ପାଖକୁ ଦୌଡ଼ିଲେ ।

× × ×

"ହଇହେ, ଶୁଣିଲଣି, ତୁମେତ ସବୁ ସ୍କୁଲ ଇନସପେକସନ କରୁଛ ପ୍ରାଇମେରୀ ସ୍କୁଲଠାରୁ କଲେଜ ପର୍ଯ୍ୟନ୍ତ । ମନ୍ତ୍ରୀଙ୍କ ଘରେ ଏବେ ଯେଉଁ ସ୍କୁଲଟି ହୋଇଛି, ତାକୁ ବାଦ୍ ପକାଇଦେଇଛ କାହିଁକି ? ସେ ସ୍କୁଲଟିକୁ ଇନସପେକସନ କରନାହିଁ ତ ? କ'ଣ ମନ୍ତ୍ରୀଙ୍କ ଘର ବୋଲି ଡ଼ରିଯାଉଛନା କଅଣ ?"

"ତୁମେ କ'ଣ ଯେ କହୁଛ, ମୁଁ ବୁଝିପାରୁନି ରାଧାମଣୀ ? ମନ୍ତ୍ରୀଙ୍କ ଘରେ କି ସ୍କୁଲ ?"

"ହଁ ମ, ମନ୍ତ୍ରୀଙ୍କ ଘରେ ପରା ଏବେ ଗୋଟିଏ ପ୍ରାଇମେରୀ ସ୍କୁଲ ହୋଇଛି । ପିଲାଙ୍କୁ ପଢ଼ାଇବା ପାଇଁ ଜଣେ ଟ୍ରେନିଂ ପାସ ଶିକ୍ଷୟିତ୍ରୀ ମଧ୍ୟ ଅଛନ୍ତି ।"

"ମନ୍ତ୍ରୀଙ୍କ ଘରେ ସ୍କୁଲ ? କାହିଁ ମୁଁ ତ କିଛି ଜାଣିନି ?"କେବେଠାରୁ ସେ ସ୍କୁଲ ବସିଲା ଶୁଣେ ?

"ତୁମେ ଏତେବଡ଼ ରାଜ୍ୟର ଡ଼ି.ପି.ଆଇ ହୋଇ, ଆଉ କ'ଣ ଖବର ରଖିଛ ? ମନ୍ତ୍ରୀଙ୍କ ଘରେ ଏବେ ପ୍ରାଇମେରୀ ସ୍କୁଲଟିଏ ହୋଇଛି ।"

"ପ୍ରାଇମେରୀ ସ୍କୁଲ ?"

ହସିଲେ ରାଧାମଣି ଦେବୀ, "ହଁ, ପ୍ରାଇମେରୀ ସ୍କୁଲ, ସେ ସ୍କୁଲରେ ଶିକ୍ଷୟିତ୍ରୀ କିଏ ଜାଣ ?"

"କିଏ ?"

"ଆଉ କିଏ ହୁଅନ୍ତା ? ତୁମ ବୋହୂରାଣୀ ।"

"ମୁଁ ସେଦିନ ପଦ୍ମ ପୁଅ ଘରକୁ ବୁଲି ଯାଇଥିଲି । ତୁମେ ତ ଟୁରରେ ଯାଇଥିଲ । ମୁଁ ଭାବିଲି ଘରେ ତ କେହି ନାହାନ୍ତି, ଯାଏ ଟିକିଏ ପୁଅ ଘର ଆଡ଼େ ବୁଲିଆସେ । ଗଲାବେଳକୁ ଗୋଟିଏ ଘରେ ତୁମ ବୋହୂ ତୁମ ନାତି ନାତୁଣୀଙ୍କୁ ପାଠପଢ଼ାଉଛି ଠିଆହୋଇ । ଶିକ୍ଷକ ଶିକ୍ଷୟିତ୍ରିମାନେ ସ୍କୁଲରେ ଯେମିତି କ୍ଲାସ ନିଅନ୍ତି ଠିକ୍ ସେଇମିତି । ମୁଁ ଗଲାବେଳକୁ ସେ ବ୍ଲାକବୋର୍ଡ ପାଖରେ ଠିଆହୋଇ ପିଲମାନଙ୍କୁ ଅଙ୍କ ପଢ଼ାଉଥିଲା । ଠିକ୍ ସ୍କୁଲ ଶିକ୍ଷୟିତ୍ରୀ ଭଳି ପୋଷାକ । ଦେଖିଲେ ଯିଏ କହିବ କେଉଁ ପ୍ରାଇମେରୀ ସ୍କୁଲର ମାଷ୍ଟ୍ରାଣୀଟିଏ । ପିନ୍ଧିଛି ଧଳା ପିଚୁପାଡ଼ିଆ ଧଡ଼ିର ମିଲ୍ ଲୁଗା । ପ୍ରାଇମେରୀ ସ୍କୁଲର ମାଷ୍ଟ୍ରାଣୀ-ମାନେ ଯେଉଁ ଲୁଗା ପିନ୍ଧନ୍ତି ଠିକ୍ ସେଇ ଲୁଗା !"

"ଯାହା କୁହ ରାଧାମଣି, ଆମ ବୋହୂନା, ବୋହୂମାନଙ୍କ ଭିତରେ ଖଣ୍ଡିଏ । ଏତେ ଆଦର୍ଶ ବୋହୂ ମୁଁ ସାରା ମନ୍ତ୍ରିମଣ୍ଡଳରେ କେଉଁଠି ଦେଖିନି । ପୁଅ ଯେମିତି ସୁନାମୁଣ୍ଡା, ବୋହୂ ଜାଣ ହୀରା ମୁଣ୍ଡା । ଭଗବାନ ଦୁହିଁଙ୍କୁ ଠିକ୍ ଭାବରେ ଜୁଟାଇଛନ୍ତି ।

"ତୁମେ ତ ଦେଖିନ, ବୋହୂର ପାଠପଢ଼ା ରୀତି, ଅତି ଚମତ୍କାର । ମୁଁ ବେଶ ମାଷ୍ଟ୍ରାଣୀଙ୍କୁ ଦେଖିଛି, ସେମାନଙ୍କ ପାଠପଢ଼ା ବୋହୂ ପଢ଼ାର ପାସଙ୍ଗରେ ପଡ଼ିବନି । କେତେ ପରିଶ୍ରମୀ ? କାମଦାମରେ କେହି ତାକୁ ଟପାଇ ପାରିବେନି । ହାତ ବୁଲାଇ ଆଣିଲେ ନଅ ତରକାରୀ ଛଅ ଭଜା ।

"ହଁ, ମୁଁ ଶୁଣୁଛି ବୋହୂ ଭାରି ଯୋଗା, ଆଉ ଭାରି ପରିଶ୍ରମୀ । ସବୁ-ବେଳେ ଘରକାମରେ ଲାଗିଥାଏ । ସେ ଜଣେ ଏତେବଡ଼ ମନ୍ତ୍ରୀଙ୍କ ସ୍ତ୍ରୀ, ସେ କେବେ ନିଜକୁ ସେମିତି ଭାବେନି ।"

"ପରିଶ୍ରମୀ ଭଳି ପରିଶ୍ରମୀ ! ସକାଳ ନଅଟାରେ ପୁଅ ଅଫିସକୁ ଯିବ । ଗୃହର ପୂଜାରୀ ରାନ୍ଧିଲେବି ବୋହୂ ନିଜେ ହାଣ୍ଡିଶାଳ ଘରେ ପଶି କିଛି ଗୋଟାଏ

ପ୍ରକାର ନକଲ, ପୁଅ ମନ ପାଇବନି । ପୁଅକୁ କ'ଣ ଗୃହକର ପୂଝାରୀ ଦେଲେ ଖାଇବ ? ସେହି ବୋହୂ ପରଶିଲେ ଯାଇ ଖାଇବ ।

ତା ତ ସତ, ପୁଅ ମନ ବୋହୂ ଯେତେ ଜାଣିପାରିବ; ଅନ୍ୟମାନେ କ'ଣ ଜାଣିପାରିବେ ? ବିପିନ ବାବୁ କହିଲେ ।

"ମନ୍ତ୍ରୀଙ୍କ ଘରେ ରାନ୍ଧିବାପାଇଁ ପୂଝାରୀ ଅଛନ୍ତି, ପୁଅ କ'ଣ ପୂଝାରୀ ରନ୍ଧାରେ କେବେ ସନ୍ତୁଷ୍ଟ ? ବୋହୂ ହାଣ୍ଡିଶାଳକୁ ନ ଗଲେ ନ ହୁଏ । ପିଲାଗୁଡ଼ାକ ବି ବାପ ପରି । ମା ନ ଦେଲେ ଖାଇବେନି ।

ପୁଅ ଅଫିସକୁ ବାହାରିଗଲେ ବୋହୂର ମାଷ୍ଟ୍ରାଣୀ କାମ ଆରମ୍ଭ । ପିଲାଙ୍କୁ ସ୍କୁଲରେ ପଢ଼ାଇଲା ଭଳି ପଢ଼ାଇବ ନଅଟାରୁ ବାରଟା ପର୍ଯ୍ୟନ୍ତ । ଗୋଟାଏ ବେଳକୁ ପୁଅ ଅଫିସରୁ ଆସିବ ମଧ୍ୟାହ୍ନ ଭୋଜନ ପାଇଁ । ରନ୍ଧାରନ୍ଧି ତଦାରଖ କରିବ । ନିଜେ ବି ରାନ୍ଧି ବସିବ । ପୁଅ ଖାଇସାରି ଦୁଇଟା ବେଳକୁ ଗଲେ, ସେ ପୁଣି ପିଲାଙ୍କ ପଢ଼ାରେ ଲାଗିଯିବ । ପଢ଼ା ସରୁ ସରୁ ସନ୍ଧ୍ୟା ପାଞ୍ଚଟା ।

ପେର ପୁଅ ପାଇଁ ଜଳଖିଆ ତିଆରି । ବୋହୂଟା ଛଅମାସ ହେବ ପାଟନା ଆସିଲାଣି, ହେଲେ ପାଟନା ସହର କ'ଣ ଦେଖିଲାଣି ? ଆମ ଘରଛଡ଼ା ସେ ଆଉ କାହା ଘର ଦେଖିନାହିଁ । ଯାହା ମୁଁ ଥରେ ଦୁଇଥର ଆମ ଘରକୁ ନେଇ ଆସିଥିଲି ସେତିକି ? ଦିନେ ବି ସୁଦ୍ଧା ବଜାର ବୁଲିଯାଇନି କି ସିନେମା ଥିଏଟର ଦେଖି ଯାଇନି ।"

ମୁଁ ଖାଲି କହୁଛି, ରାଧାମଣି, ସେ ବୋହୂ ନୁହେଁ ଖଣ୍ଡେ ହୀରା ମୁଣ୍ଡା । ଏତେ ଅଳ୍ପ ବୟସରେ ହୋଇଅଛି, ଭଗବାନ ତାକୁ କି ଉଚ୍ଚ ଆସନ ଦେଇନାହାନ୍ତି । କିନ୍ତୁ ସେଥିପାଇଁ କେବେ ଗର୍ବ, କି ଅହଙ୍କାର ମୁଁ ତା'ଠାରେ ଶୁଣିନି ।

"ସେ ଜଣେ ମନ୍ତ୍ରୀଙ୍କ ସ୍ତ୍ରୀ ବୋଲି କେବେ ନିଜ ଭାବିବା ମୁଁ ଦେଖିନି । ମନ୍ତ୍ରୀମାନଙ୍କ ସ୍ତ୍ରୀଙ୍କୁ ମୁଁ ଦେଖିନି ପାଟନାରେ, କି ଗର୍ବ କି ଅହଙ୍କାରରେ ସେମାନେ ଫୁଲି ଉଠୁଛନ୍ତି ? କି ଷ୍ଟାଇଲରେ ପୋଷାକପତ୍ର, ଦାସୀପରିବାରୀ ନେଇ କି ଆଡ଼ମ୍ବରରେ ରହୁନାହାନ୍ତି ? ତାଙ୍କ ଗୃହକର ପୂଝାରୀ ବି ସରକାରୀ ଗାଡ଼ି ନହେଲେ ଗୃହଖଣ୍ଡେ ବୁଲନ୍ତିନି । ସେମାନଙ୍କ ଘରେ ଦେଖିବ, ରାଜରାଜୁଡ଼ା କାରବାର । କିନ୍ତୁ

ଆମ ବୋହୂକୁ ଦେଖିଲେ କେହି ଭୁଲରେ ଭାବବନି, ତା ସ୍ୱାମୀ ଜଣେ ଏତେବଡ଼ ମନ୍ତ୍ରୀ ବୋଲି ।

"ସେମିତି ବୋହୂ ଭାଗ୍ୟରେ ଥିଲେ ମିଳେ ରାଧାମଣୀ, ଭାଗ୍ୟରେ ଥିଲେ ମିଳେ ।"

"ମୁଁ ସେଦିନ ଟୁରରେ ଯାଇଥିଲି କେଉଁଠିକି ଜାଣ ? ଗୋବିନ୍ଦପୁର । ପୁଅ ବୋହୂଙ୍କ କର୍ମକ୍ଷେତ୍ରକୁ । ସେ ଅଞ୍ଚଳରେ ଅସମ୍ଭବ ପ୍ରକାର ଉନ୍ନତି ଫଳରେ ଦିନେ ମୁଖ୍ୟମନ୍ତ୍ରୀ ମୋତେ ଆଦେଶ ଦେଲେ ସେ ଅଞ୍ଚଳ ଦେଖିଯିବାକୁ ଓ ସେଠାରୁ ଆସି ସେଠାକାର ଉନ୍ନତି ସମ୍ବନ୍ଧରେ ସରକାରଙ୍କୁ ଏକ ରିପୋର୍ଟ ଦେବାକୁ । ହଁ ଯିବ, ହଁ ଯିବ ବୋଲି କହି ଗଡ଼ାଇ ଗଡ଼ାଇ ଆସୁଥିଲି ।

ସେ ଦିନ ନିଜେ ମୁଖ୍ୟମନ୍ତ୍ରୀ, ଶିକ୍ଷାମନ୍ତ୍ରୀଙ୍କୁ ଧରି ବାହାରି ପଡ଼ିଲେ ସେ ଅଞ୍ଚଳକୁ ବୁଲିଯିବା ପାଇଁ । ମୁଁ ଆଉ ନଯାଇ ରହିପାରୁଛି କେମିତି ? ମୁଁ ସେଦିନ ସେମାନଙ୍କ ଗହଣରେ ଯାଇଥିଲି । ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶରେ ବହୁ ବିଭାଗର ନିର୍ଦ୍ଦେଶକମାନେ ବି ଯାଇଥିଲେ । ସେସବୁ ଅଞ୍ଚଳରେ କ'ଣ କ'ଣ ଉନ୍ନତି ହୋଇଛି ଦେଖିବାପାଇଁ । ମୁଁ ସେ ଅଞ୍ଚଳର ପ୍ରାଇମେରି ସ୍କୁଲଠାରୁ ଆରମ୍ଭକରି ହାଇସ୍କୁଲ ପର୍ଯ୍ୟନ୍ତ ସବୁ ଦେଖିଲି । କି ଚମତ୍କାର କରିଛି ପୁଅ ସେ ଅଞ୍ଚଳକୁ, ସାକ୍ଷାତ ଜାଣ ବୈକୁଣ୍ଠପୁର ।

ହାଇସ୍କୁଲରେ କ'ଣ ଶିକ୍ଷା ଦିଆଯାଉଛି ସେଠି ? ସିଲେଇ ଶିକ୍ଷାଠାରୁ କୃଷିକାମ, ବଢ଼େଇ କାମ, କମାର କାମ, କୁମ୍ଭାର କାମ, କାଗଜ ତିଆରି, ମହୁ ଚାଷ, ଡ଼ାଏରି ଫାର୍ମ କୁକୁଡ଼ା ଫାର୍ମ, ମାଛଚାଷ ପର୍ଯ୍ୟନ୍ତ ସବୁ ବିଷୟରେ ପିଲାମାନଙ୍କୁ ଶିକ୍ଷା ଦିଆଯାଉଛି । ଏଇସବୁ କର୍ମଗତ ଶିକ୍ଷାପାଇଁ ଭଲ ଭଲ ଶିକ୍ଷକ ମଧ୍ୟ ରଖାଯାଇଛି ସେଠି । ସେସବୁ ଗ୍ରାମଦାନ ସଂସ୍ଥାର ପରିଚାଳନାଧୀନରେ ରହିଛି ।

ତୁମ ସମୁଦ୍ଧିଙ୍କ ସହିତ ସେ ଦିନ ଦେଖାହେଲା ମୋର । ବଡ଼ ଅମାୟିକ ଲୋକ ସେ । ମଣିଷ ଭିତରେ ମଣିଷଟିଏ । ମୋତେ କେତେ ଆଦର ଅଭ୍ୟର୍ଥନା କଲେ ।

ଟୁଅର ନିର୍ଦ୍ଦେଶରେ କାର୍ଯ୍ୟକାରୀ ସମିତିର କର୍ମକର୍ତ୍ତାମାନେ ଆମକୁ ଗାଁ ସାରା ସବୁ ବୁଲାଇ ଦେଖାଇଲେ । ପୁଅ କ'ଣ ସତେ ନକରିଛି ସେଠି ?

କେଉଁ ଗୃଷ ନାହିଁ ସେଠି ? ଜମିରେ ପାଣିମଡ଼ା ଗୃଲିଛି, ରବିଫସଲ, ପନିପରିବା ଗୃଷଠାରୁ ସବୁ ପ୍ରକାର ଗୃଷ ଗୃଲିଛି । ବର୍ଷକୁ ତିନିପ୍ରକାର ଧାନଗୃଷ ହେଉଛି ସେଠି ।

ଏବେ ମାଛ ଗୃଷ, କୁକୁଡ଼ା ଗୃଷ, ଛେଳି ଗୃଷ, ଡ଼ାଏରୀ ଫାର୍ମ । ଗାଁରେ ଯାହା କ୍ଷୀର ଘିଅ ମହୁ ଭାସିଯାଉଛି । ପୁଅ ସେ ଗାଁକୁ କ'ଣ କରି ନ ଗଢ଼ିଛି ? ସ୍କୁଲ ପିଲାଗୁଡ଼ିକ କି ହୃଷ୍ଟପୁଷ୍ଟ ? ପ୍ରତିଦିନ ସେମାନଙ୍କୁ ମାଗଣାରେ ଦୁଧ ପିଇବାକୁ ଦିଆଯାଉଛି । ପ୍ରତି ମାସରେ ପିଲମାନଙ୍କ ସ୍ୱାସ୍ଥ୍ୟ ଡ଼ାକ୍ତର ମାଗଣାରେ ଆସି ପରୀକ୍ଷା କରୁଛି ।

ଗୋବିନ୍ଦପୁରର ଉନ୍ନତି ଦେଖି ଆଖପାଖ ସବୁ ଗାଁ ସେଇ ଗ୍ରାମଦାନ ମାର୍ଗକୁ ଧରି ଆଗେଇ ଗୃଲିଛନ୍ତି । ଆମ ଗାଁ ମଧ୍ୟ ସେଥିରୁ ବାଦ ଯାଇନି । ଆମ ଗାଁର ଲୋକଗୁଡ଼ାକ କି ଗରୀବ ଥିଲେ, ବର୍ତ୍ତମାନ ଦେଖିବ, ସମସ୍ତଙ୍କ ଅବସ୍ଥା ଏବେ ଖୁବ୍ ଭଲ । ସମସ୍ତେ ଆନନ୍ଦରେ ଗାଁର ଉନ୍ନତିରେ ଲାଗିପଡ଼ିଛନ୍ତି । ଆମ ବୋହୂ ରାଣୀଙ୍କ ନିର୍ଦ୍ଦେଶରେ ଆମ ଗାଁରେ ଗ୍ରାମଦାନ ସଂସ୍ଥା ଗୃଲୁଥିଲା । ପୁଅ ବେଳେ ବେଳେ ଯାଏ, କିନ୍ତୁ ସବୁ ଦାୟିତ୍ୱ ବୋହୂ ବୁଝୁଥିଲା ।

ମୁଖ୍ୟମନ୍ତ୍ରୀ ସେସବୁ ଅଞ୍ଚଳ ଦେଖି ଭାରି ଖୁସି ହୋଇଗଲେ । ଗୋବିନ୍ଦପୁର ଗାଁରେ ସରକାରଙ୍କ ପାଇଁ ଆଉ କିଛି କରିବାକୁ ବାକିନାହିଁ । ମୁଖ୍ୟମନ୍ତ୍ରୀ ଯେଉଁ ସବୁ ଅଞ୍ଚଳକୁ ଯାଆନ୍ତି ଲୋକମାନେ ତାଙ୍କୁ ଘେରିଯାଇ କହନ୍ତି ଆମର ଯା ଦରକାର, ଆମର ତା ଦରକାର । ଆମ ଗାଁର କିଛିନାହିଁ । ଆମପାଇଁ ଯା କରିଦିଅ, ତା କରିଦିଅ ଏମିତି କେତେ କଥା । କିନ୍ତୁ ଗୋବିନ୍ଦପୁର ଗାଁରେ ତା'ର ଠିକ୍ ଓଲଟା । ସେମାନେ ଓଲଟି ମୁଖ୍ୟମନ୍ତ୍ରୀଙ୍କୁ ଦେଖାଇ ଗୃଲିଛନ୍ତି, ଆମେ ଯା କରିଛୁ, ଆମେ ତା' କରିଛୁ ଆମର ଯାକୁ ଦେଖ, ଆମର ସେ କିଛିପୁଟି ଦେଖ, ଇତ୍ୟାଦି । କେହି ଭୁଲରେ ମାଗୁନାହାନ୍ତି ଆମର ଏହା ଦରକାର, ଆପଣ ଆସିଛନ୍ତି, ସେତକ କରିଦେଇ ଯାଆନ୍ତୁ ।

ମୁଖ୍ୟମନ୍ତ୍ରୀ ଏସବୁ ଦେଖିସାରି ଫେରି ଆସୁଁ ଆସୁଁ ଗ୍ରାମବାସୀମାନଙ୍କୁ କହିଲେ, "ହଇହେ, ମୁଁ ତ ଏ ଗାଁକୁ ଆସିଛି । ତୁମେମାନେ ତ ମୋତେ ନାନା ସାହାଯ୍ୟ ମାଗିପାରନ୍ତ ? ଅନ୍ୟ ଗାଁର ଲୋକେ ଯେମିତି ମାଗୁଛନ୍ତି । ତୁମ୍ଭେମାନେ କ'ଣ ଚୁପ୍, ମୋତେ କିଛି ମାଗୁନ ?"

"ଆଜ୍ଞା, ମାଗିବୁ କଅଣ ? ଆମର କ'ଣ ନାହିଁ ଯେ ଆମେ ଆପଣଙ୍କୁ ମାଗିବୁ ? ଅମରେଶ ବାବୁ ଆମକୁ ଶିଖାଇ ଦେଇଛନ୍ତି, ଅମ ହାତ, ଆମର ପରିଶ୍ରମ ଆମର ସବୁକିଛି । ଆମେ ଯଦି ମେହନତ କରିବୁ, ଆମର ସବୁ ହୋଇ ପାରିବ । ମାଗି କରି କେହି କେବେ କାହା ଗାଁକୁ ଉନ୍ନତ କରି ପାରିଲାଣି ? କଥାରେ ଅଛି ପର ମାଗି ଆଣିଲା ତିଅଣ ସଡ଼କେ । ସେଥିରେ କ'ଣ ପେଟ ପୂରିବ ? ଆମେ କାମ କରି ଜାଣିଛୁ, ମାଗି ଶିଖିନୁ ।

"ଆମେ କ'ଣ ଦେଖିନୁ ଅଜ୍ଞା, ପାଖ ଗାଁମାନଙ୍କରେ ସରକାରୀ ସାହାଯ୍ୟ କେମିତି ହରିଲୁଟ ହେଉଛି । ସେହି ହରିଲୁଟ ଠାରୁ ଦୂରରେ ରହିବାକୁ ଅମରେଶ ବାବୁ ଆମକୁ ଶିଖାଇଛନ୍ତି ।

"ଆପଣ ଅମ ଗାଁକୁ ଦେଖିଯାଇ ଯଦି ଖୁସି ହୋଇଗଲେ, ସେତିକି ଆମର ଯଥେଷ୍ଟ । ଆମେ ଆପଣଙ୍କୁ ମାଗିବୁ କ'ଣ ଆଜ୍ଞା ? ଆମେ ବର୍ତ୍ତମାନ ପରି ପାଖ ଗାଁ ଗୁଡ଼ିକୁ ସାହାଯ୍ୟ କରିବା ଅବସ୍ଥାକୁ ଆସି ଗଲୁଣି । ହେଉ, ଆମ ଏ ଗାଁ ଠାରୁ ସାତମାଇଲ ଦୂର ହରିପୁର ଗାଁ । ଗ୍ରାମଦାନ ସଂସ୍ଥାକୁ ଛଅମାସ ତଳେ ଆମେ ସେଠାରେ ଗୋଟିଏ କେନାଲ ଖୋଳିବା ପାଇଁ ପଚିଶ ହଜାର ଟଙ୍କା ଦାନ କରିଛୁଁ । ସେଥି ସହିତ ଯଦି ଦରକାର ପଡ଼ିବ ତେବେ ଆଉ ବି କିଛି ଋଣ ଦେବାକୁ ଆମେ ରାଜି ହୋଇଛୁ ।

ଗୋବର୍ଦ୍ଧନପୁର ଗାଁର ଲୋକଙ୍କ ଠାରୁ ଏକଥା ଶୁଣି ମୁଖ୍ୟମନ୍ତ୍ରୀ ଘଡ଼ିଏ କାଳ ସେମାନଙ୍କ ମୁହଁକୁ ଅନାଇ ଠିଆ ହୋଇଗଲେ । ଏ ଗାଁର ଲୋକଙ୍କର ସାହସ ପ୍ରକୃତରେ କମ୍ ନୁହେଁ ? ନିଜର ସବୁ ପ୍ରକାର ଉନ୍ନତି କରି ସାରି ଅନ୍ୟ ଗ୍ରାମଗୁଡ଼ିକୁ ଆଗେଇବା ପାଇଁ ସାହାଯ୍ୟ ଦେବାକୁ ଆରମ୍ଭ କରି ଦେଲେଣି । ବାସ୍ତବିକ ସମସ୍ତେ ମିଳିମିଶି ନିଜ ହାତରେ କାମ କଲେ, ସବୁ ପ୍ରକାର ଅସମ୍ଭବ କାମକୁ ସମ୍ଭବ କରି ହେବ । ମୁଖ୍ୟମନ୍ତ୍ରୀ ସେହି ଗାଁକୁ ଆସି ଅନ୍ତତଃ ଏତିକ ଶିଖିକରି ଅସିଲେ ସେଠୁ ।

ମୁଖ୍ୟମନ୍ତ୍ରୀ ବାଟସାରା କହି କହି ଅସିଲେ ଖାଲି ଗୋବର୍ଦ୍ଧନପୁର ଅଞ୍ଚଳର ପ୍ରଶଂସା । ସେଠାକାର ଲୋକେ ତାଙ୍କର ଆଖି ପ୍ରକୃତରେ ଖୋଲି ଦେଇଛନ୍ତି । ବିନା ସରକାରୀ ସାହାଯ୍ୟରେ କ'ଣ କରିହୁଏ ଗୋବର୍ଦ୍ଧନପୁର ହେଲା ତାହାର ଜ୍ୱଳନ୍ତ ପ୍ରମାଣ । ଅମ ଗାଁର ଯେଉଁସବୁ ଉନ୍ନତ ହୋଇଛି

ମୁଁ ଦେଖି ତାଟଙ୍ଗା ରାଧାମଣି । ଆମ ଘର ଛଡ଼ା ଗ୍ରାମବାସୀଙ୍କର ସମସ୍ତଙ୍କ ନୂଆ ଘର ହୋଇଗଲାଣି । ଆମ ଘର ସେମିତି ଭଙ୍ଗା ହୋଇପଡ଼ି ରହିଛି । ଶୁଣିଲି, ସେ ଘର ଭଙ୍ଗା ଯାଇ ସେଠି ଗୋଟିଏ ଆଦର୍ଶ ସ୍କୁଲ୍ ବସିବ । ଆବାସିକ ସ୍କୁଲ୍ ପିଲାମାନେ ସବୁ ହଷ୍ଟେଲରେ ରହିବେ । ପାଠପଢ଼ା ସଙ୍ଗେ ସଙ୍ଗେ ସେମାନଙ୍କ ଚରିତ୍ର ଗଠନ କରାଯିବ । କାମ ଧନ୍ଦା ଶିକ୍ଷା ଦିଆଯିବ । ଏ ଯୋଜନା କାହାର ଜାଣ ?

"କାହାର ?"

"ଆଉ କାହାର ହଅନ୍ତା, ତୁମ ବୋହୂ ରାଣୀଙ୍କର । ମୁଁ ଏତେଦିନ କାଳ ସମସ୍ତଙ୍କର ଗୁରୁ ହୋଇ ଆସିଥିଲି । ଏସବୁ ଦେଖିଲା ପରେ ମୋର ଆଖି ଖୋଲି ଯାଇଛି ରାଧାମଣି । ପୁଅ ବୋହୂ ଯାହା କରିଛନ୍ତି, ସେ ମୋର ବର୍ତ୍ତମାନ ଗୁରୁ ହେବା କଥା, ସେମାନଙ୍କ ଠାରୁ ମୋର ବହୁତ ଶିଖିବାର ଅଛି ।

ମୁଖ୍ୟମନ୍ତ୍ରୀ ଫେରି ଆସି ଆସେମ୍ବ୍ଲିରେ ଯେଉଁ ଭାଷଣ ଦେଲେ, ସାରା ଆସେମ୍ବ୍ଲି ସରଗରମ ହୋଇ ଉଠିଲା । ସେ ପ୍ରତ୍ୟେକ ଏମ.ଏଲ.ଏ.ଙ୍କୁ ଚ୍ୟାଲେଞ୍ଜ କଲେ "ତୁମେ ମାନେ ଯଦି ପ୍ରକୃତରେ ଜନ ପ୍ରତିନିଧି, ତେବେ ସେ ଅଞ୍ଚଳ ଯାଇ ଦେଖି ଆସ, ସେଠାକାର ଲୋକମାନେ ବିନା ସରକାରୀ ସାହାଯ୍ୟରେ ଗାଁ ଗୁଡ଼ିକର କି କି ଉନ୍ନତି କରିପାରିଛନ୍ତି, ଦେଖି ଆସିଲେ ତୁମମାନଙ୍କ ଆଖି ଖୋଲିଯିବ । ପ୍ରକୃତରେ ଦେଶସେବା, କି ଗଠନମୂଳକ କାମ, କି ରଚନାତ୍ମକ କାମ କ'ଣ, ସେହିଠାରେ ଦେଖ । ମୁଁ ଆମ ଦଳ ଓ ଆମ ବିରୁଦ୍ଧ ଦଳ ସମସ୍ତଙ୍କୁ କହୁଛି, ସେ ଅଞ୍ଚଳକୁ ଯାଇ ଥରେ ଥରେ ବୁଲି ଆସନ୍ତୁ । ଲୋକେ କେମିତି ଉତ୍ସାହରେ ଗ୍ରାମ ଗଠନ କାର୍ଯ୍ୟରେ ଲାଗି ପଡ଼ିଛନ୍ତି, ଦେଖନ୍ତୁ । ସେମାନେ କେମିତି ସରକାରୀ ସାହାଯ୍ୟକୁ ଘୃଣା କରୁଛନ୍ତି, ସେମାନଙ୍କଠାରୁ ଶିଖନ୍ତୁ । ସେମାନେ ଓଲଟି କହୁଛନ୍ତି ଆମେ ତ ଅନ୍ୟ ଗାଁକୁ ସାହାଯ୍ୟ ଦେବାକୁ ଆରମ୍ଭ କଲୁଣି, ଆମକୁ ସରକାର କି ସାହାଯ୍ୟ ଦେବେ ? ଆମର କୌଣସି ଜିନିଷଟା ବାକି ନାହିଁ ଯେ ସରକାରୀ ସାହାଯ୍ୟ ଦରକାର ହେବ । ଗ୍ରାମଦାନର ଅପୂର୍ବ ସୁଫଳ, ଆମ ସମସ୍ତଙ୍କ କଳ୍ପନା ବାହାରେ । ଖାଲି ଗ୍ରାମଦାନ କରିଦେଲେ ସେ ଏଭଳି ସୁଫଳ ମିଳେ ତା ନୁହେଁ, ତାକୁ ଠିକ ଭାବରେ କାର୍ଯ୍ୟକାରୀ କରାଇପାରିଲେ ସୁଫଳ ମିଳେ ? ଏହି ଉନ୍ନତିର ପଥ ପ୍ରଦର୍ଶକ ହେଲେ ଆମର ଅମରେଶ ବାବୁ ।

× × ×

ସେଦିନ ଅମରେଶ ଘରକୁ ଶୁଭ୍ରା ଯେତେବେଳେ ଆସିଲା ବେଳକୁ ଅମରେଶ ଠାରୁ ବିଦାୟ ନେଇ ଅମରେଶର ପଦଧୂଳି ନେଉଥିଲେ ମିଷ୍ଟର ଗୁପ୍ତା । ମିଷ୍ଟର ଗୁପ୍ତାଙ୍କୁ ଅମରେଶ ଘରେ ଦେଖି ହଠାତ୍ ଆଶ୍ଚର୍ଯ୍ୟ ହୋଇଗଲା ଶୁଭ୍ରା । ଏହି ଗୁପ୍ତା କି ହୀନମାନ ନ କରିଛି ଅମରେଶକୁ ସେ ପାଟନା ସାଏନ୍ସ କଲେଜରେ ଅଧ୍ୟାପକ ଥିଲା ବେଳେ । ବାର ତେରବର୍ଷ ତଳର ଘଟଣା ଗୋଟି ଗୋଟି ହୋଇନାଚି ଗଲା ଶୁଭ୍ରାର ମାନସ ପଟରେ ଠିକ୍ ଛାୟାଚିତ୍ର ପରଦାରେ ଚଳଚ୍ଚିତ୍ର ଭଳି । ମିଷ୍ଟର ଗୁପ୍ତା ଚାଲିଗଲା ପରେ ଶୁଭ୍ରା ପଚାରିଲା" ସାର୍, ଏ ମହାତ୍ମା କ'ଣ ଆଜି ଆପଣଙ୍କ ପାଦଧୂଳି ନେଉଛନ୍ତି

"ହଁ, ଶୁଭ୍ରା, ଆଜି ମୁଁ ମନ୍ତ୍ରୀ ହୋଇଛି ବୋଲି ଯେ ସେ ମୋ ଗୋଡ଼ ଧୂଳି ନେଉଛି ତା ନୁହେଁ, ଚାକିରିରେ ଅସୁବିଧା ହୋଇଛି ବୋଲି ଆଜି ଏତେ ଗୁରୁଭକ୍ତି । ମନ୍ତ୍ରୀ ହେବା ଆଗରୁ ତ ଆଉ ଆଖିରେ ଚାହୁଁ ନଥିଲା । ଆଜି ମୋର ପରମ ଭକ୍ତ ରୁହି ଘରରେ ଆସି ଗୋଡ଼ ଧୂଳି ନେଉଛି । ମୋ ସହିତ ତାର ସମ୍ପର୍କ, ତୁମେ ତ ଜାଣ ଶୁଭ୍ରା, ମୁଁ ଆଉ ଅଧିକ ତୁମକୁ କ'ଣ କହିବି ?"

"କିଛି ଗୋଟାଏ ବଡ଼ ଧରଣର ଅସୁବିଧା ନ ପଡ଼ିଲେ ଏ ମହାତ୍ମା ଆପଣଙ୍କ ରୁହି ଘରରେ ଆପଣଙ୍କ ପାଦ ତଳେ ଲୋଟି ପଡ଼ୁ ନ ଥାନ୍ତେ ?"

"ହଁ ଶୁଭ୍ରା ତୁମେ ଠିକ ସନ୍ଦେହ କରିଛ । ବଡ଼ ଅସୁବିଧାରେ ପଡ଼ି ଯାଇଛି ବିଚାରା । ଭିଜିଲାନ୍ସ ବିଭାଗ ଧରିଛି, ଏ ତାଙ୍କ ଚାକିରିକାଳ ଭିତରେ ବିହାରର ସବୁ ବଡବଡ଼ ସହରରେ ଗୋଟିଏ ଗୋଟିଏ ପ୍ରାସାଦ କେମିତି ତିଆରି କଲେ ? ନିଜ ଭାଇ ବନ୍ଧୁ କୁଟୁମ୍ବଙ୍କ ନାଁରେ ବିହାରର ବଡ଼ ବଡ଼ ବେଙ୍କର ଲକରରେ ହୀରା ଖଚିତ ସୁନା ଗହଣା ଆଦି କେମିତି ରଖିଲେ ; ଏଇ ବାରଚଉଦ ବର୍ଷ ଚାକିରି କାଳ ଭିତରେ ସେ ଏତେ ଅର୍ଥ କେମିତି ଉପାର୍ଜନ କଲେ ତାଙ୍କୁ ପଚରା ଯାଇଛି । ଆୟକର ବିଭାଗ ଏବେ ତାଙ୍କର ସବୁ ଘର ଓ ବେଙ୍କ ଲକର ଖାନତଲାସ କରି ଏହାଙ୍କ ସମ୍ପତ୍ତିର ମୂଲ୍ୟ କୋଟିଏ ଟଙ୍କା ପାଖାପାଖି ବୋଲି ଅଟକଳ କରିଛି । ବିଚାରା, କୈଫିୟତ ଦେବାକୁ କିଛି ବାଟ ପାଉନି । ଏଇଥି ଯୋଗୁଁ ଆଜି ତା'ର ଏତେ ଭକ୍ତି ବାହାରି ପଡୁଛି ମୋ ଠାରେ ।

"ସାର ଆପଣ ତାଙ୍କୁ କ'ଣ କହିଲେ ? ରକ୍ଷା କରିବାର ପ୍ରତିଶ୍ରୁତି ଦେଇ ନାହାନ୍ତି ତ ?"

"ଇଏତ, ଭିଜିଲାନ୍‌ସ ଓ ଆୟକର ବିଭାଗ କଥା । ମନ୍ତ୍ରୀ ଭାବରେ ଏଭଳି ଅନ୍ୟାୟକାରୀଙ୍କୁ ମୁଁ ବା କ ସାହାଯ୍ୟ ଦେଇପାରେ ? ତୁମେତ ଜାଣିଛ ଶୁଭ୍ରା, ଏଭଳି ଅନ୍ୟାୟ କାମ ଦେଖିଲେ ମୋ ହାଡ଼ କେମିତି ଜଳେ ?"

"ଠିକ୍ କରିଛନ୍ତି ସାର୍, ଏଭଳି ଅସାଧୁ ଲୋକଙ୍କୁ ଦୟା ଦେଖାଇବା ମାନେ ମହାପାପ ।"

"ଭିଜିଲାନ୍‌ସ ବିଭାଗ ଏହାଙ୍କୁ ଏମିତି ଧରିଛି ଯେ ଖସିଯିବାର ଉପାୟ ନାହିଁ । ଆୟକର ବିଭାଗ ତ ଏହାଙ୍କ ଉପରେ ଖପ୍ପା । ଚିଫ୍ ସେକ୍ରେଟେରୀ ତ ଏହାଙ୍କ ବିରୁଦ୍ଧରେ । ମୁଖ୍ୟମନ୍ତ୍ରୀଙ୍କୁ ଭାରି ଜୋରରେ ଧରାଧରି କରିଛି ଇଏ । ମୁଖ୍ୟମନ୍ତ୍ରୀ ମୋ ଉପରେ ଏହାଙ୍କୁ ରକ୍ଷାକରିବାର ପ୍ରତିଶ୍ରୁତି ଦେଇପାରୁ ନାହାନ୍ତି । ଦଳୀୟ ପାଣ୍ଠିକୁ ମୋଟା ଆକାରରେ ଦେଣନେଣ ହୋଇଛି ମଧ୍ୟ, ହେଲେ ସବୁ ଅକାରଣ । ତଥାପି ରକ୍ଷାପାଇବାର ଭରସା ଛାଡ଼ି ନାହାନ୍ତି ଇଏ । ମୋତେ ପ୍ରଭାବିତ କରିବାପାଇଁ ଯେତେ ପ୍ରକାର ଉପାୟ ସବୁ କରି ଥକି ଗଲେଣି । ଏମିତିକି ଏ ମୋ ବାପା ବୋଉଙ୍କୁ ମୁଣ୍ଡିଆ ମାରି ମାରି ଏହାଙ୍କ ଆଗ ବାଳ ସବୁ ଉପୁଡ଼ି ଗଲାଣି ।"

"ଏ ଲୋକଟାକୁ ମୋଟେ ଦୟା ଦେଖାଇବେନି ସାର୍, ଇଏ ଏକନମ୍ବର ଚରିତ୍ରହୀନ । ଏମାନେ ଲାଞ୍ଚ ନେଇ ନେଇ ଧରାକୁ ସରା ବୋଲି ମନେ କଲେଣି । ଦେଶଟା ଏହିଭଳି ଲୋକଙ୍କ ଦ୍ୱାରା ଛାରଖାର ହୋଇଗଲାଣି । ଆମ ଦେଶ ତଥା ସମାଜର ଏଇମାନେ ହେଲେ ପହିଲି ନମ୍ବର ଶତ୍ରୁ । ଭଗବାନ ବି ଏମାନଙ୍କୁ କ୍ଷମା ଦେଇପାରିବେନି ସାର୍ ।"

"ମୁଁ ଯାହା ଖବର ପାଇଛି ଶୁଭ୍ରା, ଇଏ ଖସିଯାଇ ପାରିବନି । ଆୟକର ବିଭାଗ ଏହାଙ୍କର ସମସ୍ତ ସଂପତ୍ତି ବାଜ୍ୟାପ୍ତ କରିନେବା ଉପରେ । ଭିଜିଲାନ୍‌ସ ମୋକଦ୍ଦମା ଯୋଗୁଁ ଏହାଙ୍କ ଚାକିରୀ ଯିବ, ଓ ଏ ମଧ୍ୟ କିଛିଦିନ ସଶ୍ରମ କାରାଦଣ୍ଡ ଭୋଗ କରିବେ ।"

ଏହିଭଳି କେତୋଟି ଆଦର୍ଶ ଦଣ୍ଡ ଏହି ଅସାଧୁତା ପାଇଁ ମିଳିଗଲେ ବଡ଼ ବଡ଼ ଅଫିସରମାନଙ୍କର ଏଇ ସରକାର ପ୍ରତି ଟିକିଏ ଡ଼ର ଆସିବ । ନଚେତ୍

ଏମାନେ ବେଟରବାପୁ ହୋଇ ଯାଁପାଣ ଗାଧା କରଯାଉଛନ୍ତି । ଆମ ନେତା-ମାନେ ଏମାନଙ୍କ ମୁହଁ ଆହୁରି ଯାହା ବଢ଼ାଇ ଦେଉଛନ୍ତି, ତା'ହ କମିଯିବ ।

"ତୁମେ ଆଜ କୁଆଡ଼େ ଚାଲିଆସିଲ ଶୁଭ୍ରା ? ତୁମେ ଆଉ କେତେଦିନ ଏଠି ରହୁଛ ଶୁଣେ ?"

"ନାଇଁ ସାର୍, କାଲି ମୁଁ ଏଠୁ ଆମେରିକା ଚାଲି ଯାଉଛି । ବୋମ୍ବେରେ ସାନ ମଉସାଙ୍କ ଘରେ ଦିନଟାଏ ରହି ସେଠୁଁ ଆମେରିକା ଯିବ । ଆପଣଙ୍କୁ ଓ ବାସନ୍ତୀ ଦେବୀଙ୍କୁ ଦେଖା କରିବାପାଇଁ ଚାଲିଆସିଲି ଆଜ ।

"ଆରେ, ତୁମ କ'ଣ ଏତେ ଶୀଘ୍ର ଚାଲିଯାଉଛ । ହଉ ବୁଝ, ମୁଁ ବାସନ୍ତୀକୁ ଖବର ଦିଏ । ବାସନ୍ତୀ ଦେବୀ ଘରକୁ ପଶି ଆସୁଁ ଆସୁଁ କହିଲେ, "ଆପଣ ଏତେ ଶୀଘ୍ର ଆମେରିକା ଚାଲିଯିବେ ଶୁଭ୍ରା ଦେବୀ ? ଯିବା ପୂର୍ବରୁ ଟିକିଏ ମୁହଁ ମିଠା ନ କରି ଯିବେ କେମିତି ?"

ଏତିକ କହି ବାସନ୍ତୀ ଘର ଭିତରକୁ ପୁଣି ଫେରି ଯାଇ ଚୋଟିଏ ପ୍ଲେଟରେ କିଛି ମିଠା ଓ ଗିଲାସରେ କିଛି ଜଳ ଧରି ହାଜର ହୋଇଗଲେ ସଙ୍ଗେ ସଙ୍ଗେ । ଶୁଭ୍ରା ହାତରେ ସେତକ ଧରାଇଦେଇ ସୋଫାରେ ବସୁ ବସୁ କହିଲେ, "ଆପଣଙ୍କର ଆମ ପ୍ରତି ଆଦର କଦାପି ଭୁଲି ହେବନି ଶୁଭ୍ରା ଦେବୀ । ଆମ ପାଇଁ ପାଟନା ଭଳି ଏକ ମରୁଭୂମିରେ ଆପଣ ଥିଲେ ଏକ ଓଏସିସ । ଏହି ମାସେ କାଳ ଆପଣଙ୍କ ସହିତ ଦିନଗୁଡ଼ାକ ବେଶ୍ ଆନନ୍ଦରେ କଟିଯାଉଥିଲା ।"

"ଫେରି କେବେ ଆସିବ ଶୁଭ୍ରା ଅମରେଶ ପଚାରିଲେ ।

"ସାର୍, କହିହେଉନି । କେବେ ପୁଣି ସୁବିଧା ଜୁଟିଲେ ଚାଲିଆସିବି ।"

"ଆରଥରକୁ ତୁମେ ଆସିଲା ବେଳକୁ ଆମେ ହୁଏତ ଏଠି ନଥିବୁ ଶୁଭ୍ରା ଦେବୀ ।" ବାସନ୍ତୀ କହିଲେ ।

"ଏଠି ଥିବୁ କି ଅନ୍ୟ କେଉଁଠି ଥିବୁ, ତା ବି ଏକ ସନ୍ଦେହବାଚକ ପ୍ରଶ୍ନ ଶୁଭ୍ରା । ଭଗବାନରେ ଥିଲେ ପୁଣି ଦେଖା ହେବ ।" ଅମରେଶ କହିଲେ ।

"ଆପଣ ଏମିତି କ'ଣ କହୁଛନ୍ତି ସାର୍ ?"

"ସମସ୍ୟର ଗର୍ତ୍ତରେ କେତେବେଳେ କ'ଣ ହେବ କ'ଣ କହିହେବ ଶୁଭ୍ରା ? ତୁମ ଯାତ୍ରୀ ସଫଳ ହେଉ, ଏତିକ ମାତ୍ର ଭଗବାନଙ୍କଠାରେ ପ୍ରାର୍ଥନା ।

× × ×

"ଆମେ ପାଟନା ଆସିଲେଣି ବର୍ଷେ ପାଖାପାଖି ହେବ । ମୁଁ ଶୁଣୁଛି ଏଠି ମିନର୍ଭା ସିନେମା ହଲରେ କ'ଣ ଗୋଟାଏ ଭଲ ପିକ୍ଚର ପଡ଼ିଛି । ଘର ଶିକ୍ଷୟିତ୍ରୀ ହୋଇଛି । ପିଲାମାନଙ୍କ ପାଇଁ ଖୁବ୍ ଭଲ ହୋଇଛି । ଆମେ ଟିକିଏ ଦେଖି ଯାଆନ୍ତେନ ? ବୋଉ ଯାଇ ଦେଖି ଆସିଲେଣି । ମୋତେ କହୁଥିଲେ ଦେଖି ଆସିବାପାଇଁ ।

"ବୋଉ ଯେଉଁଦିନ ଗଲା, ତୁମକୁ ନେଇ ଗଲାନି ସାଙ୍ଗରେ ?"

"ତୁମକୁ ତ ବୋଉଙ୍କର ଘର ଡର । ମନ୍ତ୍ରୀଙ୍କ ଝିଅ ଆସିଥିଲା ଡି.ପି.ଆଇଙ୍କ ଗାଡ଼ିରେ ଗଲେ ଲୋକେ କ'ଣ କୁହାକୁହି ହେବେ, ସେଇ ଡରରେ ସେ ମୋତେ ଡାକିଲେନି । ନହେଲେ ତାଙ୍କ ଇଚ୍ଛା ଥିଲା ମୋତେ ସାଙ୍ଗରେ ନେବା ପାଇଁ ।

"ହେଉ, କେଉଁଦିନ ଯିବ କୁହ ? ସନିଆକୁ ପଠାଇଦେଇ ଏଡ଼ଭାନସଡ୍ ଟିକେଟ କରିଆଣିଥିବ । ଦେଖ, ସରକାରୀ ଚପରାଶିଙ୍କୁ ପଠାଇବ ନାହିଁଟି ?"

"ତୁମେ ଯିବଟି ?"

"ମୁଁ ନଗଲେ କ'ଣ ହେବନି ? ତୁମେ ଆଗତୁରା ଟିକେଟ କିଣିଥାଅ । ଦେଖିବା କ'ଣ ହେଉଛି । ମୋର ଯଦି ମିଟିଂ ପଡ଼ିଯିବ, ଟିକିଏ ଅସୁବିଧା ହୋଇଯାଇପାରେ ।"

"ରବିବାର ଦେଖି ଟିକଟ କଲେ ତ ଭଲ ହେବ ? ରବିବାର ଦିନ ତ ତୁମର ଖୁବ୍ କମ ମିଟିଂ ପଡ଼େ ?

"ହେଉ କରିଆଣ ।

କେତୋଟା କରିବ ?"

“ଗୁରଟା କରିବ । ଆଉ କେତେଟା କରନ୍ତକ ? ମୁଁ ତ ନଗଲେ ତୁମେ ଯିବନି । ଆଜିକାଲି ସିନେମା ଯାହା ହେଲାଣିନା, ସ୍ତ୍ରୀ ଲୋକମାନେ ଏକା ଯିବା ମୋଟେ ନିରାପଦ ନୁହେଁ ।

ଯେଉଁଦିନ ସନିଆ ସିନେମା ଟିକେଟ ଆଣିଲା, ସେଦିନ ଘରେ ପିଲାମାନଙ୍କ ଆନନ୍ଦ କହିଲେ ନସରେ । ସେମାନେ ତ ଖୁବ୍ କମ ସିନେମା ଦେଖନ୍ତି, ସିନେମା ନାଁ ଶୁଣିଲେ ଖୁସି ନହେବେ ବା କେମିତି ? ସିନେମା ଯିବା ଦୁଇଦିନ ଆଗରୁ ପିଲାମାନଙ୍କ ଆଖିକୁ ମୋଟେ ନିଦ ନାହିଁ । ପାଠପଢ଼ା ବି ଗୋଳମାଳ ହୋଇଗଲାଣି ।

ଟିକେଟ କରିବା ପରଦିନ ଅମରେଶ କହିଲା, “ଦେଖ ବାସନ୍ତୀ, ଟିକେଟ ସିନା କରିଦେଲି ଗୋଟିଏ ଅସୁବିଧା ହୋଇଗଲା ।”

“କ’ଣ ହେଲାକି ?” ବାସନ୍ତୀ ପଚାରିଲା ।

“ରବିବାର ଦିନ ଦୁଇଟାରେ ଛାତ୍ର ପ୍ରତିନିଧିମାନଙ୍କ ସହିତ ଏକ ମିଟିଂ କରିବାପାଇଁ ରାଜି ହୋଇଗଲି । ମୋର ଖିଆଲ ନାହିଁ, ତୁମ ସିନେମା କଥା । ମିଟିଂ ହେବ ସେକ୍ରେଟେରିଏଟ୍‌ରେ । ମିଟିଂ ଆରମ୍ଭ ହେବ ଦିନ ଦୁଇଟାରେ । ସରୁ ସରୁ ପାଞ୍ଚଟା ଛଅଟା ହୋଇଯାଇପାରେ । ଛାତ୍ରମାନଙ୍କ ସହିତ ଆଲୋଚନା କେତେବେଳେ ସରିବ କ’ଣ କହିହେବ ? ତୁମ ସିନେମା ବେଳତ ସନ୍ଧ୍ୟା ଛଅଟା । ତେବେ ଗୋଟିଏ କଥା କରିବ । ତୁମେ ସାଢ଼େ ପାଞ୍ଚଟା ସୁଦ୍ଧା ପିଲାମାନଙ୍କୁ ନେଇ ସିନେମାହଲ ଠାରେ ପହଞ୍ଚିଯାଇ ମୋତେ ଅପେକ୍ଷା କରିଥିବ । ମୁଁ ମିଟିଂ ସାରି ସିଧାସଳଖ ଆସିବି ସିନେମା ହଲକୁ । ସିନେମା ହଲରେ ଆମେ ସାଙ୍ଗ ହେବା । ତୁମେ ପିଲାମାନଙ୍କୁ ନେଇ ଏକା ଯାଇପାରିବ ତ ? ରିକ୍ସାରେ ଚାଲିଯିବ ।

“ହଁ, ଯାଇପାରିବ ।”

ମୁଁ ସେକ୍ରେଟେରିଏଟରୁ ଘରକୁ ଫେରିବା ବାଟରେ ମିନର୍ଭା ସିନେମା ହଲ ଆଗରେ ଓହ୍ଲାଇପଡ଼ିବ । ତୁମେତ ସେଠି ଥିବ । ମିଶି ସିନେମା ଦେଖିବା ।

ସେଦିନ ଗ୍ରାମ ପ୍ରତିନିଧିମାନଙ୍କ ସହିତ କଥାବାର୍ତ୍ତା ଚାଲିଲା ଢେର୍ ସମୟ । ସହଜେ କ'ଣ କଥାବାର୍ତ୍ତା ଶେଷ ହେଉଛି ? କଥାବାର୍ତ୍ତା ଯଦି ବିଫଳ ହେଉଛି ତେବେ ଗ୍ରାମ ଧର୍ମଘଟ ଆରମ୍ଭ ହୋଇଯିବ । ଅମରେଶ ଗ୍ରାମ ଧର୍ମଘଟ ଆରମ୍ଭ କରିବାକୁ ଦେବା ମତଲବରେ ମୋଟେ ନୁହେଁ । ପିଲାଙ୍କ ଦାବୀ ଯେତେ ଗ୍ରହଣ କରାଯାଇ ପାରେ, ସେ ଗ୍ରହଣ କରିବାକୁ ତିଆର । ପିଲାମାନଙ୍କ ଦାବୀ ସେମିତି କିଛି ଅଯୌକ୍ତିକ ବି ନୁହେଁ । ମନ୍ତ୍ରୀଙ୍କ ସହ କଥାବାର୍ତ୍ତାରେ ପିଲାଏ ଭାରି ଖୁସି । ଯାହାହେଉ, ଏ ମନ୍ତ୍ରୀ ପ୍ରକୃତରେ ସେମାନଙ୍କ କଥା ଶୁଣୁଛନ୍ତି । କଥାବାର୍ତ୍ତା ସରୁ ସରୁ ପାଞ୍ଚଟା ପଇଁତିରିଶ ମିନିଟ ହୋଇଗଲା ।

ଅମରେଶ ପିଲାମାନଙ୍କୁ ବିଦା କରିଦେଇ ସଙ୍ଗେ ସଙ୍ଗେ ଚାଲିଆସିଲା ସିନେମା ହଲକୁ । ସେକ୍ରେଟେରିଏଟରୁ ଘରକୁ ଯେଉଁ ରାସ୍ତାରେ ଫେରେ, ଠିକ୍ ସେଇ ରାସ୍ତାରେ ପଡ଼େ ମିନର୍ଭା ସିନେମା ହଲ । ତେଣୁ ସେ ଯେଉଁ ସରକାରୀ ଗାଡିରେ ସେକ୍ରେଟେରିଏଟ ଯାଇଥିଲା, ମିନର୍ଭା ସିନେମା ହଲ୍ ଆଗରେ ଧେଇ ଗାଡ଼ିରୁ ଓହ୍ଲାଇପଡ଼ି ଗାଡ଼ିଟିକୁ ପଠାଇ ଦେଲା ନିଜ କୋଠିକୁ । ସେ ସିନେମା ଦେଖିସାରି ପିଲାମାନଙ୍କ ସହ ରାତିରେ ଫେରିବ ରିକ୍ସାରେ ।

ଅମରେଶ ମିନର୍ଭା ସିନେମା ହଲ ସମ୍ମୁଖରେ ସରକାରୀ ଗାଡ଼ିରୁ ଓହ୍ଲାଉଛି, ଜଣେ ପ୍ରେସ ସମ୍ବାଦଦାତା ସେଠି ବୁଲୁଥିଲେ । ମନ୍ତ୍ରୀଙ୍କୁ ସରକାରୀ ଗାଡିରୁ ଓହ୍ଲାଇବା ଦେଖି ସେ ତାଙ୍କ ଗାଡ଼ିର୍ ଓହ୍ଲାଇବା ଫଟୋ ସଙ୍ଗେ ସଙ୍ଗେ ଉଠାଇ ନେଲେ । ପ୍ରେସ ସଂବାଦଦାତା ହେଉଛି ବିରୋଧୀଦଳ ଖବରକାଗଜର ।

ସେଦିନ ରାତିରେ ସଙ୍ଗେ ସଙ୍ଗେ ବିରୁଦ୍ଧଦଳର ମୁଖପତ୍ରରେ ବାହାରି-ପଡ଼ିଲା ଭୂଦାନୀ ମନ୍ତ୍ରୀଙ୍କ ସରକାରୀ ଗାଡ଼ିରେ ସିନେମା ଦେଖା । ସକାଳୁ ଉଠି ଅମରେଶ ସକାଳ ଖବରକାଗଜ ଖୋଲି ଦେଇଛି କି ନାହିଁ ପ୍ରଥମ ପୃଷ୍ଠାରେ ବାହାରି ପଡ଼ିଛି ଏହି ଖବର । ସେଥି ସହ ସରକାରୀ ଗାଡ଼ିରୁ ସିନେମା ହଲ୍ ସମ୍ମୁଖରେ ଓହ୍ଲାଇବା ଫଟୋ ମଧ୍ୟ ବାହାରି ପଡ଼ିଥାଏ । ସେ ଏହାକୁ ଦେଖି ଚମକି ପଡ଼ିଲା ।

ନିଜ ସମ୍ମାନ ପ୍ରତି ବଡ଼ ଆଘାତ ଲାଗିଲା ଅମରେଶର । ସଙ୍ଗେ ସଙ୍ଗେ ମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଇସ୍ତଫାପତ୍ର ମୁଖ୍ୟମନ୍ତ୍ରୀଙ୍କଠାକୁ ପଠାଇଦେଲା । ତତ୍‌ପରେ ସ୍ତ୍ରୀଙ୍କୁ ଡ଼ାକି କହିଲା, "ବାସନ୍ତୀ, ଜିନିଷପତ୍ର ବନ୍ଧାବନ୍ଧି କର, ଆମେ ଆଜି

ଚାଲିଯିବା ଗୋବର୍ଦ୍ଧନପୁର । ତୁମେ ଗୋବର୍ଦ୍ଧନପୁର ଯିବାପାଇଁ ପରା ବ୍ୟସ୍ତ ହେଉଥିଲ ? ଦିନ ଦଶଟାରେ ଏଠୁଁ ବସ୍ ଧରିବାକୁ, ଯିବା ଗୋବର୍ଦ୍ଧନପୁରକୁ ।"

ବାସନ୍ତୀ ଏଇ କଥା କେଇପଦରେ ଚମକିପଡ଼ିଲା । "ଆଁ କ'ଣ ହେଲାକି ? ହଠାତ୍ ଏମିତି କ'ଣ କହୁଛ ମ ?"

"ହେଇଟି ଦେଖ, ଏଇ ଖବରକାଗଜ । ଆମ ପ୍ରଶଂସା କେମିତି ବାହାରି ପଡ଼ିଛି ଏଥିରେ ।

ବାସନ୍ତୀ ଖବରକାଗଜରୁ ପ୍ରକୃତ କଥାଟା ଜାଣିନେଲା । ସେ ବି ତ ଚାହୁଁଥିଲା, ଏଠୁଁ କେମିତି ପଳାଇବାକୁ । ଯାହାହେଉ, ଏତେ ଦିନକେ ଭଗବାନଙ୍କର ସୁଦୟା ହେଲା ।

ସେ ପିଲାମାନଙ୍କୁ ତରତର କରି ଗାଧୋଇ ପାଧୋଇ ଖୁଆଇ ପିଆଇ ବାହାରି ପଡ଼ିଲା ବସ୍ ଷ୍ଟେସନ ଅଭିମୁଖେ । ପ୍ରାଇଭେଟ ସେକ୍ରେଟେରୀଙ୍କୁ ଘର ଦାୟିତ୍ୱ ବୁଝାଇ ଦେଇ ଅମରେଶ ଓ ବାସନ୍ତୀ ଗୋଟିଏ ରିକ୍ସାରେ ବାହାରି ପଡ଼ିଲେ । ସେମାନେ ତ ଆସିଲାବେଳେ ଗୋଟିଏ ଦୁଇଟି ସୁଟକେଶ ନେଇ ଆସିଥିଲେ ଗୋବର୍ଦ୍ଧନପୁରରୁ । ସେଇ ସୁଟକେଶ ଧରି ସେମାନେ ଚାଲିଲେ ବସ୍ ଷ୍ଟାଣ୍ଡ ।

ଅମରେଶ, ବାସନ୍ତୀ ଓ ଛୁଆପିଲାଙ୍କୁ ଗୋବର୍ଦ୍ଧନପୁରରେ ସମସ୍ତେ ଦେଖି ତାଟଙ୍ଗା । ପ୍ରଥମେ ପ୍ରଥମେ ଭାବିଲେ ମନ୍ତ୍ରୀ ବୋଧହୁଏ ନିଜ ଅଞ୍ଚଳକୁ ଗସ୍ତରେ ଆସିଛନ୍ତି । ଆସିଥିଲେ ତ ସରକାରୀ ଗାଡ଼ିରେ ଆସିଥାନ୍ତେ । ସରକାରୀ ବସରେ କାହିଁକି ? ବୁଝି ବୁଝି ଅମରେଶ ମନ୍ତ୍ରୀତ୍ୱ ଛାଡ଼ିଦେଇ ନିଜ କର୍ମକ୍ଷେତ୍ରକୁ ଫେରି ଆସିଛି । ଅମରେଶଙ୍କୁ ଦେଖି ଆଖପାଖ ଗାଁର ଲୋକମାନେ ଦୌଡ଼ିଆସିଲେ । ମନ୍ତ୍ରୀତ୍ୱ ଛାଡ଼ି ଆସିଥିବାରୁ ସମସ୍ତେ ଦୁଃଖ କଲେ । କିନ୍ତୁ ପରମୁହୂର୍ତ୍ତରେ ପୁଣି ଆନନ୍ଦ, ଯାହାହେଉ ବର୍ତ୍ତମାନ ଗାଁର ଉନ୍ନୟନ କାମ ଅଧିକ ବେଗରେ ଆଗେଇବ ।'

ଅମରେଶଠାରୁ ଇସ୍ତଫାପତ୍ର ପାଇ ମୁଖ୍ୟମନ୍ତ୍ରୀ ଏ କ'ଣ ହେଲା ଭାବି ନ ପାରି ଗୁମମାରି କିଛି ସମୟ ବସିଗଲେ । କେତେ ବଡ଼ ଛୋଟ ଧର୍ମଘଟଟାକୁ

କେତେ ଦକ୍ଷତାର ସହିତ ଏଡ଼ାଇ ଦେଇ ଏତେବଡ଼ କୃତିତ୍ୱ ହାସଲକଲା ପରେ ସଙ୍ଗେ ସଙ୍ଗେ ଇସ୍ତଫା ? ଇସ୍ତଫାର କାରଣ କିଛି ଦିଆଯାଇନି । ପାରିବାରିକ ଅସୁବିଧା ହେତୁ ସେ ଇସ୍ତଫା ଦେବାକୁ ଚାହିଁଲେ ।

ମୁଖ୍ୟମନ୍ତ୍ରୀ ସେତେବେଳକୁ ଖବରକାଗଜ ପଢ଼ି କଥାଟା କ'ଣ ଜାଣି ଗଲେଣି । ସେକ୍ରେଟେରିଏଟରୁ ମିଟିଂ ସାରି ଘରକୁ ଫେରିବା ବାଟରେ ଅମରେଶ ବାବୁ ଗାଡିରୁ ସିନେମା ହଲଠାରେ ଓହ୍ଲାଇଗଲେ । ସେହି ଗାଡ଼ିଟି ତାଙ୍କୁ ଘରକୁ ଆଣିବା କଥା । ଏଥିରେ ସରକାରୀ ଗାଡି କେଉଁଠି ଘରୋଇ କାମ ପାଇଁ ବ୍ୟବହୃତ ହେଲା, ଯା ପାଇଁକି ଏତେବଡ଼ ଦୁର୍ନାମ ଖବରକାଗଜରେ ରଟିଗଲା ମନ୍ତ୍ରୀଙ୍କ ସଚ୍ଚୋଟପଣିଆ ନେଇ । ଏହାକୁ ତ ସରକାରୀ ଗାଡ଼ିର ଅପବ୍ୟବହାର ବୋଲି ଧରିଯାଇ ନପାରେ ?"

ସେଦିନ ବିଧାନସଭା ଥାଏ । ଅମରେଶର ଇସ୍ତଫା ପତ୍ର ଧରି ମୁଖ୍ୟମନ୍ତ୍ରୀ ବିଧାନସଭାକୁ ଆସିଲେ । ଖବରକାଗଜ ପଢ଼ି ବିରୋଧୀ ଦଳମାନେ ପ୍ରଶ୍ନ ପଚାରିବାକୁ ଜାଗ୍ରତ୍ତ ହୋଇ ରହିଥାନ୍ତି । ପ୍ରଥମ ଘଣ୍ଟାଟି ପ୍ରଶ୍ନୋତ୍ତର ବେଳ ।

ବିରୋଧୀ ଦଳ ନେତା ଠିଆ ହୋଇ ପ୍ରଶ୍ନ ପଚାରିଲେ, "ମୁଖ୍ୟମନ୍ତ୍ରୀ ମହାଶୟ କହିବେ କି, ଆମ ଶିକ୍ଷାବିଭାଗର ମନ୍ତ୍ରୀ ଅମରେଶ ବାବୁ ଗତକାଲି ସରକାରୀ ଗାଡ଼ିରେ ମିନର୍ଭା ହଲକୁ ସିନେମା ଦେଖି ଯାଇଥିଲେ କି ? ଯଦି ଯାଇଥାନ୍ତି ତେବେ ଏହାକୁ ସରକାରୀ ଗାଡ଼ିର ଅପବ୍ୟବହାର ହେଲା ବୋଲି କୁହାଯିବ କି ନାହିଁ ?

ମୁଖ୍ୟମନ୍ତ୍ରୀ ବଡ ବିମର୍ଷ ବଦନରେ ଉଠି ଠିଆ ହୋଇ କହିଲେ, "ମୁଁ ମାନ୍ୟବର ବିରୋଧୀଦଳ ନେତାଙ୍କୁ ଉତ୍ତର ଦେବା ପୂର୍ବରୁ ଗୋଟିଏ ଦୁଃଖଦାୟକ କଥା ସାରା ଗୃହକୁ ଜଣାଇଦେବାକୁ ଚାହେଁ । ଏତେ ଦିନ ଧରି ଏକ ଦକ୍ଷ ମନ୍ତ୍ରୀ ଭାବରେ ଅମରେଶବାବୁ ଆମ ଭିତରେ ଥିଲେ । ସେ ବର୍ତ୍ତମାନ ତାଙ୍କ ମନ୍ତ୍ରୀ ପଦରୁ ଇସ୍ତଫା ଦେଇ ସେ ତାଙ୍କ ନିଜ ଗାଁକୁ ବାହୁଡ଼ି ଗଲେଣି । ତାଙ୍କ ଇସ୍ତଫାକୁ ମୁଁ ବାଧ୍ୟହୋଇ ଗ୍ରହଣ କରିନେଇଛି ।"

ଏହି ଖବରରେ ସାରା ଗୃହରେ ଏକ ଚହଲ ପଡ଼ିଗଲା — ସେମାନଙ୍କର ଅତି ପ୍ରିୟ ଅମରେଶ ବାବୁ ହଠାତ୍ ଇସ୍ତଫା ଦେଇଦେଲେ, ଏହା ବିଶ୍ୱ

ଲୋକଙ୍କ ମନରେ ଆଘାତ ଦେଲା । ତାଙ୍କ ଭଳି ନିଃସ୍ୱାର୍ଥପର କର୍ମୀ ଦେଶରେ ବିରଳ । ସେ ଯେ ଇସ୍ତଫା ଦେଇଚାଲିଗଲେ, ରାଜ୍ୟ ପକ୍ଷରେ ଏହା ଏକ ଅଶୁଭ ଲକ୍ଷଣ ଛଡ଼ା ଆଉ କ'ଣ ହୋଇପାରେ ?

ମୁଖ୍ୟମନ୍ତ୍ରୀ କହିଲେ, "ଆଜି ବିରୋଧୀଦଳ ଖବରକାଗଜରେ ଯେଉଁ ଖବର ଓ ଫଟୋ ବାହାରିଛି, ମୁଁ ତାହା ଦେଖିଛି । ସେଥିରୁ ଅମରେଶ ବାବୁଙ୍କ ଦୋଷ ଥିଲା ଭଳି ମୋର ମନେ ହେଉନି । ଅମରେଶବାବୁ ତାଙ୍କ ପିଲାପିଲିଙ୍କ ସହିତ ସିନେମା ଦେଖି ଯିବାପାଇଁ ତିନିଦିନ ଆଗରୁ ଟିକେଟ କରିଥିଲେ । ରବିବାର ଦିନ ଛାତ୍ର ପ୍ରତିନିଧିମାନଙ୍କ ସହିତ ଏକ ଜରୁରୀ ମିଟିଂ ପଡ଼ିଯିବାରୁ ସେ ସରକାରୀ ଗାଡ଼ିରେ ସେକ୍ରେଟେରିଏଟକୁ ଯାଇଥିଲେ । ସେଠି ମିଟିଂ ସରୁ ସରୁ ପାଞ୍ଚଟା ପଇଁତିରିଶ ମିନିଟ ହୋଇଗଲା ।

ଗଲାବେଳେ ସେ ତାଙ୍କ ସ୍ତ୍ରୀଙ୍କୁ କହି ଯାଇଥିଲେ ସେମାନେ ରିକ୍ସାରେ ଯାଇ ସିନେମା ହଲଠାରେ ଅପେକ୍ଷା କରିଥିବେ । ସେ ମିଟିଂ ସାରି ସରକାରୀ ଗାଡିରେ ଘରକୁ ଫେରିବା ବାଟରେ ମିନର୍ଭା ସିନେମା ଗେଟ୍‌ଠାରେ ଓହ୍ଲାଇ ପଡ଼ିଲେ । ଆପଣମାନେ ସମସ୍ତେ ଜାଣନ୍ତି, ଅମରେଶବାବୁ ସେକ୍ରେଟେରିଏଟରୁ ଯେଉଁ ରାସ୍ତାରେ ଘରକୁ ଫେରନ୍ତି, ଠିକ୍ ସେଇ ରାସ୍ତାରେ ମିନର୍ଭା ସିନେମା ହଲ ପଡ଼େ । ସରକାରୀ ଗାଡ଼ି ତାଙ୍କୁ ରାସ୍ତାରେ ଓହ୍ଲାଇ ଦେଇ ତାଙ୍କ ନିଜ କୋଠିକୁ ଚାଲିଗଲା । ସିନେମା ଦେଖିସାରି ସେ ଓ ତାଙ୍କ ପିଲାମାନେ ରିକ୍ସାରେ କୋଠିକୁ ଫେରିଲେ ।

ଆପଣମାନେ ବର୍ତ୍ତମାନ ବିଚାର କରନ୍ତୁ, ଏଥିରେ ସରକାରୀ ଗାଡ଼ିର ଅପବ୍ୟବହାର କେଉଁଠି ହେଲା ଓ ଖବରକାଗଜରେ ଅମରେଶବାବୁଙ୍କୁ ଯାହା ଆକ୍ଷେପ କରାଯାଇଛି ତାହା କେତେଦୂର ଯୁକ୍ତିଯୁକ୍ତ । ପ୍ରେସ ସମ୍ବାଦଦାତା ଫଟୋଟି ବାହାର କରିଦେଇ ତାଙ୍କୁ ନିନ୍ଦିତ କରିବା ଉଦ୍ଦେଶ୍ୟରେ ଯାହା ପ୍ରକାଶ କରିଛନ୍ତି ତାହା ଦେଶ ଓ ଜାତି ପକ୍ଷରେ କମ୍ ବଡ଼ ଦୁଃଖଦାୟକ କଥା ନୁହେଁ ।

ବିରୋଧୀଦଳ ନେତା ବଡ଼ ଦୁଃଖର ସହିତ ଠିଆହୋଇ ଜଣାଇଲେ, "ମୁଁ ଅତ୍ୟଧିକ ମର୍ମାହତ, ମୁଖ୍ୟମନ୍ତ୍ରୀ ମହାଶୟ, ଅମରେଶବାବୁ ଇସ୍ତଫା ଦେଇ ଚାଲିଗଲେ । ନିଜର ଲେଶମାତ୍ର ଦୋଷ ନ ଥାଇ ଏତେବଡ଼ ମିଥ୍ୟା ଦୁର୍ନାମକୁ ନିଜ ମୁଣ୍ଡରେ ନେଇ ଚାଲିଯିବା କମ୍ ବଡ଼ ସାହସର କଥା ନୁହେଁ ।

ଖବରକାଗଜ ଓ ରିପୋର୍ଟରଙ୍କ ଚରମ ଦାୟିତ୍ୱହୀନତା ଯୋଗୁଁ ଏତେବଡ଼ କାଣ୍ଡ ଘଟିଗଲା । ସେଥିପାଇଁ ଆମ ଦଳ ଅତ୍ୟନ୍ତ ଦୁଃଖିତ ଓ ଲଜ୍ଜିତ ମଧ୍ୟ । ତାଙ୍କ ଭଳି ଜଣେ ସଚ୍ଚୋଟ ଓ ନିଃସ୍ୱାର୍ଥପର କର୍ମୀଙ୍କୁ ଆମେ ଆମ ମେଳରେ ରଖିପାରିଲୁନି, ଏହାଠାରୁ ଅଧିକ ଦୁଃଖଦାୟକ ଘଟଣା ଆଉ କ'ଣ ହୋଇ-ପାରେ ? ଖବରକାଗଜର ସଂପାଦକ ଓ ସମ୍ବାଦଦାତା ଏହି ଖବର ଛାପିବା ପୂର୍ବରୁ ଯଦି ପୁରା ବିଷୟଟି ଅନୁସନ୍ଧାନ କରିଥାନ୍ତେ, ତେବେ ହୁଏତ ଏତେ ବଡ଼ ଭୁଲ ହୋଇନଥାନ୍ତା ।"

ସାରା ରାଜ୍ୟରେ ସ୍ପଷ୍ଟ ହୋଇଗଲା ଅମରେଶବାବୁଙ୍କ ଇସ୍ତଫା କଥା । ଯେଉଁ କାଗଜ ତାଙ୍କୁ ଦୋଷୀ ବୋଲି କହି ତାଙ୍କ ଫଟୋ ପ୍ରକାଶ କରିଥିଲା, ସେଇ କାଗଜ ନିଜ ଭୁଲପାଇଁ ସଂପାଦକୀୟରେ ଖୁବ୍ ଦୁଃଖ ପ୍ରକାଶ କଲା । ସରକାରୀ କାଗଜ ଓ ଅନ୍ୟ କାଗଜ ସେହି କାଗଜର ଦାୟିତ୍ୱହୀନତା ପାଇଁ ନାନାପ୍ରକାର ଗାଳିଗୁଲଜ କଲେ । ଦିଲ୍ଲୀକାଗଜରେ ମଧ୍ୟ ଫାଟନାର ଏହି ଖବରଟି ଓ ସେଥିରେ ଅମରେଶ ବାବୁଙ୍କ ଇସ୍ତଫା କଥା ବଡ଼ ବଡ଼ ଅକ୍ଷରରେ ବାହାରିଗଲା । ପ୍ରଧାନମନ୍ତ୍ରୀ ଖବରକାଗଜରୁ ଅମରେଶ ବାବୁଙ୍କର ଇସ୍ତଫା କଥା ଶୁଣି ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ ।

ପ୍ରଧାନମନ୍ତ୍ରୀ ସଙ୍ଗେ ସଙ୍ଗେ ମୁଖ୍ୟମନ୍ତ୍ରୀଙ୍କୁ ଫୋନକରି ସବୁ କଥା ଠିକଣାଠିକରି ବୁଝିଲେ । ଏତେବଡ଼ ଯୋଗ୍ୟ ଲୋକଙ୍କୁ ରାଜ୍ୟର ଲୋକେ ମନ୍ତ୍ରୀତ୍ୱରେ ରଖିଦେଲେ ନାହିଁ, ଶୁଣି ବଡ଼ କ୍ଷୋଭ କଲେ । ଯେଉଁ ବର୍ଷଟାଏ ସେ ଶାସନରେ ଥିଲେ, ତାଙ୍କ ନିଃସ୍ୱାର୍ଥପର ଶାସନରେ ବିରୋଧୀ ଦଳ ମଧ୍ୟ ସନ୍ତୋଷତା ପ୍ରକାଶ କରୁଥିଲେ । ସରକାରରେ ସେ ହେଉଛନ୍ତି ଏକମାତ୍ର ମନ୍ତ୍ରୀ, ଯାହାଙ୍କ ଶାସନ ପରିଚାଳନା ନେଇ କେହି ଦିନେ ହେଲେ ଆସେମ୍ବ୍ଲିରେ ତାଙ୍କୁ ସମାଲୋଚନା କରିନାହାନ୍ତି । ଏତେବଡ଼ ଯୋଗ୍ୟ ଲୋକଙ୍କୁ ସେମାନେ ରଖିପାରିଲେନି, ଏହାଠାରୁ ଅଧିକ ଦୁଃଖଦାୟକ ଘଟଣା ଆଉ କ'ଣ ହୋଇପାରେ ?

ଅମରେଶ ପୂର୍ବରୁ ଯେଉଁ ଘରେ ରହୁଥିଲା ବର୍ତ୍ତମାନ ଯାଇ ସେହି ଘରେ ରହିଲା । ଅମରେଶ ଯାଇ ଗୋବିନ୍ଦପୁର ଗାଁରେ ପହଞ୍ଚିଛି କି ନାହିଁ, ତାଙ୍କ ବାପା ଓ ମା ତାଙ୍କ ପଛେ ପଛେ ଗୋବିନ୍ଦପୁରରେ ଯାଇ ହାଜର ହୋଇଗଲେ ।

ଦିନେ ହଠାତ୍ ବାପାଙ୍କ ଗାଡ଼ି ନିଜ ଘର ସାମନାରେ ଠିଆ ହେବାର ଦେଖି ଅମରେଶ ଘରୁ ଗାଡ଼ି ପାଖକୁ ଦୌଡ଼ି ଆସିଲା । ସେ ବାପା ମାଙ୍କୁ ଦେଖି ସେମାନଙ୍କ ଗୋଡ଼ତଳେ ପ୍ରଣାମ କରି ସେମାନଙ୍କ ପାଦଧୂଳି ନେଇ ଘରଭିତରକୁ ପାଛୋଟି ନେଲା । ବାପା ଘରଭିତରେ ଯାଇ ବସୁଁ ବସୁଁ କହିଲେ, "ତୁ ଏକ ସାମାନ୍ୟ ମିଥ୍ୟା ଅଭିଯୋଗରେ ମନ୍ତ୍ରୀତ୍ୱ ଛାଡ଼ିଦେଇ ଚାଲିଆସିବୁ ବୋଲି ମୁଁ ଆଶା କରି ନ ଥିଲି ବାପ । ତୋ ବିରୁଦ୍ଧରେ ସେ ଖବରକାଗଜରେ, ଯେଉଁ କୁତ୍ସାରଟନା ହେଲା ସେଥିରେ ତୋର ତ ଟିକିଏ ବୋଲି ଦୋଷ ଥିଲା ଭଳି ମୋତେ ଜଣାପଡ଼ୁନି । ତୁ ସେକ୍ରେଟେରିଏଟରୁ ଘରକୁ ଫେରୁଥିଲୁ ବାଟରେ ସିନେମା ହଲ୍ ଠାରେ ଓହ୍ଲାଇ ପଡ଼ିଲୁ । ଏଥିରେ ସରକାରୀ ଗାଡ଼ିର ଅପବ୍ୟବହାର ହେଲା କେଉଁଠି ? ଯେଉଁମାନେ ସତ୍ୟାସତ୍ୟ ନିର୍ଣ୍ଣୟ ନକରି ତୋ ଚରିତ୍ର ସଂହାର ପାଇଁ ଏହି ପଦକ୍ଷେପ ନେଲେ ସେମାନଙ୍କମେଳରେ ତୁ ଯେ ରହିପାରିବୁନି ମୁଁ ଏହା ଜାଣିଥିଲି । ତୋ ମତ୍‌ସାହସ ଦେଖି ତୋତେ ଧନ୍ୟବାଦ ଆଗରୁ ନ ଦେଇ ରହିପାରୁନି ବାପ । ମୋର ମଧ୍ୟ ଇଚ୍ଛା ହେଉଛି ସରକାରୀ ଚାକିରିରୁ ଅବସର ନେଇ ତୋ ଭଳି ଗଠନମୂଳକ କାମରେ ଲାଗିଯିବି ।

"ନାଇଁ ବାପା, ଆପଣ ବର୍ତ୍ତମାନ କାହିଁକି ଅବସର ନେବେ ? ଆପଣଙ୍କ ଚାକିରି ତ ଆଉ କିଛିଦିନ ଅଛି । ହଠାତ୍ ତା ଆଗରୁ ଅବସର ନେଇଯିବେ କାହିଁକି ?

"ଆଉ ଚାକିରି କରିବି କାହାପାଇଁ ବାପ ? ତୋର ଗଠନମୂଳକ ଓ ଲୋକ କଲ୍ୟାଣକର କାମ ଦେଖି ମୋର ସେ କ୍ଷମତାପୂର୍ଣ୍ଣ ଚାକିରିକୁ ଫେରିଯିବାକୁ ଆଉ ଇଚ୍ଛା ହେଉନି । କ୍ଷମତା ବିସ୍ତାର କରି କି ଲାଭ ? ସେଥିରୁ କି ଆନନ୍ଦ ମିଳିବ ମଣିଷକୁ ? ଏଭଳି ଗଠନମୂଳକ କାମ କଲେ ମଣିଷକୁ ଅପାର ଆନନ୍ଦ ମିଳିବ ଜୀବନର ଶେଷ ପର୍ଯ୍ୟାୟରେ । ଆମେ ତ ଆସି ବୁଢ଼ାବୁଢ଼ୀ ହେଲୁଁ, ତୋ ପାଖରେ ରହି ଏହି ଛୋଟ ଛୋଟ ପିଲାମାନଙ୍କ ମେଳରେ ଦିନ କଟାଇ ଦେଲେ ଆମ ଜୀବନ ଯିବ ।

"ଆଉ କେତେଟା ଦିନ କଟିଯିବନି ବାପା ଆପଣ ଏତେ ବ୍ୟସ୍ତ ହୋଇ ଚାକିରି ଛାଡ଼ିଦେବେ କାହିଁକି ?

"ତୋ ବୋଉର ଇଚ୍ଛା ନୁହେଁ ଏଠା ଛାଡ଼ି ଯିବାକୁ । ମୁଁ ଆଉ ଏକା କ'ଣ ପାଇଁ ପାଟନା ଫେରିବି ? ମୁଁ ବର୍ତ୍ତମାନ ଠିକ୍ କରିଛି ବାପ, ମୋର ଯେଉଁ

ଅର୍ଜିତ ସଂପତ୍ତି ଅଛି ପାଟନାରେ, ସେଗୁଡ଼ିକୁ ବିକ୍ରିଦେଇ ସେହି ଟଙ୍କାରେ ଆମ ଗାଁରେ ଏକ ନୂତନ ଧରଣର ସ୍କୁଲ କରିଦେବି ଆମ ଘର ଯେଉଁଠି ଥିଲା ଠିକ୍ ସେଇଠି । ଭୁତ ବାପ ଏଠି ରହିବୁ । ପାଟନାରେ ଘର ଥାଇ କି ଲାଭ ? ସେଠାକାର ଘର ଓ ସଂପତ୍ତି ବିକାଦେଲେ ତିନିଚାରି ଲକ୍ଷ ଟଙ୍କା ହେବ । ସେଇ ଟଙ୍କାରେ ଆମ ଗାଁରେ ବୋହୂ ଯାହା କହୁଥିଲେ ଚରିତ୍ର ଗଠନ ପାଇଁ ଏକ ଆବାସିକ ସ୍କୁଲ, ସେମିତି ସ୍କୁଲ ବସାଇବା ପାଇଁ ମନସ୍ଥ କରିଛି । ଚାକିରିରୁ ଅବସର ନେଲାପରେ ଗାଁରେ ରହି ଏହିଭଳି ଗଠନମୂଳକ କାମରେ ନିଜକୁ ଲଗାଇଲେ ଏ ପରିଣତ ବୟସରେ ଶାନ୍ତି ମିଳିବ । ମୁଁ ଯାହା ପେନସନ ପାଇବି ସେତକ ମଧ୍ୟ ସେହି ସ୍କୁଲର ଉନ୍ନତିରେ ଲଗାଇଦେବି । ଆମେ ବୁଢ଼ାବୁଢ଼ୀ ଦି'ଟାଙ୍କର ଆଉ କେତେ ଖରଚ ହେବ ଯେ ? ତୋ ସହିତ ପରାମର୍ଶ କରିବା ପାଇଁ ଆମେ ଦିଜଣ ଏଠାକୁ ଚାଲିଆସିଲୁ ବାପ ।

× × ×

ଅମରେଶ ମନ୍ତ୍ରୀତ୍ୱରୁ ଇସ୍ତଫା ଦେବା ପରେ ପରେ ବିପିନବାବୁ ମଧ୍ୟ ଚାକିରିରୁ ଅବସର ନେଇ ନିଜ ଗାଁକୁ ଚାଲିଆସିଲେ । ପାଟନାରେ ଯାହା ଘରଦ୍ୱାର ସମ୍ପତ୍ତିବାଡ଼ି ଥିଲା, ସେତକ ବିକ୍ରି କରିଦେଇ ବିକ୍ରୀଲବ୍ଧ ଧନକୁ ନିଜ ଗାଁରେ ଏକ ଆବାସିକ ସ୍କୁଲ ତିଆରି ପାଇଁ ଗ୍ରାମଦାନ ସଂସ୍ଥାକୁ ଦାନ କରିଦେଲେ ।

ଅମରେଶ ରହିଲା ଗ୍ରାମଦାନ ସଂସ୍ଥାର ମୂଳକେନ୍ଦ୍ର ଗୋବିନ୍ଦପୁରରେ । ଅମରେଶର ନିଜ ଗାଁ ରଘୁନାଥପୁରରେ ରହିଲେ ବିପିନବାବୁ । ବାସନ୍ତୀ ଓ ପିଲାମାନେ ମଧ୍ୟ ସେଠି ରହିଲେ । ନିଜ ଗ୍ରାମର ଉନ୍ନୟନ ବିପିନବାବୁଙ୍କର ହେଲା ପ୍ରଧାନ ଚିନ୍ତା । ରଘୁନାଥପୁର ଦାୟିତ୍ୱରେ ବାସନ୍ତୀ ଥିଲା ମୂଳରୁ । ବର୍ତ୍ତମାନ ଶ୍ୱଶୁର ଆସିଯିବାରୁ ଶ୍ୱଶୁର ବୋହୂ ଉଭୟେ ସେଇ ଦାୟିତ୍ୱରେ ରହିଲେ ।

ବିପିନବାବୁଙ୍କ ଭଳି ଲୋକ, ତାଙ୍କର ସମସ୍ତ ଅର୍ଜିତ ସଂପତ୍ତି ବିକ୍ରୟକରି ଗ୍ରାମଦାନ ସଂସ୍ଥାକୁ ଦାନ କରିବା ଦେଖି ଲୋକମାନେ ତାଙ୍କ ପ୍ରଶଂସାରେ ପାଗଳ ହୋଇ ଉଠିଲେ । ବାସନ୍ତୀ ଯେଉଁ ଚରିତ୍ର ଗଠନ ସ୍କୁଲ କରିବା ସ୍ୱପ୍ନ ଦେଖୁଥିଲା, ଶ୍ୱଶୁରଙ୍କ ଅର୍ଥ ସାହାଯ୍ୟ ଫଳରେ ତାହା କାର୍ଯ୍ୟରେ ରୂପାୟିତ ହେବାର ଆଶା ଜଳ ଜଳ ଦିଶିଲା । ଶ୍ୱଶୁର ତ ରାଜ୍ୟର ଜଣେ ବଡ଼ ଶିକ୍ଷାବିତ୍ । ତାଙ୍କ ଅଭିଜ୍ଞତା ଓ ପରାମର୍ଶକୁ ନେଇ ସେ ଏହି ଆଦର୍ଶ ସ୍କୁଲର ଏକ ଯୋଜନା ତିଆରିରେ ଲାଗିଗଲା ।

ଏହି ସ୍କୁଲରେ ଖାଲି ଚରିତ୍ର ଗଠନ ପାଇଁ ପିଲାମାନଙ୍କୁ ଶିକ୍ଷା ଦିଆଯିବ ନାହିଁ, କୌଳିକ ବୃତ୍ତିକୁ ଅଧିକ ଦକ୍ଷତାର ସହିତ କେମିତି କରିହେବ, ସେଥିପାଇଁ ଆବଶ୍ୟକୀୟ ଶିକ୍ଷା ମଧ୍ୟ ଦିଆ ହେବ ଏଠି । ଅମରେଶ ଯଦିଚ ଗୋବର୍ଦ୍ଧନପୁର ଗ୍ରାମଦାନ ସଂସ୍ଥାର ମୂଳ ଦାୟିତ୍ୱରେ ଥାଏ, ତଥାପି ପାଖ ଆଖର ଆଠ ଦଶଟୋଟି ଗ୍ରାମଦାନ ସଂସ୍ଥାର ପ୍ରଧାନ ପ୍ରଯୋଜକ ଭାବରେ ସେ ସବୁ କାମ ତଦାରଖ କରେ । ତାହାର ସାହାଯ୍ୟରେ ଏସବୁ ତ ଆଗେଇ ଚାଲିଛି, ସେଗୁଡ଼ିକୁ ସେ ତଦାରଖ ନ କରିବ ବା କେମିତି ?

ନିଜ ପିଲାପିଲି ବାପା ମା ରଘୁନାଥପୁରରେ ରହୁଥିବାରୁ ଅମରେଶ ସେଠି ସେମାନଙ୍କ ସହିତ ନିଜ ଘରେ ରହେ । ପ୍ରତିଦିନ ସାଇକେଲରେ ଗୋବର୍ଦ୍ଧନପୁରକୁ ଆସି ଏଠା କାମ ଦେଖାଶୁଣା କରେ । ତା ଛଡ଼ା ପ୍ରତି ସପ୍ତାହରେ ଅନ୍ୟ ଗ୍ରାମଦାନ ସଂସ୍ଥାଗୁଡ଼ିକର ଅଗ୍ରଗତି କେମିତି ହେଉଛି ତଦାରଖ କରିବା ପାଇଁ ସେ ସବୁ ଅଞ୍ଚଳକୁ ସପ୍ତାହରେ ଥରେ ଦୁଇଥର ଯାଇ ବୁଲିଆସେ ।

କେଉଁଠି କିଛି ଅସୁବିଧା ହେଲେ ଅମରେଶର ପରାମର୍ଶକୁ ସମସ୍ତେ ଅପେକ୍ଷା କରିଥାନ୍ତି । ତାର ପରାମର୍ଶ ଓ ସଦୁପଦେଶ ସେହି ସବୁ ସଂସ୍ଥାକୁ ଆଗେଇ ଯିବାରେ ସାହାଯ୍ୟ କରେ । ମୂଳ ସଂସ୍ଥାର ଆର୍ଥିକ ସ୍ଥିତି ଅନ୍ୟମାନଙ୍କ ଠାରୁ ଯଥେଷ୍ଟ ଭଲ ଥିବାରୁ ଓ ସେମାନଙ୍କର ଉନ୍ନୟନ ଅନ୍ୟମାନଙ୍କଠାରୁ ଅଧିକ ହୋଇଥିବାରୁ ଏ ଅଞ୍ଚଳମାନଙ୍କରେ ଆଉ ସେମିତି ଆଗଭଳି ଅଧିକ ଖରଚ ହେଉନ ।

ନିଜ ଆୟ ଦିନକୁଦିନ ଯଥେଷ୍ଟ ବଢ଼ିଯାଉଥିବାରୁ ସେମାନଙ୍କ ଆୟର କିୟଦଂଶ ଅନ୍ୟ ଅଭାବଗ୍ରସ୍ତ ଗ୍ରାମଦାନ ସଂସ୍ଥାକୁ ସାହାଯ୍ୟ ଓ ଋଣ ଆକାରରେ ଦିଆଯିବାର ବ୍ୟବସ୍ଥା କରିବା ଦ୍ୱାରା ଏହି ସଂଗଠନ ଗୁଡ଼ିକୁ ଗୋଟିଏ ପରିବାର ଭଳି ବାନ୍ଧିରଖିବା ସମ୍ଭବ ହୋଇଛି । ସବୁର ମୂଳରେତ ଅମରେଶ । ସମସ୍ତଙ୍କୁତ ସମାନ ଭାବରେ ଦେଖିବାକୁ ପଡ଼ିବ ।

ବାପା ଓ ବାସନ୍ତୀର ସହଯୋଗ ଫଳରେ ତାକୁ ନିଜ ଗ୍ରାମ ରଘୁନାଥପୁର ସଂସ୍ଥାକୁ ବେଶି ଦେଖିବାକୁ ପଡ଼େନି । ହେଲେ ବେଳେ ବେଳେ ତା ଉପଦେଶ ତା ବାପା ବି ନିଅନ୍ତି । କେଉଁଠି କିଛି ଅସୁବିଧା ହେଲେ ବାପା ଓ ବାସନ୍ତୀ ତାକୁ ନାନା କଥା ପଚାରି ସେହି ଅନୁସାରେ କାମ କରନ୍ତି । ଅମରେଶ ଯେତେବେଳେ

ବାମା ମାଙ୍କ ପାଖରେ ରହୁଛନ୍ତି, ବେଳେ ବେଳେ ବାସନ୍ତୀକୁ ପଚାରି ସେ ଅଞ୍ଚଳର ଅଗ୍ରଗତି ଓ ସୁବିଧା ଅସୁବିଧା କଥା ବୁଝନ୍ତି ।

ଦିନେ ସନ୍ଧ୍ୟାବେଳେ ବାମା ମା ସ୍ତ୍ରୀକୁ ନେଇ ଅମରେଶ ରଘୁନାଥପୁର ଗାଁର ଉନ୍ନୟନ କଥା ଆଲୋଚନା କରୁଛନ୍ତି, କାର୍ଯ୍ୟକାରୀ ସମିତିର କେତେଜଣ ସଭ୍ୟ ଆସି ସେଠି ଜୁଟିଯାଇଥାନ୍ତି । ଏହି ସମୟରେ ହଠାତ୍ ମୁଖ୍ୟମନ୍ତ୍ରୀଙ୍କ ଗାଡ଼ି ଆସି ତା ଦୁଆରେ ରହିଲା ।

ମୁଖ୍ୟମନ୍ତ୍ରୀ ଗାଡ଼ିରୁ ଓହ୍ଲାଇଛନ୍ତି କି ନାହିଁ, ଅମରେଶ ଦୌଡ଼ିଯାଇ ତାଙ୍କୁ ପାଛୋଟି ଆଣିଲା । ହଠାତ୍ ଏ ଅସମୟରେ ସେ ଅଞ୍ଚଳର ସମସ୍ତେ ମୁଖ୍ୟମନ୍ତ୍ରୀଙ୍କୁ ଦେଖି ଅବାକ୍ । ମୁଖ୍ୟମନ୍ତ୍ରୀଙ୍କ ଅଭ୍ୟର୍ଥନା ପାଇଁ ବିପିନବାବୁ ବଡ଼ ବ୍ୟସ୍ତ ହୋଇ ପଡ଼ିଲେ ।

ବସୁଁ ବସୁଁ ମୁଖ୍ୟମନ୍ତ୍ରୀ ପଚାରିଲେ, "ଅମରେଶବାବୁ, ସାରା ରାଜ୍ୟ ଆପଣଙ୍କ ଇସ୍ତଫା ନେଇ ଦୁଃଖିତ । ତେବେ ମୁଁ ଆପଣଙ୍କୁ ସେହି ମନ୍ତ୍ରୀମଣ୍ଡଳ ଭିତରକୁ ପୁଣି ଡ଼ାକିନେବା ପାଇଁ ଆସିନି । ପ୍ରଧାନମନ୍ତ୍ରୀ ମୋତେ ଆପଣଙ୍କ ପାଖକୁ ଖାସ୍ ପଠାଇଛନ୍ତି । ଆପଣଙ୍କ ଇସ୍ତଫା କଥା ଶୁଣି ସେ ବଡ଼ ମର୍ମାହତ । ଆପଣ ଯାହା କଲେ ପ୍ରକୃତ ଗଣତନ୍ତ୍ର ଦୃଷ୍ଟିରୁ ଠିକ ବୋଲି ସାରା ଦେଶ ପସନ୍ଦ କରିଛି ।

ଗୋଟିଏ ଖବରକାଗଜର ଚରମ ଦାୟିତ୍ୱହୀନତା ଯୋଗୁଁ ଏତେ-ବଡ଼ ଦୁଃଖଦାୟକ ଘଟଣା ଘଟିଗଲା ବୋଲି ପ୍ରଧାନମନ୍ତ୍ରୀ ବଡ଼ ବିବ୍ରତ । ପ୍ରଧାନ-ମନ୍ତ୍ରୀଙ୍କ ଇଚ୍ଛା ଆପଣଙ୍କୁ କେନ୍ଦ୍ରକୁ ନେବାପାଇଁ । ଆପଣଙ୍କ ଭଳି ନିଃସ୍ୱାର୍ଥପର ସଚ୍ଚୋଟ କର୍ମୀଙ୍କଠାରୁ ଦେଶ ଆହୁରି ଅଧିକ ଆଶା କରୁଛି । ଆପଣ ଯଦି ସମ୍ମତ ହୁଅନ୍ତି, ତେବେ ସେ ଏଦିଗରେ ବିହିତ ବ୍ୟବସ୍ଥା କରିବେ । ଆପଣଙ୍କଠାରୁ ଉପକାର ସାରା ଦେଶ ପାଉ, ଖାଲି ଗୋବିନ୍ଦପୁର କି ସିଂହଭୂମ ଜିଲ୍ଲା କାହିଁକି ପାଇବ, ଏହା ପ୍ରଧାନମନ୍ତ୍ରୀଙ୍କ ଇଚ୍ଛା ।

ଆପଣ ମୋତେ କ୍ଷମା କରନ୍ତୁ ହରିନାରାୟଣ ସିଂହଜୀ । ମୁଁ ଆଉ ଶାସନ-କ୍ଷେତ୍ରକୁ ଫେରିବାକୁ ମୋଟେ ଚାହେଁନି, କେନ୍ଦ୍ରରେ ହେଉ ବା ରାଜ୍ୟରେ ହେଉ । ମୁଁ ଯେଉଁ କେତେ ଦିନ ଶାସନ ଭିତରେ ଥିଲି ବଡ଼ ଅଣନିଃଶ୍ୱାସୀ ହୋଇ ପଡ଼ୁଥିଲି । ଦେଖନ୍ତୁ, ଏ ଅଞ୍ଚଳରେ ଆଠଗୋଟି ଗ୍ରାମଦାନ ସଂସ୍ଥା ମୋ ସାହାଯ୍ୟ ଉପରେ ନିର୍ଭର କରୁଛନ୍ତି । ସେମାନଙ୍କୁ ଛାଡ଼ି ମୁଁ ପୁଣି ଶାସନ କ୍ଷେତ୍ରକୁ ଯିବାକୁ ଇଚ୍ଛୁକ ନୁହେଁ ।

ଆଗରୁ ଦଶ ବାରଗୋଟି ଗାଁର ଦାୟିତ୍ୱରେ ସିନା ଥିଲି । ବର୍ତ୍ତମାନ ଦେଢ଼ଶହରୁ ଊର୍ଦ୍ଧ୍ୱ ଗାଁ ମୋ ହାତକୁ ଅନାଇ ବସିଛନ୍ତି । ମୋ ଭଳି ଆହୁରି ବହୁ କର୍ମୀ ଏଠି ଦରକାର । ସେଥିପାଇଁ ଅଧିକ କର୍ମୀଙ୍କୁ ତାଲିମ ଦେବା ମୋର ଆଉ ଏକ କାମ । ପ୍ରଧାନମନ୍ତ୍ରୀଙ୍କୁ ମୋ ଆନ୍ତରିକ ଧନ୍ୟବାଦ ଜଣାଇଦେବେ । ସେ ମୋତେ ମନେ ରଖିଥିବାରୁ ମୁଁ ତାଙ୍କଠାରେ ଚିରକୃତଜ୍ଞ । ଆପଣ ଏଇ ସାମାନ୍ୟ କଥାପାଇଁ ପାଟନାରୁ ଏତେବାଟ ଦୌଡ଼ି ଆସିଲେ ? ମୋତେ ତ ଖବର ଦେଇଥିଲେ ମୁଁ ଆପଣଙ୍କଠାକୁ ଯାଇପାରିଥାନ୍ତି ?

ବଡ଼ ମନ କଷ୍ଟରେ ମୁଖ୍ୟମନ୍ତ୍ରୀ ଫେରିଗଲେ । ଯେଉଁମାନେ ପ୍ରକୃତରେ ଜନସେବୀ, ସେମାନଙ୍କୁ ଶାସନ କ୍ଷମତା କ'ଣ କେବେ ଆକୃଷ୍ଟ କରି ପାରିବ ?

( ଚଉଦ )

ଗୋବର୍ଦ୍ଧନପୁର ଗ୍ରାମଦାନ କେନ୍ଦ୍ର ଅଫିସରେ କାର୍ଯ୍ୟକାରୀ ସମିତିର ମିଟିଂ ବସିଥାଏ । ଗାଁ ମାନଙ୍କରେ ହେଉଥିବା ଅର୍ଥକରୀ ଫସଲର ସମୀକ୍ଷା ଚାଲିଥାଏ । ଅମରେଶ ସେଠି ଥିବାପର୍ଯ୍ୟନ୍ତ ଅର୍ଥକରୀ ଫସଲ ଭିତରୁ ତମାଖୁଟା ବାଦ୍ ଦିଆଯାଇଥିଲା । ପ୍ରଥମେ ପ୍ରଥମେ ଅର୍ଥକରୀ ଫସଲ ଭିତରେ ତମାଖୁ ଚାଷ ଶୀର୍ଷତମ ସ୍ଥାନ ଅଧିକାର କରିଥିଲା । କିନ୍ତୁ ପରେ ଯେତେବେଳେ ଜଣାପଡ଼ିଲା ଏହି ତମାଖୁ ଚାଷହିଁ ଗାଁରେ ମୁଖ୍ୟ କର୍କଟ ରୋଗର ପ୍ରଧାନ କାରଣ, ସେତେ-ବେଳେ ଏହି ଚାଷ ବନ୍ଦ କରିଦେଇ ତା ସ୍ଥାନରେ ଆଖୁ ଚାଷର ପରିମାଣ ବଢ଼ାଇ ଦିଆଗଲା ।

ଅମରେଶ ମନ୍ତ୍ରୀ ହୋଇ ଯିବାପର୍ଯ୍ୟନ୍ତ ତମାଖୁ ଚାଷ ସେ ଅଞ୍ଚଳରେ ନିଷିଦ୍ଧ କରାଯାଇଥିଲା । ତମାଖୁକୁ ବ୍ୟବହାର କରୁଥିବା ବିଡ଼ି, ସିଗାରେଟ ଓ ଅନ୍ୟାନ୍ୟ କମ୍ପାନୀମାନେ ଏହାଦ୍ୱାରା ଖୁବ୍ କ୍ଷତିଗ୍ରସ୍ତ ହେଉଥିଲେ । ଅମରେଶ ମନ୍ତ୍ରୀତ୍ୱ ଗ୍ରହଣ କରି ପାଟନା ଚାଲିଗଲା ପରେ ଟବାକୋ କୋମ୍ପାନୀର ଅଫିସରମାନେ ଆସି କାର୍ଯ୍ୟକାରୀ କମିଟିକୁ ଧରାଧରି କରି ପୁନର୍ବାର ଏହାର ଚାଷ ପ୍ରବର୍ତ୍ତନ କରାଇଲେ ।

ବହାରର ଏହି ଅଞ୍ଚଳରେ ଖୁବ୍ ଉନ୍ନତ ଧରଣର ତମାଖୁ ଚୃଷ ହେଉଥିବାରୁ ସିଗାରେଟ କୋମ୍ପାନୀମାନଙ୍କର ଦୃଷ୍ଟି ସବୁବେଳେ ଏହି ଅଞ୍ଚଳ ଉପରେ । ଏଠି ଯେତେ ତମାଖୁ ଚୃଷ ହେବ, ସେମାନଙ୍କର ଲାଭର ପରମାଣ ସେତେ ବଢ଼ିବ, ସେମାନେ ଏହି ଆଶାରେ କଳେବଳେ କୌଶଳେ ଏହି ଅଞ୍ଚଳଟିକୁ ସେମାନଙ୍କ ହାତରେ ରଖିଥାନ୍ତି ।

ଅମରେଶ କାର୍ଯ୍ୟକାରୀ କମିଟିର ଯେତେବେଳେ ଶୁଣିଲା ଯେ ସେ ଗଲା ପରେ ଏହି ଅଞ୍ଚଳରେ ତମାଖୁ ଚୃଷ ପୁନଃ ପ୍ରବର୍ତ୍ତିତ ହୋଇଛି ସେ କାର୍ଯ୍ୟକାରୀ କମିଟି ଉପରେ ଖୁଷଣ ବରକ୍ତ ହେଲା । କାର୍ଯ୍ୟକାରୀ କମିଟିର ସଭ୍ୟ କେତେଜଣଙ୍କୁ ଟବାକୋ କମ୍ପାନୀର କର୍ମକର୍ତ୍ତାମାନେ ଧରିଛନ୍ତି ବୋଲି ଅମରେଶକୁ ଜଣା ନାହିଁ । ଏହି ଧରାଧରି ପଛରେ କିଛି ମୋଟା ପରିମାଣର ଅର୍ଥ ମେମ୍ବରମାନଙ୍କୁ ଯେ ହସ୍ତାନ୍ତର ହୋଇଛି ସେ କଥା ମଧ୍ୟ ସେ ଜାଣିନ । ଅମରେଶ ଦେଖିଲା ମେମ୍ବରମାନଙ୍କ ଉପରେ ବରକ୍ତ ହୋଇ ଲାଭନାହିଁ, ତେଣୁ ସେ ପୁଣି ତମାଖୁ ଚୃଷ ବନ୍ଦ କରିଦେଲା ।

ତମାଖୁ ଚୃଷ ଏ ଅଞ୍ଚଳରେ ବନ୍ଦ ହୋଇଯିବା ଶୁଣି ସିଗାରେଟ କୋମ୍ପାନୀର କର୍ମକର୍ତ୍ତାମାନେ ଦୌଡ଼ିଲେ ଅମରେଶ ପାଖକୁ । କିନ୍ତୁ ଅମରେଶ ସହଜରେ ଭୁଲିଯିବା ଲୋକ ନୁହେଁ ।

ହେଲେ ସିଗାରେଟ କୋମ୍ପାନୀର ବଡ଼ ବଡ଼ ଡ଼ାଇରେକ୍ଟରମାନେ ଅମରେଶକୁ ଦେଖା କଲେ ଓ ତମାଖୁ ଚୃଷ ପୁଣି ଚାଲୁ କରିବାକୁ ଅନୁରୋଧ ଜଣାଇଲେ । ସେଥିପାଇଁ ସେମାନେ ଗ୍ରାମଦାନ ସଂସ୍ଥାକୁ ମୋଟା ପରିମାଣ ଅର୍ଥ ସାହାଯ୍ୟ ଦେବେ ବୋଲି ପ୍ରତିଶ୍ରୁତି ଦେଲେହେଁ ଅମରେଶ ନିଜ ନିଷ୍ପତ୍ତିରେ ଅଟଳ । ଗାଁରେ କେନସର ରୋଗକୁ ପ୍ରତିରୋଧ କରିବା ପାଇଁ ଆଉ ଗୋଟିଏ ଭଲ ହସପିଟାଲ ବସାଇ ଦେବେ, କେନସର ଡ଼ଟେକସନ ସେଣ୍ଟର ବସାଇବେ ଆଦି କେତେ ଦାତବ୍ୟ କାର୍ଯ୍ୟ କରିବା କଥା କହିଲେହେଁ ଅମରେଶ ନିଜ ସିଦ୍ଧାନ୍ତରୁ ଟିକିଏ ବି ଏପାଖ ସେପାଖ ହେଲାନି ।

ଓଲଟି ହେଲେ ସେମାନଙ୍କୁ ପଚାରିଲା, "ଆପଣମାନେ ସିଗାରେଟ କୋଟି କୋଟି ସଂଖ୍ୟାରେ ଉତ୍ପାଦନ କରି ଲକ୍ଷ ଲକ୍ଷ ଟଙ୍କା ଲାଭ କରୁଛନ୍ତି ।

ସିଗାରେଟର ଦୂର ଦୂରର ବିଜ୍ଞାପନ ଜରିଆରେ ଦେଶର ଲକ୍ଷ ଲୋକଙ୍କୁ ସିଗାରେଟ ଆଡ଼କୁ ଆକୃଷ୍ଟ କରି ସେମାନଙ୍କୁ ସିଗାରେଟ ପିଆ ଶିଖାଇ ସର୍ବସ୍ୱାନ୍ତ କରୁଛନ୍ତି । ଆପଣମାନଙ୍କର ଏହି ପ୍ରିୟ ଉତ୍ପାଦନକୁ ଆପଣମାନଙ୍କ ଭିତରୁ କିଏ କିଏ ଖାଉଛନ୍ତି କହିଲେ ? ଅମରେଶ ପ୍ରତ୍ୟେକଙ୍କୁ ଗୋଟି ଗୋଟି କରି ପଚାରିଗଲା । ସମସ୍ତେ ସିଗାରେଟ ଛୁଅଁନ୍ତି ନାହିଁ ବୋଲି କହିଲେ ।

ସେତେବେଳେ ଅମରେଶ କହିଲା, "ଦେଖନ୍ତୁ ଆପଣମାନେ କେହି ସିଗାରେଟ ଖାଆନ୍ତିନି, ଅଥଚ ଏତେ ବଡ଼ କୋମ୍ପାନୀ ଗଢ଼ି ପ୍ରତି ବର୍ଷ ଲକ୍ଷ ଲକ୍ଷ ଲୋକଙ୍କୁ ସିଗାରେଟଖିଆ ଶିଖାଇ ମୃତ୍ୟୁମୁଖକୁ ଠେଲି ଦେଉଛନ୍ତି ।

ଆପଣମାନଙ୍କ ସିଗାରେଟ କେତେ ଲୋକଙ୍କ ମୃତ୍ୟୁର କାରଣ ହୋଇଛି, ସେ ଆଡ଼କୁ ଆପଣମାନଙ୍କର କାହାରି ନଜର ଅଛି କି ? ଫୁସଫୁସ୍ କ୍ୟାନ୍ସର ରୋଗଠାରୁ ଆରମ୍ଭ କରି ଗଳା କର୍କଟ ରୋଗ ପର୍ଯ୍ୟନ୍ତ କେତେ ଦୁଃସାଧ୍ୟ ରୋଗ ଯେ ହେଉଛି, ସେ ଆଡ଼କୁ ଆପଣମାନେ ଧ୍ୟାନ ବି ଦେଉନାହାନ୍ତି । ଅଥଚ ଆମେ ତମାଖୁ ଚାଷ କରୁ ନଥିବାରୁ ଆପଣମାନଙ୍କ ଲାଭର ପରିମାଣ କମିଯାଉଛି ବୋଲି ଆପଣମାନେ ଦୌଡ଼ି ଆସିଛନ୍ତି, ଅମଠାକୁ । ଏହି ସିଗାରେଟ ଖାଇ କେତେ ଲୋକଙ୍କ ସୁନାର ସଂସାର ଉଜୁଡ଼ି ଯାଏ, ଆପଣମାନେ କେବେ ଧନକ ପାଇଁ ଭାବନ୍ତି ସେ କଥା ?

"ଆଜ୍ଞା, ସେଥିପାଇଁ ଲୋକଙ୍କୁ ସାବଧାନ କରାଇଦେବା ପାଇଁ ଆମେ ସିଗାରେଟ୍ ଖୋଳ ଉପରେ ବିଜ୍ଞାପନ ଦେଇଛୁ, "ସିଗାରେଟ ଖାଇବା ସ୍ୱାସ୍ଥ୍ୟ ପକ୍ଷରେ ଭଲ ନୁହେଁ ।"

ହସିଲା ଅମରେଶ, "ଆପଣମାନଙ୍କର ଏହା ଏକ ଚାଲବାଜି । ଧର୍ମକୁ ଆଖିଠାର । ହଜାର ହଜାର ଟଙ୍କା ଖରଚକରି ବିଜ୍ଞାପନ ଛପୁଛନ୍ତି, ଅତି ଆକର୍ଷଣୀୟ ଭଙ୍ଗୀରେ ଲୋକମାନଙ୍କୁ ସିଗାରେଟ୍ ଆଡ଼କୁ ଆକୃଷ୍ଟ କରିବା ପାଇଁ ସେଥିଭିତରେ କେଉଁଠି ଛୋଟ ଛୋଟ ଅକ୍ଷରରେ ଲେଖି ଦେଉଛନ୍ତି ସିଗାରେଟ ଖାଇବା ନିରାପଦ ନୁହେଁ । ଏହାକୁ ଧର୍ମକୁ ଆଖିଠାର କୁହାଯିବ ନାହିଁତ ଆଉ କଣ କୁହାଯିବ ?

ଆପଣମାନେ ଯଦି ନିଜେ ଜାଣୁଛନ୍ତି ଏହା ଲୋକଙ୍କ ମୃତ୍ୟୁର କାରଣ, ତେବେ ଏହାକୁ ତିଆରି କରୁଛନ୍ତି କାହିଁକି ? ଏହାର ଉତ୍ପାଦନ ବନ୍ଦ କରିଦେଇ କୋମ୍ପାନୀଗୁଡ଼ିକୁ ବନ୍ଦ କରି ଦେଉନାହାନ୍ତି ? ଯେତେବେଳେ ସରକାର ଚିନ୍ତାକଲେ

ସିଗାରେଟ ଉତ୍ପାଦନ ମୂଗପର ବନ୍ଦ କରିଦେବେ ବୋଲି, ଆପଣମାନେ ମନ୍ତ୍ରୀମାନଙ୍କୁ ଧରାଧରି କରି ଏମିତି ଗୋଟିଏ ଗୁଳବାଜ ଲେଖା ଲେଖିଦେଇ ଲୋକଙ୍କୁ ସତର୍କ କରି ଦେଉଛନ୍ତି ନାଁରେ ସରକାରଙ୍କୁ ଧୂଆଁ ବାଣ ଭୁଲାଇ ଦେଲେ, ଏହା ଆପଣମାନଙ୍କର କମ୍ ବଡ଼ କାରସାଦି ନୁହେଁ ?

ବ୍ୟବସାୟୀମାନେ ଅମରେଶକୁ ଯେତେପ୍ରକାରେ ବୁଝାବୁଝି କଲେହେଁ ସେ ନିଜ ସିଦ୍ଧାନ୍ତରେ ଅଟଳ । ସେମାନେ ଅମରେଶକୁ ନିଜ ସିଦ୍ଧାନ୍ତରେ ଅଟଳ ରହିବା ଦେଖି ବାଧ୍ୟ ହୋଇ ମନ କଷ୍ଟରେ ଫେରିଗଲେ ।

ଛମାଖ ଚାଷପରି ଆଉ ଏକ ଚାଷ ହେଲା ସେ ଅଞ୍ଚଳରେ ଖେସାରୀ ଚାଷ । ଅମରେଶ ଜାଣିଛି ଖେସାରୀ ଡାଲି ଚାଷକୁ ସରକାର ନିଷିଦ୍ଧ କରିଛନ୍ତି, କାରଣ ଏହି ଡାଲି ଲୋକମାନଙ୍କୁ ପଙ୍ଗୁ କରି ପକାଏ । ସେ ଏଠି ଥିଲାବେଳେ ଖେସାରୀ ଡାଲି ଚାଷ ମଧ୍ୟ ନିଷିଦ୍ଧ କରିଥିଲା ।

ବିହାରର ବହୁ ବେସନ ବ୍ୟବସାୟୀ ବୁଟ ବେସନରେ ଏହାକୁ ଭେଜାଲ ଭାବରେ ମିଶାଇ ଅଜସ୍ର ଅର୍ଥ ଉପାର୍ଜନ କରନ୍ତି । ବିହାରର ଏହି ଅଞ୍ଚଳରେ ଖେସାରୀ ଡାଲି ଅପର୍ଯ୍ୟାପ୍ତ ପରିମାଣରେ ଚାଷ କରାଯାଏ । ଧାନ ଜମିରେ ଯେଉଁଠି ଜଳର ଏକାନ୍ତ ଅଭାବ ଯେଉଁ ଧାନ କି ଅନ୍ୟ ଚାଷ ହୁଏନି, ସେଠି ଖେସାରୀ ଡାଲି ଚାଷ ବହୁଳଧାରେ କରାଯାଏ । ଏହା ପାଇଁ ସେମିତି କିଛି ବେଉଷଣ ଦରକାର ନାହିଁ । ତେଣୁ ଏହାର ଚାଷ ଭାରି ସୁବିଧା ।

ଅମରେଶ ଜାଣିଶୁଣି ଏହାର ଚାଷକୁ ବନ୍ଦ କରିଥିଲା । ଯେତେବେଳେ ସେ ପାଟନାରେ ରହୁଥିଲା, ତା' ଅନୁପସ୍ଥିତିରେ ବେସନ ବ୍ୟବସାୟୀମାନେ କାର୍ଯ୍ୟକାରୀ କମିଟିର ମେମ୍ବରମାନଙ୍କୁ ଧରାଧରି କରି ଏହି ଚାଷର ପୁନଃ ପ୍ରବର୍ତ୍ତନ କରିଥିଲେ ।

ଅମରେଶ ଆସି ଯେତେବେଳେ ଦେଖିଲା ଖେସାରୀ ଡାଲି ଚାଷ ପୁଣି ଆରମ୍ଭ ହୋଇଛି ବଡ଼ ବିରକ୍ତ ହେଲା କାର୍ଯ୍ୟକାରୀ କମିଟି ଉପରେ । ସେ ପୁଣି ଖେସାରୀ ଚାଷ ନିଷିଦ୍ଧ କଲା । ବେସନ ବ୍ୟବସାୟୀ ମାନେ ଖେସାରୀ ଉତ୍ପାଦନ ବନ୍ଦ ହୋଇଯିବାରୁ ମୁଣ୍ଡରେ ହାତ ଦେଇ ବସିଲେ କ'ଣ କରିବେ ?

ଏହି ଦୁଇ ବ୍ୟବସାୟୀ ଗୋଷ୍ଠୀ ଦେଖିଲେ ଅମରେଶ ଥିଲା ପର୍ଯ୍ୟନ୍ତ ଏ ବ୍ୟୁଷ ଏ ଅଞ୍ଚଳରେ ହୋଇ ପାରିବନି । ଅମରେଶକୁ ଯଦି ଏହି ସଂସ୍ଥାରୁ କୌଣସି ପ୍ରକାରରେ ହଟାଇ ଦିଆ ନ ଯାଉଛି, ତେବେ ସେମାନଙ୍କ ବ୍ୟବସାୟ ଭାଙ୍ଗି ପଡ଼ିବ । ଅମରେଶ ବିରୁଦ୍ଧରେ ଲୋକମାନଙ୍କୁ ଉଠାଇ ଅମରେଶର ଲୋକପ୍ରିୟତାକୁ କମାଇଦେଲେ, ସେମାନଙ୍କ ବ୍ୟୁଷ ପୁନଃ ପ୍ରବର୍ତ୍ତନ କରି ହେବ ଏଠି ? କିନ୍ତୁ ଅମରେଶକୁ ଗାଁ ଲୋକଙ୍କ ଠାରେ ଅପ୍ରିୟ କରିବା କ'ଣ ସମ୍ଭବ ହେବ ?

ସେମାନେ ସେଥିପାଇଁ ଗୋଟିକ ପରେ ଗୋଟିଏ ନାନା ଯୋଜନା ତିଆରି କଲେ । ଅମରେଶ ବିଭିନ୍ନ ଉପାୟରେ ଲାଞ୍ଚ ନେଉଛି ବୋଲି ଗାଁର କେତେ ଜଣଙ୍କ ଧରି ମିଛ ପ୍ରମାଣ ସବୁ ଯୋଗାଡ଼କରି ତା ବିରୁଦ୍ଧରେ ଅପପ୍ରଚାର ଚଳାଇଲେ । ଗାଁର ଲୋକମାନେ ତ ଅମରେଶକୁ ଭଲ ଭାବରେ ଜାଣନ୍ତି; ସେମାନଙ୍କର ଏ ଅପପ୍ରଚାରକୁ କେହି ବିଶ୍ୱାସ କଲେନି, ଓଲଟି ହସି ଉଡ଼ାଇ ଦେଲେ ।

ତା'ପରେ ଅମରେଶ ନିହାତି ଚରିତ୍ରହୀନ, ସେ ବେଶ୍ୟା ଘରକୁ ଯାଏ, ଏମିତି କେତେ ଅପପ୍ରଚାର ଚାଲିଲା, ତା ବିରୁଦ୍ଧରେ । ଗାଁର କେତେକ ବଦମାସ ପ୍ରକୃତିର ଟୋକାଙ୍କୁ ଭେଳାଇ ବ୍ୟବସାୟୀ ମାନେ ଅମରେଶର ଚରିତ୍ର ସଂହାର କରିବାକୁ ଅପଚେଷ୍ଟା ଚଳାଇଲେ । ଗାଁ ଲୋକମାନେ ଖାଲି ଏ କଥାକୁ ତ ବିଶ୍ୱାସ କଲେନି, ବରଂ ଏହି ଅପପ୍ରଚାର ଚଳାଇଥିବା ଟୋକାମାନଙ୍କୁ ଧରି ପିଟିପିଟି ଅମରେଶ ପାଖକୁ ନେଇ ଆସିଲେ । ଅମରେଶ ସେମାନଙ୍କୁ ଦୟା ଦେଖାଇ ଗାଁରେ ଏମିତି ଅପ୍ରୀତିକର ପରିସ୍ଥିତି ସୃଷ୍ଟି ନ କରିବା ପାଇଁ ଉପଦେଶ ଦେଇ ଛାଡ଼ି ଦେଲା ।

ଅମରେଶର ଲୋକପ୍ରିୟତାକୁ କୌଣସି ପ୍ରକାରେ ଖଣ୍ଡନ କରିବାର ଉପାୟ ନଦେଖି ସେମାନେ ତା' ବିରୁଦ୍ଧରେ ଗାଁ ଗୁଣ୍ଡାଙ୍କୁ ବିଦ୍ରୋହ କରିବାକୁ ମତାଇଲେ । ଲୋକମାନଙ୍କୁ ନାନା ପ୍ରକାର ଅର୍ଥ ଯାଚି ସେମାନଙ୍କୁ ହାତ କରିବାକୁ ଚେଷ୍ଟା କରି ବିଫଳ ହେଲେ ।

ବାହାର ବ୍ୟବସାୟୀମାନେ ଗାଁର ଲୋକମାନଙ୍କୁ ଲାଞ୍ଚ ଦେଇ ଏହି କାଣ୍ଡ ଭିଆଉଛନ୍ତି ବୋଲି ଯେତେବେଳେ ଲୋକେ ଜାଣିପାରିଲେ, ସେଦିନ

ବ୍ୟବସାୟୀ କ ଯେମାନଙ୍କ ଏଠାକୁ ଗାଁକୁ ଆସିଲେ ସେମାନେ ସେମାନଙ୍କୁ ମାରି ଗୋଡ଼ାଇଲେ । ଦିନକୁ ଦିନ ଗାଁ ଲୋକଙ୍କ ଏକତା ସେହି ବ୍ୟବସାୟୀ ଗୋଷ୍ଠୀଙ୍କ ବିରୋଧରେ ବଢ଼ିଉଠିଲା । ଯେମାନେ ଆଉ ଗାଁ ଭିତରକୁ ପଶିବାକୁ ସାହସ କଲେନି ।

ବ୍ୟବସାୟୀମାନେ ବିଫଳ ମନୋରଥ ହେବାପରେ ସେମାନଙ୍କର ଶେଷ ଅସ୍ତ୍ର ପ୍ରୟୋଗ କରିବାକୁ ସେମାନେ ଦ୍ୱିଧାବୋଧ କଲେନି । ସେମାନେ ଜାଣନ୍ତି ଅମରେଶ ଥିଲା ପର୍ଯ୍ୟନ୍ତ ସେମାନଙ୍କ ସ୍ୱାର୍ଥ ସାଧିତ ହୋଇପାରିବନି । ତାକୁ ଯେ କୌଣସି ପ୍ରକାରେ ନ ହଟାଇଲେ ରକ୍ଷା ନାହିଁ । ସେମାନେ ଜାଣନ୍ତି ଅମରେଶ ପ୍ରତିଦିନ ସନ୍ଧ୍ୟା ପରେ ଗୋବର୍ଦ୍ଧନପୁରରୁ କାମ ଦାମ ଶେଷ କରି ସାଇକେଲରେ ନିଜ ଗାଁ ରଘୁନାଥପୁରକୁ ଫେରେ । ଗୋବର୍ଦ୍ଧନପୁରଠୁ ରଘୁନାଥପୁର ସାତ ଆଠ ମାଇଲ ବାଟ । ପ୍ରତିଦିନ ଅମରେଶ ସାଇକେଲରେ ଘରୁ ଗୋବର୍ଦ୍ଧନପୁରକୁ ଆସେ, ସନ୍ଧ୍ୟାବେଳେ ଘରକୁ ସାଇକେଲରେ ଫେରେ । ଫେରିଲାବେଳେ ବାଟରେ ଗୋଟିଏ ଝାଟିଆ ଜଙ୍ଗଲିଆ ବଣ ପଡ଼େ । ନାନାପ୍ରକାର ଝାଟ ବଡ ଗଛବୁଦାରେ ସେହି ବଣଟି ପୂରିଯାଇଛି ।

ଦିନେ ହଠାତ୍ ସକାଳେ ଦେଖାଗଲା ଅମରେଶର ମୃତ ଶରୀର ସେହି ବଣ ଭିତରେ ଏକ ବୁଦାଆଢୁଆଳରେ ରାସ୍ତାଠାରୁ ଅଳ୍ପ ଦୂରରେ ପଡ଼ିରହିଛି । ସାଇକେଲଟି ତାଙ୍କଠାରୁ କିଛି ଦୂରରେ ପଡ଼ିଛି । ପିସ୍ତଲର ଗୁଳି ଚୋଟରେ ଅମରେଶକୁ କେହି ଆତତାୟୀ ସେଠି ନିର୍ମମ ଭାବରେ ହତ୍ୟା କରି ସୁଚତୁର ଭାବରେ ପଳାୟନ କରିଛି ।

ଅମରେଶର ହତ୍ୟାକାଣ୍ଡ କଥା ଯେତେବେଳେ ଗୁରିଆଡ଼େ ପ୍ରଚାରିତ ହୋଇଗଲା ଲୋକେ ଧାଡ଼ି ଛୁଟିଲେ ହତ୍ୟା କରାଯାଇଥିବା ସ୍ଥାନକୁ । ସାରା ଗ୍ରାମରେ ଦୁଃଖର ଛାୟା ଖେଳିଗଲା । ଘରେ ଘରେ କାନ୍ଦବୋବାଳି ପଡ଼ିଗଲା । ସତେ ଯେମିତି ସେମାନଙ୍କ ପରିବାରରୁ କେହି ଜଣେ ମରିଗଲା । ଅମରେଶର ବାପା ମା ସ୍ତ୍ରୀ ଓ ପିଲାମାନେ ଏହି ହତ୍ୟା ଖବରରେ ମ୍ରିୟମାଣ ହୋଇପଡ଼ିଲେ । ସେମାନେ ହତ୍ୟା ସ୍ଥାନକୁ ଯାଇ ଅମରେଶର ମୃତ ଶରୀରକୁ ଦେଖି ଧୈର୍ଯ୍ୟ ଧରି ନ ପାରି ସେଇଠି ସଂଜ୍ଞାହୀନ ହୋଇ ଲୋଟି ପଡ଼ିଲେ । ଗୁରିଆଡ଼ୁ ଶହ ଶହ ଲୋକ ଏହି ନିର୍ମମ ଘଟଣା ଦେଖିବାକୁ ଆସି ଲୋତକ ସମ୍ବରଣ କରି ରହି ପାରିଲେନି । ପୋଲିସ ଖବର ପାଇବା ସଙ୍ଗେ ସଙ୍ଗେ ସେ ସ୍ଥାନକୁ ଆସି ବଡ଼ ବଡ଼ ଅଫିସର ଆସିବା ପର୍ଯ୍ୟନ୍ତ ଜଗି ରହିଲେ ।

ଏହି ସମୟରେ ହଠାତ୍ ଗୋଟିଏ କାର୍ ଆସି ସେଠି ରହିଲା । କାରରୁ ଓହ୍ଲାଇଲା ଶୁଭ୍ରା । ସେ ପାଟନାରୁ ଆସିଥିଲା ଗୋବର୍ଦ୍ଧନପୁରକୁ ଅମରେଶଙ୍କୁ ଦେଖା କରିବା ପାଇଁ । ଲୋକ ଗହଳ କାହିଁକି ହୋଇଛି ବୁଝିବା ପାଇଁ ଭିତରକୁ ପଶିଲା । ଦେଖିଲା ଅମରେଶର ମୃତ ଶରୀର ସେଠି ଲୋଟି ପଡ଼ିଛି ।

"ହେ ପ୍ରଭୋ, ତୁମେ କଣ ନକଲ ?" କହି ଅମରେଶର ପାଦତଳେ ଲୋଟି ପଡ଼ିଲା ଶୁଭ୍ରା । "ହେ ଭଗବାନ, ମୋତେ ଶେଷରେ ଏଇଆ ଦେଖିବାକୁ ଥିଲା ? କହି ଶୁଭ୍ରା ମୁଣ୍ଡ ପିଟିଦେଲା ଅମରେଶର ଗୋଡ଼ପାଖ ପଥରରେ । ତା ହାତର ଚୁଡ଼ିଗୁଡ଼ିକ ସେଥିସହିତ ପିଟି ହୋଇ ଚୂରମାର ହୋଇଗଲା । ଅମରେଶର ବାପ ମା, ସ୍ତ୍ରୀଙ୍କ ସହିତ ସେଠି ପଡ଼ିରହିଲା ଶୁଭ୍ରାର ଅଚେତ୍ ଶରୀର ରକ୍ତାକ୍ତ ଅବସ୍ଥାରେ ।

## ( ଶେଷ )

ମୟୂରଭଞ୍ଜ ଜିଲ୍ଲାର ରାଇରଙ୍ଗପୁର ଠାରୁ ଯେଉଁ ରାସ୍ତା ବହଳଡା ଦେଇ ସିଂହଭୂମ ଜିଲ୍ଲାର ସଦର ମହକୁମା ଚାଇଁବସା ଆଡକୁ ଯାଇଛି, ଠିକ୍ ସେହି ରାସ୍ତାରେ ଚାଇଁବସା ଆଡ଼କୁ ଯାଇ ତିରିଙ୍ଗ୍ ଠାରେ ଓଡ଼ିଶାର ସୀମାରେଖା ପାର ହେଲେ ରଘୁନାଥପୁର ଗ୍ରାମପଞ୍ଚାୟତ ପଡ଼େ । ରଘୁନାଥପୁର ଠାରୁ ଚାଇଁବସା ଅଡ଼କୁ ଗଲେ ସାତ ଆଠ ମାଇଲ ପରେ ପଡ଼ିବ ଗୋବିନ୍ଦପୁର ଗ୍ରାମପଞ୍ଚାୟତ । ଗୋବିନ୍ଦପୁର ଗ୍ରାମପଞ୍ଚାୟତଠାରୁ ସଦର ମହକୁମା ଚାଇଁବସା ମାତ୍ର ସାତ ଆଠ ମାଇଲ ବାଟ । ରଘୁନାଥପୁର ଓ ଗୋବିନ୍ଦପୁର ମଝିରେ ପଡ଼ିବ ଛୋଟ ବଣଟିଏ । ସେହି ବଣଦେଇ ସର୍ପିଳ ଗତିରେ ଯାଇଛି ଚାଇଁବସା ରଘୁନାଥପୁର ରାସ୍ତା । ରାସ୍ତାଟି ନିଛାଟିଆ, ସେତେ ଜନଗହଳି ନୁହେଁ । ସେହି ବଣର ମଧ୍ୟ-ସ୍ଥଳୀରେ ରାସ୍ତାକୁ ଲାଗି ଏବେ ନିର୍ମିତ ହୋଇଛି ଶ୍ୱେତରଙ୍ଗର ଶଙ୍ଖ ମର୍ମର ପ୍ରସ୍ତରର ଏକ ବିରାଟ ସ୍ମୃତି ମନ୍ଦିର । ସ୍ମୃତି ମନ୍ଦିର ଚାରିପାଖରେ ଗୋଟିଏ ସୁରମ୍ୟ ପୁଷ୍ପବାଟିକା । ନାନା ଜାତି ରଙ୍ଗର ଫୁଲରେ ଉଦ୍ୟାନଟି ଝଲସି ପଡ଼ୁଛି । ସେହି ରାସ୍ତା ଦେଇ ଗଲେ ପୁଷ୍ପର ସୁମଧୁର ସୁଗନ୍ଧରେ ପଥିକର ମନ ପ୍ରଫୁଲ୍ଲିତ

ହୋଇଉଠେ । ପ୍ରତିବର୍ଷ ସେପ୍‌ଟେମ୍ବର ମାସ ତା ୨୬ରିଖ ଦିନ ଶ୍ୱେତବସ୍ତ୍ର ପରିହିତା ଅଳଙ୍କାର ବିହୀନ ରୂପରେ ଜଣେ ଗୌରବର୍ଣ୍ଣା ସୌମ୍ୟକାନ୍ତା ଯୁବତୀ ଆସନ୍ତି ଏକ ଶ୍ୱେତବର୍ଣ୍ଣର ମଟରଗାଡ଼ିରେ । ମନ୍ଦିରର ମଧ୍ୟ ଭାଗରେ ମାର୍ବଲର ଏକ ଆବକ୍ଷ ମୂର୍ତ୍ତି । ସେହି ମୂର୍ତ୍ତି ଆଗରେ ଧୂପ, ଦୀପ ପୁଷ୍ପ ପ୍ରଦାନକରି କିଛିସମୟ ଆଖିବୁଜି ବସନ୍ତି ସେ । ତା'ପରେ ମୂର୍ତ୍ତିଟିକୁ ତିନିଥର ପ୍ରଦକ୍ଷିଣ କରି ଶେଷ ଥର ପାଇଁ ନମସ୍କାର ଜଣାଇ ଯେଉଁ ବାଟରେ ଆସିଥାନ୍ତି, ଠିକ୍ ସେହି ବାଟରେ ଫେରି-ଯାଆନ୍ତି । ସେହି ଦିନଟିଛଡ଼ା ଅନ୍ୟ ଦିନେ ସେହି ଯୁବତୀଙ୍କୁ ସେଠାରେ କେବେ ଦେଖି-ନାହାନ୍ତି । ସେହି ଯୁବତୀଟି ସୁଦୂର ପାଟନାରୁ ଆସନ୍ତି, ସ୍ମୃତି ମନ୍ଦିରରେ ନିଜର ପ୍ରିୟ ଗୁରୁଙ୍କ ଉଦ୍ଦେଶ୍ୟରେ ସମ୍ମାନର ଅର୍ଘ୍ୟ ତୋଳିବା ପାଇଁ । ସେହିଦିନଠାରୁ ସେହି ଯୁବତୀଜଣି ଆଜି ପର୍ଯ୍ୟନ୍ତ ପ୍ରତିବର୍ଷ ଆସୁଛନ୍ତି । ସେପ୍‌ଟେମ୍ବର ମାସ ତା ୨୬ରିଖ ଦିନ କେହି ଯଦି ସେହି ପଥଦେଇ ଯାଉଥାନ୍ତି, ତେବେ ତାଙ୍କୁ ଭେଟିବା ଖୁବ୍ ସମ୍ଭବ । ସେହି ଯୁବତୀଟି ଅନ୍ୟ କେହି ନୁହଁନ୍ତି, ପୃଥିବୀର ଜଣେ ସ୍ୱନାମଧନ୍ୟ ବୈଜ୍ଞାନିକ କୁମାରୀ ଶୁଭ୍ରା ମାଲହୋତ୍ରା । ସ୍ମୃତି ମନ୍ଦିରଟି ହେଉଛି ବିହାରରାଜ୍ୟର ଭୂତପୂର୍ବ ଶିକ୍ଷାମନ୍ତ୍ରୀ ଅମରେଶଚନ୍ଦ୍ର ଦାସଙ୍କର । ଶୁଭ୍ରା ପାଟନାରେ ରହନ୍ତିନି । ସେ ବାସକରନ୍ତି ସୁଦୂର ଆମେରିକାରେ । ତେବେ ପ୍ରତି ସେପ୍‌ଟେମ୍ବର ମାସ ତା ୨୬ରିଖ ଦିନଟିରେ ସେ ଆମେରିକାରୁ ପାଟନା ଆସି ପାଟନାରୁ ଏଠାକୁ ଆସନ୍ତି । ଏଠାରୁ ଫେରି ସେ ପୁଣି ପାଟନା ଦେଇ ଆମେରିକା ଚାଲିଯାଆନ୍ତି । ଏହି ସ୍ମୃତି ମନ୍ଦିରର ପ୍ରତିଷ୍ଠାତା ସେ ନିଜେ । ନିଜର ସମସ୍ତ ସଞ୍ଚିତ ଅର୍ଥକୁ ବିନିଯୋଗ କରି ଭାରତର ଏକ ସୁନ୍ଦରତମ ସ୍ମୃତି ମନ୍ଦିର ଭାବରେ ସେ ଏହାକୁ ଗଢ଼ି ତୋଳିଛନ୍ତି । ଭାରତରେ ବହୁ ସ୍ମୃତି ମନ୍ଦିର ଅଛି । କିନ୍ତୁ କଳା ଓ ସ୍ଥାପତ୍ୟରେ ଏହାର ସମକକ୍ଷ ହୋଇପାରିଲା ଭଳି ସ୍ମୃତି ମନ୍ଦିରଟିଏ ଏ ପର୍ଯ୍ୟନ୍ତ ସୃଷ୍ଟି ହୋଇନି । ଏଥିରେ ପ୍ରାଚ୍ୟ, ପାଶ୍ଚାତ୍ୟ ଉଭୟ କୃଷ୍ଟିର ସ୍ଥାପତ୍ୟ ରହିଛି ! ବହୁ ସ୍ଥାପତ୍ୟ ବିଶାରଦ ଏବେ ବି ସେହି ସ୍ମୃତି ମନ୍ଦିରଟିକୁ ଭାରତର ସୁନ୍ଦରତମ ସ୍ମୃତି ମନ୍ଦିର ବୋଲି କହନ୍ତି ।

ସ୍ମୃତି ମନ୍ଦିରର ଅଭ୍ୟନ୍ତରରେ ଥିବା ଅମରେଶବାବୁଙ୍କ ଆବକ୍ଷ ମୂର୍ତ୍ତିଟି ମଧ୍ୟ ଅତୀବ ସୁନ୍ଦର । ଆମେରିକାର ଜଣେ ବିଶିଷ୍ଟ କଳାକାର ଏହାର ସ୍ରଷ୍ଟା । ଶୁଭ୍ରାର ସମସ୍ତ ସମ୍ମାନ, ସ୍ନେହ, ଭକ୍ତି ଦୋଳିଖେଳୁଛି ଏହି ଆବକ୍ଷ ମୂର୍ତ୍ତିଟିଠାରେ । ଏବେବି ଯେଉଁମାନେ ସେହି ରାସ୍ତା ଦେଇ ବୁଲିଇବସା ଯାଆନ୍ତି ବା ବୁଲିଇବସା ଆଡୁ ଓଡ଼ିଶା

ଆଡ଼କୁ ଆସନ୍ତୁ, ସେମାନେ ସେହି ସୃଷ୍ଟି ମନ୍ଦିରଟିର ଅପରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ ନ ହୋଇ ରହିପାରନ୍ତିନି । ଶୁଭ୍ରାର ଭାଷାରେ ମହାତ୍ମା ଗାନ୍ଧିଙ୍କ ପରେ ଅମରେଶବାବୁ ହେଉଛନ୍ତି ଦ୍ୱିତୀୟ ମହାତ୍ମା । ସୃଷ୍ଟି କରି ଗଲେ ଗ୍ରାମଦାନ ଭଳି ଅଗ୍ନିପରୀକ୍ଷା ମାଧ୍ୟମରେ ଏକ ନୂତନ ଭାବଧାରା, ପୃଥିବୀକୁ ଦେଇଗଲେ ଏକ ନୂତନ ଦିଗ୍ ଦର୍ଶନ । ଭାରତରେ ସମସ୍ତ ସମସ୍ୟାର ସମାଧାନ ଏହି ନୂତନ ଭାବଧାରା ଓ ଦିଗ୍‌ଦର୍ଶନରେ ରହିଛି କି କ'ଣ ଭବିଷ୍ୟତ ଇତିହାସ ତାହା ବିଚାର କରିବ ।

———————